

# ଗୁରୁ କେଳୁଚରଣ

## ଜୀବନ ଓ କୃତି

ଇଲେଆନା ଚିଟାରିସ୍ତି

ଗଣେଶ୍ୱର ମିଶ୍ର ▪ ସୁବାସ ପାଣି

# ଗୁରୁ କେଳୁଚରଣ : ଜୀବନ ଓ କୃତି

ଇଲେଆନା ଚିତାରିଷ୍ଟି

ଅନୁବାଦ

ଭବେଶ୍ୱର ମିଶ୍ର • ସୁବାସ ପାଣି

# ଗୁରୁ କେଳୁଚରଣ : ଜୀବନ ଓ କୃତି

ମୂଳ ଚରନା : ଇଲେଆନା ଚିତାରିଷ୍ଟି

ଅନୁବାଦ

ଗଣେଶ୍ୱର ମିଶ୍ର ■ ସୁବାସ ପାଣି

ପ୍ରଥମ ପ୍ରକାଶ : ୨୦୦୯

ପ୍ରକାଶକ

**ଲାର୍କ ବୁକ୍ସ**

ଏ/୯, ଭୌମ ନଗର, ୟୁନିଟ୍- ୪, ଭୁବନେଶ୍ୱର

ମୁଦ୍ରଣ

**ଦିବ୍ୟ ମୁଦ୍ରଣୀ**

୫୮/୬୦, ଦିବ୍ୟ ବିହାର, ସାମନ୍ତରାପୁର, ଭୁବନେଶ୍ୱର-୨

ଫୋନ୍ :୦୬୭୪-୨୩୪୦୧୩୬

ଏକଶତ କୋଡ଼ିଏ ଟଙ୍କା ମାତ୍ର

**Guru Kelucharan Mohapatra : Jeeban O Kruti**

by

ILEANA CITARISTI

Translated by

GANESWAR MISHRA & SUBAS PANI

Publisher

**Lark Books**

A/9, Bhouma Nagar

Unit-4, Bhubaneswar

First Edition ■ 2009

Cover : Bibhu

Printing : Divya Mudrani

58/60, Divya Vihar, Samantarapur,Bhubaneswar-2

Phone : 0674-2340136

ISBN - 81-7375-163-3

**Rupess one hundred twenty only**

ଇଲେଆନା ଚିତାରିସ୍ତିଙ୍କ ଜନ୍ମ ଇଟାଲିରେ । 'ସାଇକୋ-ଆନାଲିସିସ୍ ଆଣ୍ଡ୍ ଇଷ୍ଟର୍ଣ୍ଣ ମେଥୋଡ୍ୋଲୋଜି' ସଂପର୍କରେ ସନ୍ଦର୍ଭ ରଚନା କରି ସେ ପି.ଏଚ୍.ଡି ଡିଗ୍ରୀ ଲାଭ କରିଛନ୍ତି । ଭାରତୀୟ ନୃତ୍ୟ ସଂପର୍କରେ ଆଗ୍ରହୀ ହେବା ପୂର୍ବରୁ ସେ ୟୁରୋପ୍‌ର ପାରମ୍ପରିକ ଓ ଆଧୁନିକ ଥିଏଟର୍ ସହିତ ସଂପୃକ୍ତ ଥିଲେ । ସେ ଗୁରୁ କେଳୁଚରଣ ମହାପାତ୍ରଙ୍କର ଶିଷ୍ୟା । ୧୯୭୯ଠାରୁ ସେ ଓଡ଼ିଶାରେ ରହୁଛନ୍ତି ଏବଂ ଓଡ଼ିଆ ଜନଜୀବନ ଓ ସଂସ୍କୃତି ସହିତ ନିଜକୁ ଏକୀଭୂତ କରିଛନ୍ତି ।

ଅନୁବାଦକ ଗଣେଶ୍ୱର ମିଶ୍ର ଉତ୍କଳ ବିଶ୍ୱବିଦ୍ୟାଳୟର ଇଂରାଜୀ ବିଭାଗର ଅବସରପ୍ରାପ୍ତ ପ୍ରଫେସର । ଇଂରାଜୀ ସାହିତ୍ୟରେ ସେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଏମ୍.ଏ. ଏବଂ ଇଂଲଣ୍ଡର କେଣ୍ଟ୍ ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡି. ଡିଗ୍ରୀ ଲାଭ କରିଛନ୍ତି । ଓଡ଼ିଆ ଓ ଇଂରାଜୀରେ ତାଙ୍କ ପ୍ରଣୀତ ଗ୍ରନ୍ଥର ସଂଖ୍ୟା ପ୍ରାୟ ପଚାଶ । ୨୦୦୫-୦୭ରେ ସେ ଓଡ଼ିଶା ସାହିତ୍ୟ ଏକାଡେମୀର ସଭାପତି ଥିଲେ ।

ଅନୁବାଦକ ସୁବାସ ପାଣି ଉତ୍କଳ ବିଶ୍ୱବିଦ୍ୟାଳୟରୁ ଇଂରାଜୀ ସାହିତ୍ୟରେ ଏମ୍.ଏ. ଏବଂ ପିଏଚ୍.ଡି. ଡିଗ୍ରୀ ଲାଭ କରିଛନ୍ତି । ଅଳ୍ପ କେତେବର୍ଷ ଅଧ୍ୟାପନା ପରେ ସେ ଭାରତୀୟ ପ୍ରଶାସନିକ ସେବାରେ ଯୋଗଦାନ କରିଛନ୍ତି । ଜୟଦେବ ଓ ଜଗନ୍ନାଥ ସଂସ୍କୃତି ସଂପର୍କରେ ତାଙ୍କର ଅଧ୍ୟୟନ ଓ ଗବେଷଣା ତାଙ୍କୁ ଜାତୀୟ ଓ ଆନ୍ତର୍ଜାତିକ ସ୍ତରରେ ସୁଖ୍ୟାତି ଆଣିଦେଇଛି ।

# ସୂଚନା

କେଳୁଚରଣଙ୍କ ଜୀବନର ପ୍ରଥମ ଚାଳିଶି ବର୍ଷ ସଂପର୍କରେ କୌଣସି ଲିଖିତ ବିବରଣୀ ନାହିଁ । ତେଣୁ ଏହି ସମୟରେ ଓଡ଼ିଶୀ ନୃତ୍ୟର ବିକାଶ ସହିତ ଯେଉଁମାନେ ସଂପୃକ୍ତ ଥିଲେ, ସେମାନଙ୍କ ସହିତ ଆଳାପ ଆଲୋଚନା କରି ମୁଁ ଏ ଗ୍ରନ୍ଥ ପାଇଁ ଅଧିକାଂଶ ତଥ୍ୟ ସଂଗ୍ରହ କରିଛି । ତଥ୍ୟକୁ ନିର୍ଭୁଲ୍ କରିବା ପାଇଁ ବିଭିନ୍ନ ବ୍ୟକ୍ତିଙ୍କ ସହିତ ସଂପର୍କ ସ୍ଥାପନ କରିଛି । ଏହାସତ୍ତ୍ୱେ ଯାହା ତ୍ରୁଟି ରହିଯାଇଥିବ, ସେଥିପାଇଁ କ୍ଷମାଭିକ୍ଷା କରୁଛି । ଏ ଗ୍ରନ୍ଥରେ ପ୍ରଦତ୍ତ କେତୋଟି ଫଟୋଗ୍ରାଫ୍ ଉଚ୍ଚମାନର ନୁହେଁ । ତେବେ, ଐତିହାସିକ ମୂଲ୍ୟ ଦୃଷ୍ଟିରୁ ସେଗୁଡ଼ିକ ଏ ଗ୍ରନ୍ଥରେ ଅନ୍ତର୍ଭୁକ୍ତ ହୋଇଛି ।

ଏ ଗ୍ରନ୍ଥର ଅଧିକାଂଶ ତଥ୍ୟ ମୁଁ ସଂଗ୍ରହ କରିଛି ଗୁରୁଜୀଙ୍କଠାରୁ । ନିଜର ବହୁମୂଲ୍ୟ ସମୟ ବ୍ୟୟ କରି କେହି କେହି ସେମାନଙ୍କ ସ୍ମୃତିରୁ ମୋତେ ଅନେକ କିଛି କହିଛନ୍ତି । ମୁଁ ସେମାନଙ୍କୁ ମୋର କୃତଜ୍ଞତା ଜଣାଉଛି । ସେମାନଙ୍କୁ ଭେଟିବା ମୋ ପକ୍ଷରେ ଏକ ସୌଭାଗ୍ୟ ।

ଇଂରାଜୀରେ ଲିଖିତ ମୋ ଗ୍ରନ୍ଥଟିର ଓଡ଼ିଆ ଅନୁବାଦ ପ୍ରକାଶ କରିବା ପାଇଁ ଡଃ ସୁବାସ ପାଣି ବିଶେଷ ଆଗ୍ରହୀ ଥିଲେ । ସେ ଓ ପ୍ରଫେସର୍ ଗଣେଶ୍ୱର ମିଶ୍ର ବହୁ ଶ୍ରମ ସ୍ୱୀକାର କରି ଗ୍ରନ୍ଥଟିର ଅନୁବାଦ କରିଥିବାରୁ ସେମାନଙ୍କୁ କୃତଜ୍ଞତା ଜଣାଉଛି । ଏହି ଅନୁବାଦ ପ୍ରସ୍ତୁତିରେ ମୋର ଅନୁଜପ୍ରତିମ ଶ୍ରୀ ନିତ୍ୟାନନ୍ଦ ମିଶ୍ର ମୂଲ୍ୟବାନ୍ ପରାମର୍ଶ ଦେଇଥିବାରୁ ତାଙ୍କୁ ଆନ୍ତରିକ ଧନ୍ୟବାଦ ଜଣାଉଛି । ଲାର୍କ ବୁକ୍‌ସ୍‌ର ସ୍ୱତ୍ୱାଧିକାରୀ ଶ୍ରୀଯୁକ୍ତ ମହେନ୍ଦ୍ର ମିଶ୍ର ଏହାର ପ୍ରକାଶନ ଦାୟିତ୍ୱ ନେଇଥିବାରୁ ତାଙ୍କ ନିକଟରେ ଋଣୀ ରହିଲି ।

**ଇଲେଆନା ଚିତାରିସ୍ତି**

# ମୁଖବନ୍ଧ

ଏହି ଗ୍ରନ୍ଥ ଗୁରୁ କେଳୁଚରଣ ମହାପାତ୍ରଙ୍କ ପ୍ରତିଭା ପ୍ରତି ଏକ ଶ୍ରଦ୍ଧାଞ୍ଜଳି । ଶତ ଶତ ଛାତ୍ରଛାତ୍ରୀ ଏହି ଗୁରୁଙ୍କ ଦ୍ୱାରା ଅନୁପ୍ରାଣିତ ଓ ଉପକୃତ ହୋଇଛନ୍ତି । ମୁଁ ସେମାନଙ୍କ ମଧ୍ୟରେ ଜଣେ । ଏହି କ୍ଷୁଦ୍ର ଗ୍ରନ୍ଥଟି ମାଧ୍ୟମରେ ମୁଁ ମୋ' ଗୁରୁଙ୍କ ପ୍ରତି କୃତଜ୍ଞତା ଜ୍ଞାପନ କରୁଛି ।

ଓଡ଼ିଶାର ଗତ ଷାଠିଏ ବର୍ଷର ସାଂସ୍କୃତିକ ଇତିହାସ ଗୁରୁ କେଳୁଚରଣଙ୍କ ଜୀବନରେ କେତେକାଂଶରେ ପ୍ରକାଶିତ ହୋଇଛି । ବିଶେଷତଃ, ଓଡ଼ିଶୀ ନୃତ୍ୟର ବିକାଶ ଓ ଏହାର ଶାସ୍ତ୍ରୀୟତାର ସ୍ୱୀକୃତି ସହିତ ସେ ଅଙ୍ଗାଙ୍ଗୀଭାବରେ ଜଡ଼ିତ ।

ଚିତ୍ରକାର ଭାବରେ ତାଙ୍କର ଦକ୍ଷତା, ଗୋଟିପୁଅ ଓ ଯାତ୍ରା ଦଳ ସହିତ ସଂପର୍କ, ଭକ୍ତିରସାପ୍ଲୁତ ରାସଲୀଳା ତଥା ଅନ୍ନପୂର୍ଣ୍ଣା ଥିଏଟର୍‌ରେ ଯୋଗଦାନ – ତାଙ୍କ କଳାକାର ଜୀବନର ଉତ୍ତରଣର ବିବରଣୀ । ବିଭିନ୍ନ ଅନୁଭୂତି ମାଧ୍ୟମରେ ସେ ସାଫଲ୍ୟର ଶିଖରରେ ଉପନୀତ ହୋଇପାରିଛନ୍ତି ।

ଆନୁଷ୍ଠାନିକ ଶିକ୍ଷା ମାଧ୍ୟମରେ ନୁହେଁ, ଜୀବନାନୁଭୂତି ମାଧ୍ୟମରେ ସେ ତାଙ୍କର ନୃତ୍ୟଶିକ୍ଷା ଦାନ, ପଖଉଜ ବାଦନରେ ପାରଙ୍ଗମ ହୋଇପାରିଛନ୍ତି । ଏକ ବାସ୍ତବବାଦୀ ଦୃଷ୍ଟିକୋଣ ତାଙ୍କ ସଫଳତାର ଏକ ବିଶେଷ କାରଣ ।

ସେ ଯେଉଁ କାର୍ଯ୍ୟରେ ହାତ ଦେଇଛନ୍ତି, ସଂପୂର୍ଣ୍ଣ ଅଭିନିବେଶ ସହିତ ତାହା ସଂପନ୍ନ କରିଛନ୍ତି । ଇଟାର କାନ୍ଥଟିଏ ବା ଘରର ଛାତଟିଏ ନିର୍ମାଣ କରିବା ହେଉ କିମ୍ବା ଜୟଦେବଙ୍କ ସଂଗୀତ ଆଧାରରେ ନୃତ୍ୟନାଟିକା ସଂରଚନା ହେଉ – ପ୍ରତ୍ୟେକ କାର୍ଯ୍ୟରେ ସେ ସମାନ ଭାବରେ ନିଜକୁ ନିମଜ୍ଜିତ କରିଆସିଛନ୍ତି । ସୃଷ୍ଟି ପ୍ରକ୍ରିୟାର ପ୍ରବହମାନତା ଓ ଅସୀମତାର ପ୍ରତୀକ ଗୁରୁ କେଳୁଚରଣଙ୍କ ଜୀବନ ଓ କୃତି ।

ଓଡ଼ିଶୀ ନୃତ୍ୟର ଉଦ୍ଭବ ଓ ବିକାଶ ତଥା ବିଗତ ଷାଠିଏ ବର୍ଷର ଓଡ଼ିଶାର ସାଂସ୍କୃତିକ ଜୀବନ ସହିତ କେଳୁଚରଣଙ୍କ ସଂପର୍କ ଏହି ଗ୍ରନ୍ଥର ବିଷୟବସ୍ତୁ । ଏହା ମଧ୍ୟ ଓଡ଼ିଶୀ ନୃତ୍ୟର ବିବର୍ତ୍ତନ ଓ ସ୍ୱୀକୃତିର ଏକ ବିବରଣୀ ।

ଅଳ୍ପ ବୟସରୁ ବଞ୍ଚି ରହିବା ପାଇଁ ସଂଗ୍ରାମଠାରୁ ଆରମ୍ଭ କରି ମୃତ୍ୟୁ ପୂର୍ବରୁ 'ପଦ୍ମ ବିଭୂଷଣ' ଉପାଧି ଲାଭ କରିବା ପର୍ଯ୍ୟନ୍ତ – କେଳୁଚରଣଙ୍କ ଜୀବନ ଯାତ୍ରା କଳା କ୍ଷେତ୍ରରେ ନିରବଚ୍ଛିନ୍ନ ସାଧନା ଓ ସିଦ୍ଧିର ଏକ ଦୃଷ୍ଟାନ୍ତ । ନୃତ୍ୟ ତାଙ୍କ ପାଇଁ ସାଧନା, ନୃତ୍ୟଶିକ୍ଷା ପ୍ରଦାନ ତାଙ୍କର ଧର୍ମ । ତାଙ୍କ ଗୁରୁଙ୍କଠାରୁ ସେ ଓଡ଼ିଶୀ ନୃତ୍ୟର ମୂଳ ତଥ୍ୟ ତଥା ଲାଳିତ୍ୟ ଆହରଣ କରିଥିଲେ ଏବଂ ତାହା ତାଙ୍କର ଅଗଣିତ ଶିଷ୍ୟଶିଷ୍ୟାଙ୍କ ମଧ୍ୟରେ ବିତରଣ କରିଥିଲେ । ସେ ଥିଲେ ଜଣେ ମହାନ ନୃତ୍ୟଶିଳ୍ପୀ, ଅସାଧାରଣ କୋରିଓଗ୍ରାଫର, ଧୈର୍ଯ୍ୟଶୀଳ ଶିକ୍ଷକ ତଥା ଜଣେ ଉତ୍ତମ ବ୍ୟକ୍ତି । ତାଙ୍କର ପ୍ରଜ୍ଞା ଓ ଶିଶୁସୁଲଭ ସରଳତା ଫଳରେ ସେ ଦିବ୍ୟ ଦୃଷ୍ଟିର ଅଧିକାରୀ ହୋଇଥିଲେ ।

'ଗୁରୁ କେଳୁଚରଣ ମହାପାତ୍ର : ଜୀବନ ଓ କୃତି' ଗ୍ରନ୍ଥରେ ତାଙ୍କ ଜୀବନ, ସମୟ, ତାଙ୍କ ପ୍ରତିଭାର ବିକାଶ ତଥା ଶତ ଶତ ଶିଷ୍ୟଶିଷ୍ୟାଙ୍କ ପାଇଁ ତାଙ୍କର ପ୍ରେରଣା ଓ ଦିଗ୍‌ଦର୍ଶନ ଆଲୋଚିତ ହୋଇଛି ।

ଇଲେଆନା

# ଅବତରଣିକା

କେଳୁଚରଣ ମହାପାତ୍ରଙ୍କ ଜୀବନ ଓଡ଼ିଶୀ ପାଇଁ ସମ୍ପୂର୍ଣ୍ଣ ରୂପେ ସମର୍ପିତ ଥିଲା । ସେ ଥିଲେ ଯଥାର୍ଥରେ ଓଡ଼ିଶାର ଗୌରବମୟ କଳା ଓ ସାଂସ୍କୃତିକ ଐତିହ୍ୟର ମୂର୍ତ୍ତିମନ୍ତ ରୂପ ।

ପୁରୀ ନିକଟସ୍ଥ କଳାଗ୍ରାମ ରଘୁରାଜପୁରରେ ଜନ୍ମିତ କେଳୁଚରଣ ବାଲ୍ୟାବସ୍ଥାରୁ ନୃତ୍ୟ ପ୍ରତି ଆକୃଷ୍ଟ ହୋଇଥିଲେ । ପ୍ରଥମେ ଗୋଟିପୁଅ ଓ ପରେ ପୁରୀର ରାସ ନୃତ୍ୟରୁ ସେ ନିଜର ନୃତ୍ୟ ଶିକ୍ଷା ଆରମ୍ଭ କରିଥିଲେ । କଟକର ନାଟ୍ୟ ଦଳରେ ସାମିଲ୍ ହୋଇ ନିଜର ଅଧ୍ୟବସାୟ ଓ ଅନୁଧ୍ୟାନ ବଳରେ ଜଣେ ସଫଳ ନୃତ୍ୟଶିଳ୍ପୀ ଭାବରେ ସେ ନିଜକୁ ପ୍ରତିଷ୍ଠା କରିପାରିଥିଲେ ।

ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଓଡ଼ିଶୀ ନୃତ୍ୟ ବିଧିବଦ୍ଧ ଭାବରେ ପୁନର୍ଜୀବନ ଲାଭ କରିଥିଲା । କେଳୁଚରଣ ଏହି ନୃତ୍ୟ ଶୈଳୀର ଉନ୍ମେଷ କାଳରେ ଅନ୍ୟତମ ପ୍ରମୁଖ ପୁରୋଧା ଥିଲେ । "ଜୟନ୍ତିକା" ଆଦି ଅନୁଷ୍ଠାନ ମାଧ୍ୟମରେ ବହୁ କଳାପ୍ରେମୀଙ୍କ ସହଯୋଗରେ ଓଡ଼ିଶୀର ଏହି ନବଜାଗରଣ ସମ୍ଭବ ହୋଇଥିଲା । ଶୈଳୀ ଦୃଷ୍ଟିରୁ ପଙ୍କଜ ଚରଣ ଦାସ, କେଳୁଚରଣ ମହାପାତ୍ର ଓ ଦେବପ୍ରସାଦ ଦାସଙ୍କୁ ଓଡ଼ିଶାର ତିନି ବିଶିଷ୍ଟ ଗୁରୁ ଭାବରେ ଗ୍ରହଣ କରାଯାଇଥାଏ । ତେବେ ଓଡ଼ିଶୀକୁ ସମଗ୍ର ରାଷ୍ଟ୍ର ଓ ବିଶ୍ୱ ସ୍ତରରେ ପ୍ରତିଷ୍ଠା କରିବାରେ କେଳୁଚରଣଙ୍କ ଅବଦାନ ସର୍ବାଧିକ ମନେହୁଏ ।

କେଳୁଚରଣ ନିଜେ କେବଳ ଉଚ୍ଚକୋଟୀର ନୃତ୍ୟଶିଳ୍ପୀ ନଥିଲେ, ସେ ଥିଲେ ଜଣେ ଅସାଧାରଣ ଗୁରୁ, ସିଦ୍ଧହସ୍ତ ମର୍ଦ୍ଦଳବାଦକ, ଅନନ୍ୟ ନୃତ୍ୟ ରଚୟିତା ଏବଂ ସଂଗଠନ ସଂଯୋଜକ । ସଂଯୁକ୍ତା ପାଣିଗ୍ରାହୀ ବୋଧହୁଏ ଥିଲେ ତାଙ୍କର ସର୍ବଶ୍ରେଷ୍ଠ ଛାତ୍ରୀ । ଏହି ଗୁରୁ-ଶିଷ୍ୟାଙ୍କ ସଂଯୋଗ ଫଳରେ ହିଁ ଓଡ଼ିଶୀ ସମଗ୍ର ବିଶ୍ୱରେ ପ୍ରସାରିତ ହେବା ଅନେକାଂଶରେ ସମ୍ଭବ ହୋଇଥିଲା ।

ସଂଯୁକ୍ତାଙ୍କ ବ୍ୟତୀତ କେଳୁଚରଣ ଭାରତ ତଥା ଭାରତ ବାହାରର ବହୁ ଛାତ୍ରଛାତ୍ରୀଙ୍କୁ ନୃତ୍ୟଶିକ୍ଷା ପ୍ରଦାନ କରିଥିଲେ । ଏମାନଙ୍କ ମାଧ୍ୟମରେ ତାଙ୍କ ରଚିତ ଏକକ ଓ ବୃନ୍ଦନୃତ୍ୟସମୂହ ଆଜି ବହୁଜନ ଆଦୃତ । ଗୀତଗୋବିନ୍ଦର ଅନେକ ଅଷ୍ଟପଦୀ, ଓଡ଼ିଶୀ, ଛାନ୍ଦ ଓ ଚମ୍ପୂ ଉପରେ ଆଧାରିତ ଏହି ନୃତ୍ୟଗୁଡ଼ିକୁ ଏବେ ବି ତାଙ୍କର ଛାତ୍ରଛାତ୍ରୀମାନେ ଗୁରୁ ଭାବରେ ପରବର୍ତ୍ତୀ ପିଢ଼ିକୁ ଶିକ୍ଷା ଦେଉଛନ୍ତି । ସେହି ଦୃଷ୍ଟିରୁ କେଳୁଚରଣଙ୍କର ଓଡ଼ିଶୀ ପ୍ରତି ଅବଦାନ ବିଶେଷ ମୂଲ୍ୟବାନ କହିଲେ ଅତ୍ୟୁକ୍ତି ହେବନାହିଁ ।

କେଳୁଚରଣ ଥିଲେ ଜଣେ ସମ୍ପୂର୍ଣ୍ଣ କଳାକାର । ଚିତ୍ର, ଭାସ୍କର୍ଯ୍ୟ, ରଙ୍ଗମଞ୍ଚ ସଜ୍ଜାରେ ତାଙ୍କର ଯଥେଷ୍ଟ ଦକ୍ଷତା ଥିଲା । ପ୍ରକୃତ ଗୁରୁ–ଶିଷ୍ୟ ପରମ୍ପରାର ପ୍ରତୀକ ହୋଇ ସେ ଛାତ୍ରଛାତ୍ରୀମାନଙ୍କୁ ନିଜର ଆତ୍ମୀୟତାରେ ବାନ୍ଧି ରଖିଥିଲେ ।

ବ୍ୟକ୍ତିଗତ ଭାବରେ ତାଙ୍କ ସଂସ୍ପର୍ଶରେ ଆସିବାର ସୌଭାଗ୍ୟ ମୋର ଘଟିଥିଲା ୧୯୮୪ ମସିହାରେ ଓଡ଼ିଶୀ ଗବେଷଣା ପ୍ରତିଷ୍ଠାନର ଶୁଭାରମ୍ଭ ଅବକାଶରେ । ସେତେବେଳକୁ ଓଡ଼ିଶା ଅଭିଲେଖାଗାର ଗୃହର ତଳମହଲାକୁ ପୂର୍ବରୁ ସେଠାରେ କାର୍ଯ୍ୟ କରୁଥିବା ଭାରତୀୟ ରିଜର୍ଭ ବ୍ୟାଙ୍କର ଶାଖା ଖାଲି କରିଥାନ୍ତି । ଅନ୍ୟ କୌଣସି ସରକାରୀ ସ୍ଥାନ ଅଭାବରୁ ଏହିଠାରେ ଓଡ଼ିଶୀ ଗବେଷଣା ପ୍ରତିଷ୍ଠାନ ଆରମ୍ଭ କରିବାକୁ ସ୍ଥିର ହୋଇଥାଏ । ମୁଁ, କେଳୁଚରଣ, କୁଙ୍କୁମ ମହାନ୍ତି ଓ ବାଳକୃଷ୍ଣ ଦାଶ ଦିନେ ସେଠାରେ ଏକତ୍ରିତ ହେଲୁ ଏହି ନୂତନ ପ୍ରତିଷ୍ଠାନର କାର୍ଯ୍ୟାରମ୍ଭ ନିମନ୍ତେ ଆଲୋଚନା କରିବା ପାଇଁ । ଏ ଜାତୀୟ ଅନୁଷ୍ଠାନର ମଙ୍ଗଳମୟ ଶୁଭଯାତ୍ରା କିପରି ଆରମ୍ଭ କରିବୁ, ତାହା ଠିକ୍ କରି ପାରୁ ନଥିଲୁ । ମୁଁ କହିଲି ଶ୍ରୀ ଜୟଦେବଙ୍କ ଗୀତଗୋବିନ୍ଦରୁ କିଛି ଗାଇ ଏହି ଶୁଭକାର୍ଯ୍ୟ କରିବା ଉଚିତ୍ ହେବ ଓ ସମସ୍ତେ ଏଥିରେ ସହମତ ହେଲେ । ପରେ ପରେ ମୁଁ ଗୀତଗୋବିନ୍ଦର ଦ୍ୱିତୀୟ ପ୍ରବନ୍ଧ 'ଶ୍ରିତ କମଳା କୁଚମଣ୍ଡଳ' ଗାଇଲି ଓ ଓଡ଼ିଶୀ ଗବେଷଣା ପ୍ରତିଷ୍ଠାନର ମୂଳଦୁଆ ପଡ଼ିଲା । କେଳୁଚରଣ ଅତ୍ୟନ୍ତ ଆନନ୍ଦରେ ଏହି ଗୀତର ନୃତ୍ୟ ସଂଯୋଜନା କରିବା ପାଇଁ ଆଗ୍ରହ ପ୍ରକାଶ କଲେ ଏବଂ ବାଳକୃଷ୍ଣ ଦାଶ 'ରାଗ ମାଳିକା'ରେ ଏଥିପାଇଁ ସଙ୍ଗୀତ ରଚନା କଲେ । ଏହାର କିଛି ମାସ ପରେ ସୂଚନା ଭବନରେ ଏକ ଆନୁଷ୍ଠାନିକ ଉତ୍ସବ ଅନୁଷ୍ଠିତ ହେଲା ଏବଂ ଏହି ନୃତ୍ୟ ସେଥିରେ ପରିବେଷଣ କରାଗଲା । ସମ୍ପୂର୍ଣ୍ଣ ନୂତନ ଆଭିମୁଖ୍ୟ ନେଇ କେଳୁଚରଣ ଏହି ନୃତ୍ୟ ସଂଯୋଜନା କରିଥିଲେ । ସେ ନିଜେ ସୂତ୍ରଧର ତଥା ଜୟଦେବ ଭୂମିକାରେ ଅବତୀର୍ଣ୍ଣ ହୋଇଥିଲେ ଏବଂ ତାଙ୍କର ପ୍ରମୁଖ ଶିଷ୍ୟାଗଣ – କୁଙ୍କୁମ, କୁକୁମିନା, ସିକତା – ପ୍ରତ୍ୟେକ ପଦରେ ବର୍ଣ୍ଣିତ ଆଖ୍ୟାୟିକାକୁ

ରୂପ ଦେଇଥିଲେ । ଶ୍ରୀକୃଷ୍ଣ-ଜଗନ୍ନାଥଙ୍କ ଲୀଳା ରୂପକୁ ଦର୍ଶକଙ୍କ ସମ୍ମୁଖରେ ଜୀବନ୍ତ ଭାବରେ ଉପସ୍ଥାପନ କରିବାରେ ଏହି ବୃନ୍ଦନୃତ୍ୟ ଯେଭଳି ସଫଳ ହୋଇଥିଲା, ତା'ର ଦୃଷ୍ଟାନ୍ତ ବିରଳ । 'ମଧୁସୁର ନରକ ବିନାଶନ, ଗରୁଡ଼ାସନ' ପଦର ଅଭିନୟ କେଳୁଚରଣ ଏତେ ଜୀବନ୍ତ ଭାବରେ ପରିବେଷଣ କରିଥିଲେ ଯେ ମନେହେଲା ସେ ଯେପରି ଭଗବାନ ନାରାୟଣଙ୍କ ସହିତ ତତ୍‌କ୍ଷଣାତ୍ ଆକାଶରେ ଉଡ଼ିଯିବେ ।

ପରବର୍ତ୍ତୀ କାଳରେ ଗୀତଗୋବିନ୍ଦର ଅନ୍ୟାନ୍ୟ ଅଷ୍ଟପଦୀଗୁଡ଼ିକୁ ଆଧାର କରି ଏକ ନୃତ୍ୟନାଟିକା ପ୍ରସ୍ତୁତ କରିବାରେ କେଳୁଚରଣଙ୍କୁ ସହଯୋଗ କରିବାର ମୋର ସୁଯୋଗ ଘଟିଥିଲା । ପ୍ରଥମେ ଦିଲ୍ଲୀର ଆନ୍ତର୍ଜାତିକ ବିଚାରପତି ସମ୍ମେଳନ ଉପଲକ୍ଷେ, ପରେ ଶ୍ରୀନଗରର ଟାଏ (ଟ୍ରାଭେଲ୍ ଏଜେଣ୍ଟ୍‌ସ୍ ଆସୋସିଏସନ୍ ଅଫ୍ ଇଣ୍ଡିଆ) ବାର୍ଷିକ ସମ୍ମେଳନରେ ଏବଂ ଶେଷରେ ପ୍ରଥମ ମୁକ୍ତେଶ୍ୱର ଉତ୍ସବରେ ଏହି ସଂଯୋଜନାର ବିଭିନ୍ନ ସଂସ୍କରଣ ପରିବେଷିତ ହୋଇଥିଲା । ଏହି ସମୟରେ ମୁଁ ଓଡ଼ିଶାର ପର୍ଯ୍ୟଟନ ଓ ସଂସ୍କୃତି ବିଭାଗର ନିର୍ଦ୍ଦେଶକ ଦାୟିତ୍ୱରେ ଥିଲି ।

ଓଡ଼ିଶୀ ଗବେଷଣା ପ୍ରତିଷ୍ଠାନ ବହୁ ଉତ୍ସାହରେ ଆରମ୍ଭ ହୋଇଥିଲା । ଓଡ଼ିଶାର ନୃତ୍ୟ ସଙ୍ଗୀତ ଜଗତର ତିନି ତାରକା – କେଳୁଚରଣ, ଭୁବନେଶ୍ୱର ମିଶ୍ର ଓ ବାଳକୃଷ୍ଣ ଦାଶଙ୍କ ଅପୂର୍ବ ସଙ୍ଗମ ଫଳରେ ପ୍ରାରମ୍ଭିକ ସ୍ତରରେ ବହୁ ନୂତନ ସଂରଚନା ସମ୍ଭବ ହୋଇଥିଲା । ପରେ କେଳୁ ବାବୁ ସେହି ଜାତୀୟ ଅନୁଷ୍ଠାନରୁ ନିଜକୁ ଦୂରେଇ ନେଇଥିଲେ । ସେ ନିଜସ୍ୱ ଏକ ନୃତ୍ୟ ସଂସ୍ଥା 'ସୃଜନ' ପ୍ରତିଷ୍ଠା କରିଥିଲେ । ଏହା ବର୍ତ୍ତମାନ ତାଙ୍କର ସୁଯୋଗ୍ୟ କଳାକାର ପୁତ୍ର ରତିରଞ୍ଜନ (ଶିବୁ) ଦକ୍ଷତାର ସହ ପରିଚାଳନା କରୁଛନ୍ତି ।

କେଳୁଚରଣଙ୍କ ବିୟୋଗ ପରେ ତାଙ୍କର ଛାତ୍ରଛାତ୍ରୀଗଣ ତାଙ୍କର ଅମର କୃତିମାନ ପରିବେଷଣ କରି ସେ ପ୍ରତିଷ୍ଠା କରିଯାଇଥିବା ନୃତ୍ୟଶୈଳୀକୁ ଉଜ୍ଜୀବିତ କରି ରଖିଛନ୍ତି । ବିଭିନ୍ନ ସମୟରେ ତାଙ୍କରି ସ୍ମୃତିରେ ସେମାନେ ଏକତ୍ର ହୋଇ ଗୁରୁ ସ୍ମରଣ ଓ ଗୁରୁ ବନ୍ଦନା ଭାବେ ତାଙ୍କ ରଚିତ ନୃତ୍ୟାଭିନୟ ପ୍ରଦର୍ଶନ କରୁଛନ୍ତି । ଏଥିରୁ ଶିଷ୍ୟ-ଶିଷ୍ୟାଙ୍କ ମଧ୍ୟରେ ସେ କେତେ ପ୍ରିୟ ଥିଲେ ତାହା ଅନୁମେୟ । କିନ୍ତୁ ଏ ସମ୍ପର୍କରେ ଗୋଟିଏ ବିଷୟ କହିବା ପ୍ରାସଙ୍ଗିକ ହେବ । କେଳୁଚରଣ ଏକ ସମୟରେ ବିଧିବଦ୍ଧ ଭାବରେ ପଙ୍କଜ ଚରଣ ଦାସଙ୍କ ଠାରୁ ନୃତଶିକ୍ଷା କରିଥିଲେ ଏବଂ ତାଙ୍କୁ ନିଜର ପ୍ରମୁଖ ଗୁରୁ ଭାବରେ ସମ୍ମାନ କରୁଥିଲେ । ଥରେ କୌଣସି ଏକ ସାଂସ୍କୃତିକ ଉତ୍ସବରେ ପଙ୍କଜ ଚରଣ ଓ କେଳୁଚରଣ ଏକତ୍ର ମଞ୍ଚରେ ଉପସ୍ଥିତ ହେବାର ଅବକାଶ ହୋଇଥିଲା । କେଳୁଚରଣ ସେତେବେଳକୁ ପଦ୍ମ ବିଭୂଷଣ ସମ୍ମାନରେ ଅଳଙ୍କୃତ ହୋଇସାରିଥିଲେ ଓ

ଜାତୀୟ ଏବଂ ଆନ୍ତର୍ଜାତିକ ସ୍ତରରେ ଉଚ୍ଚ ଆସନ ଲାଭ କରିସାରିଥିଲେ । ବାହ୍ୟତଃ ସେ ଗୁରୁ ପଙ୍କଜଚରଣଙ୍କ ତୁଳନାରେ ଅନେକ ଅଧିକ ପ୍ରତିଷ୍ଠା ଲାଭ କରିଥିଲେ । କିନ୍ତୁ ପ୍ରକୃତ କଳାକାର ଓ ସଂସ୍କୃତିସମ୍ପନ୍ନ ଗୁରୁ ଭାବରେ ସେଦିନ କେଳୁଚରଣ ସାଷ୍ଟାଙ୍ଗ ହୋଇ ପଙ୍କଜଚରଣଙ୍କୁ ପ୍ରଣାମ କରିଥିଲେ ; ଗୁରୁ–ଶିଷ୍ୟ କୋଳାଗ୍ରତ ହୋଇ ପରସ୍ପରକୁ ସ୍ନେହାଲିଙ୍ଗନ କରିଥିଲେ । ମୋ' ଜାଣିବାରେ ଭାରତବର୍ଷର ଗୁରୁ–ଶିଷ୍ୟ ପରମ୍ପରାର ଏହା ଥିଲା ଏକ ଶ୍ରେଷ୍ଠ ନିଦର୍ଶନ । ଏହି ଘଟଣା ଥିଲା କେଳୁଚରଣଙ୍କ ବ୍ୟକ୍ତିତ୍ୱ ଓ ଚରିତ୍ରର ଅନ୍ତରଙ୍ଗ ପ୍ରତିଫଳନ ।

କେଳୁଚରଣ ଓ ଓଡ଼ିଶୀ ଏକ ଓ ଅଭିନ୍ନ । ଏହି ପୁସ୍ତକଟି ଅନୁବାଦ କରିବାର ଏହା ହିଁ କାରଣ । ଲେଖିକା ଇଲେଆନା ମହାନ ଓଡ଼ିଶୀ ଗୁରୁ କେଳୁଚରଣଙ୍କ ଜୀବନ ଉପରେ ଲିଖିତ ତାଙ୍କ ମୂଳ ପୁସ୍ତକର ଅନୁବାଦ ପାଇଁ ଅନୁମତି ପ୍ରଦାନ କରିଥିବାରୁ ତାଙ୍କୁ ଅଶେଷ ଧନ୍ୟବାଦ ।

ସୁବାସ ପାଣି

# ସୂଚୀ

# ପିଲାଦିନ

କେଳୁଚରଣଙ୍କ ସଠିକ୍ ଜନ୍ମ ତାରିଖ ଜଣାନାହିଁ । ତାଙ୍କର ଜନ୍ମ ୧୯୨୬ରେ ହୋଇଥିଲା ବୋଲି ଧରିନେଇ ଆମେ ଅଗଷ୍ଟ ୧ ତାରିଖରେ ତାଙ୍କ ଜନ୍ମଦିନ ପାଳନ କରି ଆସୁଥିଲୁ । କିନ୍ତୁ ଚାରି ପାଞ୍ଚ ବର୍ଷ ତଳୁ ପୌଷ (ଡିସେମ୍ବର–ଜାନୁୟାରୀ)ରେ ତାଙ୍କର ଜନ୍ମଦିନ ପାଳନ କରି ଆସୁଛୁ । ତାଙ୍କ ଜୀବନ ସଂପର୍କରେ ମିଳିଥିବା ତଥ୍ୟରୁ ମନେହୁଏ ୧୯୨୪ରେ ତାଙ୍କର ଜନ୍ମ ହୋଇଥିଲା । ତାଳପତ୍ରରେ ଲିଖିତ ଜାତକଟି ତାଙ୍କ ସଠିକ୍ ଜନ୍ମ ତାରିଖ ଜାଣିବାରେ ସାହାଯ୍ୟ କରିଥାନ୍ତା । କିନ୍ତୁ କେଳୁଚରଣ ଅସୁସ୍ଥ ଥିବା ସମୟରେ ସେ ଜାତକଟି ଜଣେ ଜ୍ୟୋତିଷ ନେଇ ଆଉ ଫେରାଇଲେ ନାହିଁ । ସେ ଜ୍ୟୋତିଷ ଅବଶ୍ୟ ଇଂରାଜୀରେ ତରତର ହୋଇ କେଳୁଚରଣଙ୍କ ଜନ୍ମ ତାରିଖ ଲେଖିଛନ୍ତି । ତାହା କେଳୁଚରଣଙ୍କ ଧର୍ମପତ୍ନୀ ଯତ୍ନର ସହିତ ପାଖରେ ରଖିଛନ୍ତି । ଜ୍ୟୋତିଷଙ୍କ ଏହି ଲେଖା ଠିକ୍ ମନେହୁଏ ନାହିଁ । ଏଥିରେ ସେ କେଳୁଚରଣଙ୍କ ଜନ୍ମ ୧୯୩୪ରେ ହୋଇଥିଲା ବୋଲି ଲେଖିଛନ୍ତି । ଏହି ଜନ୍ମ ତାରିଖ କେଳୁଚରଣଙ୍କ ଜୀବନର ଘଟଣାବଳୀ ସହିତ ମେଳ ଖାଉନାହିଁ ।

କେଳୁଚରଣଙ୍କ ଜନ୍ମସ୍ଥାନ ସଂପର୍କରେ ମତଦ୍ୱୈଧ ନାହିଁ । ସତୁରୀ ବର୍ଷ ତଳେ ତାଙ୍କର ଜନ୍ମସ୍ଥାନ ଯେପରି ଥିଲା, ଆଜି ମଧ୍ୟ ପ୍ରାୟ ସେହିପରି ହିଁ ଅଛି । ରଘୁରାଜପୁର ଗାଆଁର ତିନି ପାଖରେ ନଡ଼ିଆ, ଆମ୍ବ ଏବଂ ପଣସ ତୋଟା ଆଉ ଭାର୍ଗବୀ ନଦୀ ଘେରି ରହିଛି । କ୍ଷୁଦ୍ର ଏକ ଅଣଓସାରିଆ କେନାଲ ବନ୍ଧ ବାଟେ ଗାଆଁଟି ପୁରୀକୁ ଯାଉଥିବା ମୁଖ୍ୟ ରାସ୍ତା ସହିତ ସଂଯୁକ୍ତ । ବର୍ଷାଦିନେ ଗାଆଁଟି ବାହାର ଜଗତରୁ ବିଚ୍ଛିନ୍ନ ହୋଇପଡ଼େ । ମୁଖ୍ୟ ରାସ୍ତାର ବାମ ଦିଗରେ ତୋଟା ଗହଳିରେ ଲୁଚି ରହିଥିବା ଗାଆଁଟି ହଠାତ୍ ଆଖିରେ ପଡ଼େ । ଗାଆଁରେ ଛଅଟି ଛୋଟ ମନ୍ଦିର ଆଉ ଦୁଇଧାଡ଼ି ଘର । ଘରର ବାରଣ୍ଡା ସବୁ ଉଚ୍ଚ ଓ ଅଣଓସାରିଆ ।

ପ୍ରଥମେ ପଡ଼େ ଭୁଆସୁଣୀ ଠାକୁରାଣୀଙ୍କ ଛୋଟ ମନ୍ଦିର । ଏକ ବିରାଟ ବରଗଛର ଡାଳ ଏହାକୁ ଘୋଡ଼ାଇ ରଖିଛି । ଗାଁ ମହିଳାମାନେ ସେମାନଙ୍କ ପିଲାମାନଙ୍କ ମଙ୍ଗଳ ପାଇଁ ଭୁଆସୁଣୀଙ୍କୁ ପୂଜା କରନ୍ତି । ଶିଶୁ କେଳୁଚରଣ ଚାରିବର୍ଷ ବୟସରେ ମିଳିମିଳାରେ ପଡ଼ିଥିଲାବେଳେ ତାଙ୍କର ମା ଭୁଆସୁଣୀଙ୍କ ଶରଣ ପଶିଥିଲେ । ସେ ଶିଶୁଟିକୁ ଭୁଆସୁଣୀଙ୍କ ପାଦ ନିକଟରେ ଛାଡ଼ିଦେଇ କହିଲେ ଯେ ଶିଶୁଟି ତ ତାଙ୍କର (ଭୁଆସୁଣୀଙ୍କର); ସେ ଯାହା

ଚାହିଁବେ କରନ୍ତୁ । କିଛିଦିନ ପରେ ଜଣେ କାଳିସୀ କେଳୁଚରଣଙ୍କ ଘରକୁ ଆସିଲେ ଏବଂ ପିଲାଟିର ଦୁଇ ଆଖିକୁ ଛୁଇଁ କିଛି ମନ୍ତ୍ର ବୋଲିଲେ । ଏହାପରେ ପିଲା ସୁସ୍ଥ ହେବାକୁ ଲାଗିଲା । କେଳୁଚରଣଙ୍କ ମା' ଭୁଆସୁଣୀଙ୍କ ପାଇଁ ପୂଜାର ଆୟୋଜନ କରିବାକୁ ଚାହିଁଥିଲେ । କିନ୍ତୁ କେଳୁଚରଣ ଏଥିରେ ଅରାଜି ହେଲେ । ତେଣୁ ତାହା ଆଉ ହୋଇ ନ ଥିଲା ।

ତିନିବର୍ଷ ପରେ ଶିଶୁଟିର ନାମକରଣ କରାଗଲା କେଳୁ । ପ୍ରଥମେ ତାଙ୍କର ନାମ ଥିଲା ମଦନ ମୋହନ । କେଳୁଚରଣଙ୍କ ଜନ୍ମର ଦୁଇ ବର୍ଷ ପରେ ଜନ୍ମ ହୋଇଥିବା ତାଙ୍କର ସାନ ଭଉଣୀ ଚମ୍ପାର ମୃତ୍ୟୁ ହୋଇଥିଲା । ଏହାର କିଛି ମାସ ପରେ ତାଙ୍କର ତଳ ଭାଇ ମଧ୍ୟ ମୃତ୍ୟୁ ମୁଖରେ ପଡ଼ିଲା । ଏଥିରେ କେଳୁଚରଣଙ୍କ ପିତାମାତା ବିଚଳିତ ହୋଇପଡ଼ିଲେ । ସେମାନେ ଭାବିଲେ ଶିଶୁଟିର ରାଶି ଏବଂ ନାମକରଣ ବୋଧହୁଏ ଏଭଳି ବିପଦର କାରଣ । ସେମାନେ ଶିଶୁଟିକୁ ଗୋଟିଏ ନୂଆ ନାମ ଦେବାକୁ ସ୍ଥିର କଲେ । ଶିଶୁଟିର ମାମୁଁ ପ୍ରସ୍ତାବ ଦେଲେ, ଶିଶୁଟିର ନୂଆ ନାମ ହେଉ କେଳା । ଗଣେଶ, ଏକାଦଶୀ, ଚମ୍ପା, ଭଗବାନ, ନିଶା, ବଂଶୀଧର ଭଳି ଭଲ ଭଲ ନାମ ବ୍ୟବହାର ନକରି ଶିଶୁଟିର ନୂଆ ନାମ ଦିଆଗଲା ବାବା କେଳା ।

କେଳୁଚରଣଙ୍କ ଗୃହ ଗୋପୀନାଥଙ୍କ ମନ୍ଦିର ନିକଟରେ – ଧାଡ଼ିରେ ଚତୁର୍ଥ । ଅଳ୍ପ କେତୋଟି ଘର ପରେ ଚାଟଶାଳୀ–ଗାଆଁ ପିଲାମାନେ ଲେଖାପଢ଼ା ଶିଖିବା ପାଇଁ ଛୋଟ ବାରଣ୍ଡାଟିଏ । ପାଞ୍ଚବର୍ଷ ବୟସରେ କେଳୁଚରଣ ଚାଟଶାଳୀରେ ଯୋଗ ଦେଲେ । ତିନିବର୍ଷ ଅନିୟମିତ ପାଠପଢା ମଧ୍ୟରେ ସେ ଶିଖିଥିଲେ ଓଡ଼ିଆ ବର୍ଣ୍ଣମାଳା ଏବଂ ଦଶ ପର୍ଯ୍ୟନ୍ତ ସଂଖ୍ୟା । ଚାଟଶାଳୀର ଶିକ୍ଷକଙ୍କୁ ପିଲାମାନେ ବିଶେଷ ଭଲ ପାଉ ନଥିଲେ । କେଳୁଚରଣଙ୍କ ମନେ ଅଛି – ଶିକ୍ଷକ ମହାଶୟ ସବୁବେଳେ ବସି ବସି ପଟଚିତ୍ର ଆଙ୍କୁଥାନ୍ତି । ତାଙ୍କ ପାଖରେ ଥୁଆହୋଇଥାଏ ଲମ୍ବା ବେତଟିଏ । ବେଳେବେଳେ ସେ ହଠାତ୍ ପିଲାମାନଙ୍କ ଆଡ଼କୁ ଚାହିଁ କାହାକୁ ପାହାରଟିଏ ପକାନ୍ତି । ପିଲାମାନଙ୍କ ଭିତରେ ଗୋପୀନାଥ, କେଳୁଚରଣ ଓ ଶ୍ୟାମ ଥାଆନ୍ତି ଖୁବ୍ ଦୁଷ୍ଟ । ଥରେ ସେମାନେ ଶିକ୍ଷକଙ୍କ ଆସନ ଉପରେ କଣ୍ଟା ଗୁଡ଼ିଏ ବିଛାଇ ଦେଇ ଭୟରେ ତିନିଦିନ ଗୋଟିଏ ତାଳଗଛ ଉପରେ ଲୁଚି ରହିଲେ ।

ବିଦ୍ୟାଳୟରେ ପଢିବାକୁ କେଳୁଚରଣଙ୍କର ବିଶେଷ ଆଗ୍ରହ ନଥିଲା । ଗାଆଁରେ ତ ସବୁବେଳେ କିଛି ନା କିଛି ଘଟୁଥାଏ । ବିଦ୍ୟାଳୟରେ ପାଠପଢା ଅପେକ୍ଷା ସେସବୁରୁ ତାଙ୍କୁ ଅନେକ କିଛି ଶିକ୍ଷା ମିଳୁଥାଏ । କିମ୍ବଦନ୍ତୀ କହେ–ରାମ ଓ ସୀତା ସେମାନଙ୍କ ବନବାସ କାଳରେ ରଘୁରାଜପୁର ଗ୍ରାମ ନିକଟସ୍ଥ ଭୃଗୁନୃସିଂହ ଆଶ୍ରମରେ କିଛି ଦିନ ଆଶ୍ରୟ ନେଇଥିଲେ । ଆଶ୍ରମର ଋଷିମାନଙ୍କ ଆତିଥ୍ୟରେ ପ୍ରୀତ ହୋଇ ରାମ ଓ ସୀତା ସେମାନେ ରହୁଥିବା ଅଞ୍ଚଳଟିର ନାମ କରିଥିଲେ ଜାନକୀଦେଈପୁର । ଚୈତନ୍ୟ ମହାପ୍ରଭୁ ମଧ୍ୟ ତାଙ୍କର ପୁରୀ ଯାତ୍ରା ସମୟରେ ଏହି ଗ୍ରାମ ଦର୍ଶନ କରିଥିଲେ ବୋଲି ବିଶ୍ୱାସ କରାଯାଏ ।



କେଳୁଚରଣଙ୍କ ସାନଭାଇ ବଂଶୀଧର କାଗଜ କଣ୍ଢେଇରେ ରଙ୍ଗ ଦେଉଛନ୍ତି

ତାଙ୍କର ଦଣ୍ଡ ସେଠାରେ ଭଙ୍ଗାଯାଇଥିବାରୁ ଗ୍ରାମ ପାର୍ଶ୍ୱସ୍ଥ ନଦୀଟିର ନାମକରଣ ହୋଇଥିଲା ଦଣ୍ଡଭଙ୍ଗା ।

ପ୍ରତିବର୍ଷ ରଘୁରାଜପୁରରେ ବସନ୍ତ ଉତ୍ସବ ପାଳିତ ହୁଏ । ଜାନକାଦେଈପୁର ଅଞ୍ଚଳର ସବୁ ଗାଆଁରୁ ରାମ ସୀତାଙ୍କ ବିଗ୍ରହସବୁ ଗୋଟିଏ ପଡ଼ିଆରେ ମିଳିତ ହୁଅନ୍ତି । ବିଗ୍ରହସବୁ ଆଠଦିନ ପାଇଁ ବିମାନମାନଙ୍କରେ ସ୍ଥାପିତ ହୁଅନ୍ତି । ଶେଷ ଦୁଇ ଦିନ କିନ୍ତୁ ସଂଗୀତ ଓ ନୃତ୍ୟର ଖୁବ୍ ଆସର ଜମେ । ସଂକୀର୍ତ୍ତନ, ନାଗା ନାଚ, ଯାତ୍ରା, ଭାଲୁ ନାଚ୍, କାଠି ନାଚ ଓ କୃଷ୍ଣ ଲୀଳା ଆଦି ଠାକୁରମାନଙ୍କ ସମ୍ମୁଖରେ ଆନନ୍ଦ ଓ ପ୍ରତିଯୋଗିତାର ବାତାବରଣ ଭିତରେ ଅନୁଷ୍ଠିତ ହୁଏ ।

ଦୁର୍ଗା ପୂଜା, କାର୍ତ୍ତିକ ପୂଜା, ଲକ୍ଷ୍ମୀ ପୂଜା, ସରସ୍ୱତୀ ପୂଜା ପ୍ରଭୃତି ବର୍ଷର ମୁଖ୍ୟ ପର୍ବ । କୁହାଯାଏ – ପୁରୀରେ ବାରମାସରେ ତେର ପର୍ବ ପାଳିତ ହୁଏ । ଯାତ୍ରାଦଳମାନେ ପାଖଆଖ ଗାଆଁଗୁଡ଼ିକରୁ ଆସି ରଘୁରାଜପୁର ଗୋପୀନାଥ ମନ୍ଦିର ଆଗରେ ସାରାରାତି ଅଭିନୟ କରନ୍ତି । ଗୋପୀନାଥ ମନ୍ଦିରଟି କେଳୁଚରଣଙ୍କ ଗୃହର ଖୁବ୍ ନିକଟରେ । ସଂଗୀତ, ନାଟକ, ନୃତ୍ୟ ମାଧ୍ୟମରେ ଅତୀତ ଓ ବର୍ତ୍ତମାନର କାଳ୍ପନିକ କାହାଣୀସବୁ ଜୀବନ୍ତ ହୋଇଉଠନ୍ତି । ରଘୁରାଜପୁର ଗାଆଁର ନିଜର ମଧ୍ୟ ଯାତ୍ରା ଦଳଟିଏ ଥିଲା । କେଳୁଚରଣଙ୍କ ଠାରୁ ବୟସରେ ଅଳ୍ପ ବଡ଼ ପିଲାମାନେ ସେଥିରେ ଅଭିନୟ କରୁଥିଲେ । ଜଗନ୍ନାଥ ମହାପାତ୍ର ଏଥିରେ ହେଉଥିଲେ ମୁଖ୍ୟ ନାୟକ । ପଟଚିତ୍ର ପାଇଁ ଜାତୀୟ ସ୍ତରରେ ପୁରସ୍କୃତ ହେବାରେ ସେ ହିଁ ପ୍ରଥମ । ମାଗୁଣୀ ଦାସ



୧୯୯୬ରେ ଅନୁଷ୍ଠିତ ରଘୁରାଜପୁରର ବସନ୍ତ ଉତ୍ସବରେ ଜଗନ୍ନାଥ ମହାପାତ୍ର
ବିଜୁ ପଟ୍ଟନାୟକଙ୍କ ଠାରୁ ପୁରସ୍କାର ଗ୍ରହଣ କରୁଛନ୍ତି

ଏଥିରେ ହେଉଥିଲେ ନାୟିକା । ଏଯାବତ୍ ସେ ଗ୍ରାମରେ ଗୋଟିପୁଅ ନାଚର ପରଂପରା ରକ୍ଷାକରି ଆସିଛନ୍ତି । କେଳୁଚରଣଙ୍କ କାକା ଆନନ୍ଦ ଥିଲେ ଜଣେ ପ୍ରସିଦ୍ଧ ଢୋଲ ବାଦକ । ଯାତ୍ରାଦଳ ସହିତ ସେ ବିଭିନ୍ନ ସ୍ଥାନକୁ ଯାଉଥିଲେ । ପିଲାଦିନୁ କେଳୁଚରଣ ଅନ୍ୟ ପିଲାମାନଙ୍କ ସହିତ ମିଶି ହାତରେ ଛୋଟ ଛୋଟ ବାଡ଼ି ଧରି ନାଚୁଥିଲେ । ସେହି ନାଚିବା ସମୟରେ ସେ ଲକ୍ଷ୍ୟ କରୁଥିଲେ ମୁଖ୍ୟ–ନାୟକ ନାୟିକାମାନଙ୍କର ଚମତ୍କାର ଅଭିନୟ, ବେଶଭୂଷା, ପୋଷାକ ପରିଚ୍ଛଦ ଏବଂ ସେମାନଙ୍କ ମୁଖମଣ୍ଡଳରେ ପ୍ରତିଫଳିତ ଉଜ୍ଜ୍ୱଳ ଆଲୋକ ।

ପ୍ରତିଦିନ ସନ୍ଧ୍ୟାରେ ଗାଆଁର କେତେକ ଲୋକ ଶ୍ରୀ ଗୌରାଙ୍ଗ ମନ୍ଦିର ସମ୍ମୁଖରେ ଏକାଠି ହୁଅନ୍ତି । ଗୌରାଙ୍ଗ ମନ୍ଦିରଟି ଧାଡ଼ିର ଷଷ୍ଠ ମନ୍ଦିର । ଏମାନେ ମୃଦଙ୍ଗ, ଝାଞ୍ଜ ଓ ମଞ୍ଜିରା ବଜାଇ ଓ ସଂସ୍କୃତ ଶ୍ଳୋକ ଗାଇ ଗାଇ ପଟୁଆରରେ ଗ୍ରାମ ପରିକ୍ରମା କରନ୍ତି । ଏପରି ସଂକୀର୍ତ୍ତନ ଦଳରେ ଅତିକମ୍‌ରେ ବାରଜଣ ଲୋକ ଥାଆନ୍ତି । ସେମାନଙ୍କ ମଧ୍ୟରୁ ଦୁଇଜଣ ଶ୍ଳୋକ ବୋଲନ୍ତି ଏବଂ ଅନ୍ୟ ଦଶଜଣ ଥାଆନ୍ତି ପାଳିଆ । ଏହି ପ୍ରଥା ଚୈତନ୍ୟ ଏବଂ ତାଙ୍କ ଶିଷ୍ୟମାନଙ୍କ ସମୟରୁ ଚଳିଆସିଛି । ବର୍ତ୍ତମାନ ସୁଦ୍ଧା ଏହି ମନ୍ଦିରଟି ଚୈତନ୍ୟଙ୍କର ଭକ୍ତମାନେ ପରିଚାଳନା କରନ୍ତି । ସଂକୀର୍ତ୍ତନ କରିବା ପାଇଁ ସେମାନଙ୍କର ଅନୁମତି ନିଆଯାଏ । ସଂସ୍କୃତ ଶ୍ଳୋକ ଏବଂ ବୈଷ୍ଣବ ପଦାବଳୀ ଗାନ କରାଯିବା ଯେପରି ଗୁରୁତ୍ୱପୂର୍ଣ୍ଣ, ସଂଗୀତ ଓ ବାଦ୍ୟଯନ୍ତ୍ର

ସେହିପରି । ମୃଦଙ୍ଗ[୧] ବା ଖୋଳ ସଂକୀର୍ତ୍ତନର ମୁଖ୍ୟବାଦ୍ୟ । ଏହା ମାଟିରେ ତିଆରି ଦୁଇପାର୍ଶ୍ୱରେ ବଜା ଯାଉଥିବା ଏକ ଲମ୍ବାକୃତି ତାଳବାଦ୍ୟ । କାଠରେ ପ୍ରସ୍ତୁତ ଢୋଲକ, ମର୍ଦ୍ଦଳ ଓ ତାବ୍‌ଲା ଭଳି ବାଦ୍ୟଯନ୍ତ୍ରଠାରୁ ଏହା ଅତି ପୁରୁଣା । ମୃଦଙ୍ଗ ସହିତ ବ୍ୟବହୃତ ବାଣୀ ବା ବୋଲ୍‌ରେ ମୂଳତଃ ଅଠର ପ୍ରକାର ଶବ୍ଦାଂଶ (ସିଲେବଲ୍) ବ୍ୟବହାର କରାଯାଏ ।

କେଳୁଚରଣଙ୍କର ବାପା ଚିନ୍ତାମଣି ମହାପାତ୍ର ଜାତିରେ ଥିଲେ ଚିତ୍ରକର । ସେ ମଧ୍ୟ ଭଲ ଖୋଳ ବଜାଇ ପାରୁଥିଲେ । ଶିଶୁ କେଳୁଚରଣ ତାଙ୍କର ବାପା ବା ଆନନ୍ଦ କାକାଙ୍କ ନିକଟରେ ବସି ସେମାନଙ୍କ ଅଙ୍ଗୁଳି ଚାଳନା ଲକ୍ଷ୍ୟ କରୁଥିଲେ ଏବଂ ଯେକୌଣସି ବସ୍ତୁ ଉପରେ ଅଙ୍ଗୁଳି ଚାଳନା କରି ସେମାନଙ୍କୁ ଅନୁକରଣ କରୁଥିଲେ । କିନ୍ତୁ ଯାହା କେଳୁଚରଣଙ୍କୁ ସବୁଠାରୁ ବେଶୀ ଆକର୍ଷଣ କରୁଥିଲା, ତାହା ଥିଲା ଗ୍ରାମ ଚାଟଶାଳୀ ନିକଟସ୍ଥ ଗୋଟିଏ କ୍ଷୁଦ୍ର ଗୃହରୁ ଶୁଭୁଥିବା ସଂଗୀତ ଓ ନୃତ୍ୟର ଧ୍ୱନି । ପ୍ରତିଦିନ ଚାଟଶାଳୀ ଯିବା ବାଟରେ କେଳୁଚରଣ ଲୁଚିଛପି ସେ ଘର ଭିତରକୁ ଅନାନ୍ତି । ବାରଣ୍ଡାର ଖମ୍ବ ଆଢୁଆଳରେ ଘଣ୍ଟା ଘଣ୍ଟା ଠିଆ ହୁଅନ୍ତି । ଘର ଭିତରକୁ ପ୍ରବେଶ କରିବା ପାଇଁ ତାଙ୍କର ସାହସ ନଥାଏ । ଗୁରୁ ବଳଭଦ୍ର ସାହୁ ପିଲାଟିଏ ଏପରି ତାଙ୍କର ନୃତ୍ୟଶିକ୍ଷା ଲକ୍ଷ୍ୟ କରୁଛି ଜାଣି ଦିନେ ତାକୁ ଘର ଭିତରକୁ ଡାକିଲେ ଓ ସେ କ'ଣ ଦେଖୁଛି ବୋଲି ପଚାରିଲେ । ସେତେବେଳେ କେଳୁଚରଣଙ୍କୁ ମାତ୍ର ପାଞ୍ଚବର୍ଷ ବୟସ । ସେହିଦିନଠାରୁ ତାଙ୍କର ନୃତ୍ୟଶିକ୍ଷା ଆରମ୍ଭ ହେଲା ।

ବଳଭଦ୍ର ସାହୁଙ୍କ ନିଜ ଘର ରଘୁରାଜପୁର ନୁହେଁ । ସେ ତାଙ୍କ ପରିବାର ସହିତ ଅନ୍ୟ ଏକ ଗ୍ରାମରୁ ଆସି ଏଠାରେ ରହୁଥିଲେ । ଏଠାରେ ବହୁବର୍ଷ ରହିଆସିଥିଲେ ସୁଦ୍ଧା ଗ୍ରାମବାସୀ ତାଙ୍କୁ ଦୂରେଇ ରଖୁଥିଲେ । ମୋହନ ମହାରଣା ଓ ଅଗାଧୁ ମହାରଣାଙ୍କ ଦ୍ୱାରା ପରିଚାଳିତ ଆଖଡ଼ା ବା ନୃତ୍ୟଶିକ୍ଷା ଅନୁଷ୍ଠାନରେ ଅନେକ ଛାତ୍ର ଥିଲେ । ଏହି ଛାତ୍ରମାନେ ବିଭିନ୍ନ ପର୍ବପର୍ବାଣିରେ ଭାଗ ନେବାର ସୁଯୋଗ ପାଉଥିଲେ । କିନ୍ତୁ କେଳୁଚରଣ ବଳଭଦ୍ର ସାହୁଙ୍କ ଆଖଡ଼ାରେ ନାମ ଲେଖାଇଲେ । ସେଠାରେ ଥିଲେ ଜଣେ ମାତ୍ର ଗୁରୁ । ଏ ଗୁରୁ ଜାତିରେ ଥିଲେ ଗୁଡ଼ିଆ । ସକାଳୁ ସେ ଗୋଟିଏ ବେତାରେ ଉଖୁଡ଼ା, ଖଜା, ପେଡ଼ା ଓ ଜିଲେବି ବିକ୍ରି କରିବା ପାଇଁ ବାହାରୁଥିଲେ । ସେଥିରୁ ମିଳୁଥିବା ଆୟରେ ଚାଉଳ ଓ ପରିବା ଇତ୍ୟାଦି କିଣୁଥିଲେ । କେଳୁଚରଣଙ୍କ ମନେଅଛି, ଗୁରୁ ବଳଭଦ୍ର ଥିଲେ ଅତ୍ୟନ୍ତ ବିନୟୀ ଓ ପରିଶ୍ରମୀ । ଅଭିନୟ କଳାରେ ତାଙ୍କର ଯଥେଷ୍ଟ ଦକ୍ଷତା ଥିଲା– ବିଶେଷତଃ ନାରୀ ଭୂମିକାରେ । ସଂଗୀତ ଗାୟନ ଓ

---

୧) ମୃଦଙ୍ଗ : ପ୍ରଚଳିତ କିମ୍ବଦନ୍ତୀ ଅନୁସାରେ ମାଟିରେ ପ୍ରସ୍ତୁତ ମୃଦଙ୍ଗ ସହଜରେ ଭାଙ୍ଗିଯାଉଥିବାରୁ ଭଗବାନ ଶିବ କାଠରେ ମୃଦଙ୍ଗଟିଏ ପ୍ରସ୍ତୁତ କଲେ । ଏହାର ଶବ୍ଦ ଶ୍ରୁତିମଧୁର ହେବାରୁ ଏହାକୁ ପଖଉଜ ମଧ୍ୟ କୁହାଗଲା । ମୁସଲମାନମାନେ ଏହାକୁ ଦୁଇଖଣ୍ଡ କରି ବ୍ୟବହାର କଲେ । ଏହାର ଶବ୍ଦ ମଧ୍ୟ ଶ୍ରୁତିମଧୁର ହେଲା । ଶ୍ରୁତିମଧୁର (ତାବି ବାଲା)ରୁ ତାବ୍‌ଲା ଶବ୍ଦ ସୃଷ୍ଟି ହେଲା ।


ଓଡ଼ିଶୀ ଶୈଳୀରେ କେଳୁଚରଣଙ୍କ ତ୍ରିଭଙ୍ଗ ପ୍ରଦର୍ଶନ

ଗୋଟିପୁଅ ନାଚରେ ସେ ଧୁରନ୍ଧର ଥିଲେ ; ମର୍ଦ୍ଦଳ ଓ ଭାୟୋଲିନ୍ ବଜାଇବାରେ ମଧ୍ୟ ।

ପ୍ରତିଦିନ ସକାଳେ ପ୍ରାୟ ତିନିବର୍ଷ ଧରି ନାଚ ଶିଖିବା ପାଇଁ କେଳୁଚରଣ ବଳଭଦ୍ର ସାହୁଙ୍କ ଆଖଡ଼ାକୁ ଗଲେ । ଗୁରୁ ନଥିଲେ ସେ ନାଚ ଶିଖୁଥିଲେ ପାଣୁଆଙ୍କଠାରୁ । ପାଣୁଆ ଥିଲେ ଆଖଡ଼ାର ଏକମାତ୍ର ଅନ୍ୟ ଛାତ୍ର । କେଳୁଚରଣଙ୍କ ପିତା ପ୍ରତିଦିନ ସକାଳ ହେଉ ହେଉ କପାଟେଶ୍ୱର ମନ୍ଦିର ଦର୍ଶନ କରୁଥିଲେ । ତାଙ୍କର ସ୍ନାନ, ମନ୍ଦିରକୁ ଯିବା ଓ ଫେରିବା, ପୂଜା ଇତ୍ୟାଦିରେ ପ୍ରାୟ ଦୁଇଘଣ୍ଟା କଟିଯାଉଥିଲା । ଏହି ଦୁଇଘଣ୍ଟା କେଳୁଚରଣ କଟାଉଥିଲେ ଗୁରୁଙ୍କ ଆଖଡ଼ାରେ । ତାଙ୍କର ବାପା ଏହା ଜାଣି ପାରୁନଥିଲେ ।

ଗୋଟିପୁଅ ନାଚ ବା ପୁଅମାନେ ଝିଅମାନଙ୍କ ବେଶ ପିନ୍ଧି ନାଚିବା କେବେ ଆରମ୍ଭ ହେଲା ତାହା ଠିକ୍ ଜଣାନାହିଁ । ତେବେ ପୁରୀକୁ ଚୈତନ୍ୟଙ୍କ ଆଗମନ ପରେ ବୈଷ୍ଣବ ଧର୍ମ ଓ ଦର୍ଶନର ପ୍ରଚାର ପାଇଁ ଏହାର ଆରମ୍ଭ ହୋଇଥାଇପାରେ । ଏହି ନାଚରେ ସଖୀ ଭାବ ବା କୃଷ୍ଣଙ୍କ ନିକଟରେ ସଖୀ ଭାବରେ ନିଜକୁ ସମର୍ପଣ କରିବାର ଭାବ ଉଦ୍ରେକ ହୁଏ । ଷୋଡ଼ଶ ଓ ସପ୍ତଦଶ ଶତାବ୍ଦୀରେ ଆଫଗାନ ଓ ମୁସଲମାନମାନଙ୍କ ଆକ୍ରମଣ ସମୟରେ ଓଡ଼ିଶାର ରାଜନୀତିକ ଓ ଧାର୍ମିକ ପରମ୍ପରା ବିପର୍ଯ୍ୟସ୍ତ ହୋଇଥିଲା । ଜଗନ୍ନାଥ ମନ୍ଦିରର ରୀତିନୀତି ପାଳିତ ହେବାରେ ସଂକଟ ସୃଷ୍ଟି ହୋଇଥିଲା । ଜଗନ୍ନାଥ ମନ୍ଦିରରେ ପ୍ରଚଳିତ ମାହାରୀ ନୃତ୍ୟ ବନ୍ଦ ହୋଇଯିବାର ସମ୍ଭାବନା ଥିଲା । ବୋଧହୁଏ ଏହି ସମୟରେ ମନ୍ଦିରର ସେବାୟତମାନେ ଝୁଲଣ ଓ ଚନ୍ଦନ ଯାତ୍ରା ସମୟରେ ଜଗନ୍ନାଥଙ୍କ ଚଳନ୍ତି ପ୍ରତିମା ମଦନମୋହନଙ୍କ ବିଗ୍ରହ ସମ୍ମୁଖରେ ପୁଅମାନଙ୍କୁ ଝିଅ ବେଶରେ ସଜାଇ ନଚାଇବାର ପରମ୍ପରା ଆରମ୍ଭ କରିଥିଲେ ।

ମନ୍ଦିର ଭିତରେ କେବଳ ମାହାରୀମାନେ ହିଁ ନାଚୁଥିଲେ । କିନ୍ତୁ ମନ୍ଦିର ବାହାରେ ମାହାରୀମାନଙ୍କ ବଦଳରେ ପୁଅ ବା ସାହୀପିଲାମାନେ ନାଚିବା ଆରମ୍ଭ ହେଲା । ଆଖଡ଼ା

ବା ଜାଗାଘରମାନଙ୍କରେ ପୁଅମାନଙ୍କୁ ନାଚ ଶିଖାଗଲା । ଆଖଡ଼ାମାନଙ୍କର ମୂଳ ଉଦ୍ଦେଶ୍ୟ ଥିଲା ମନ୍ଦିରକୁ ଆକ୍ରମଣକାରୀମାନଙ୍କଠାରୁ ରକ୍ଷା କରିବା ପାଇଁ ସାମରିକ ଶିକ୍ଷା । ଆଖଡ଼ାରେ ତାଲିମ ପାଇଥିବା ପିଲା ବା ଆଖଡ଼ା ପିଲାମାନଙ୍କର ଜଗନ୍ନାଥଙ୍କ ରୀତିନୀତି ସହିତ ସଂପର୍କ ନଥିଲା । ତେବେ ଏମାନେ ବୈଷ୍ଣବ ଧର୍ମ ପ୍ରଚାରରେ ସାହାଯ୍ୟ କରୁଥିଲେ । କାରଣ, ସେମାନେ ବୋଲୁଥିବା ଗୀତସବୁ ରାଧାକୃଷ୍ଣଙ୍କ ଉପରେ ଆଧାରିତ ଥିଲା । ସମୟକ୍ରମେ ଗୋଟିପୁଅମାନେ ଜମିଦାରମାନଙ୍କ ପୃଷ୍ଠପୋଷକତା ଲାଭ କଲେ ଏବଂ ଗୋଟିପୁଅ ଦଳ ନାମରେ ସେମାନେ ସର୍ବସାଧାରଣ ସ୍ଥାନରେ ଆମୋଦପ୍ରମୋଦ ପାଇଁ ନାଚିବା ଆରମ୍ଭ କଲେ ।

ଏପରି ନାଚିବା ଫଳରେ ପିଲାମାନେ ଅବଶ୍ୟ କିଛି ଆୟ କରିପାରିଲେ । ବୈଷ୍ଣବ ଧର୍ମର ପ୍ରଚାର ମଧ୍ୟ ହେଲା । କିନ୍ତୁ ବାହ୍ୟ ପ୍ରଭାବରୁ ନାଚର ମୂଳ ଶୁଦ୍ଧତା କ୍ଷୁର୍ଣ୍ଣ ହେଲା । ବିଂଶ ଶତାବ୍ଦୀର ଆରମ୍ଭ ବେଳକୁ ଗୋଟିପୁଅ ନାଚକୁ ଅନେକେ ଶସ୍ତା, ଏପରିକି ଅଶାଳୀନ ବୋଲି ମନେକଲେ । ଦଶର୍କମାନଙ୍କୁ ଆମୋଦିତ କରିବା ତଥା ଅର୍ଥ ଉପାର୍ଜନ କରିବା କେତେକାଂଶରେ ଏଭଳି ନାଚର ଉଦ୍ଦେଶ୍ୟ ହୋଇଥିବ ନିଶ୍ଚୟ । କିନ୍ତୁ ଜଗନ୍ନାଥ ମନ୍ଦିରରେ ଦେବଦାସୀ ପ୍ରଥାର ଅବକ୍ଷୟ ପରେ ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଏହି ଆଖଡ଼ାମାନେ ହିଁ ନାଚ ଶିଖାଇବାର କେନ୍ଦ୍ର ଭାବରେ କାର୍ଯ୍ୟ କରିଥିଲେ । ସଂଗୀତ ଗାୟନର ନିର୍ଦ୍ଦିଷ୍ଟ ପଦ୍ଧତି ଏବଂ ନୃତ୍ତ ସହିତ ମର୍ଦ୍ଦଳର ବୋଲ୍‌କୁ ଓଡ଼ିଶୀ କୁହାଯାଉଥିଲା । ପରେ ଏହି ଶବ୍ଦ ଓଡ଼ିଶୀ ନୃତ୍ୟ ପାଇଁ ବ୍ୟବହୃତ ହେଲା । ଆଖଡ଼ା ଘରେ ଦିଆଯାଉଥିବା ଶିକ୍ଷାରେ ଉଭୟ ନୃତ୍ତ (ସଂଗୀତ ସହିତ ନୃତ୍ୟ) ଏବଂ ନୃତ୍ୟ (ଅଭିନୟ ସହିତ ନୃତ୍ୟ) ଅନ୍ତର୍ଭୁକ୍ତ ଥିଲା । ପ୍ରଥମେ ଅବଶ୍ୟ ଏପରି ବିଭକ୍ତୀକରଣ ହୋଇନଥିଲା ।

ଗୋଟିପୁଅ ନାଚର ମୂଳ ଅଙ୍ଗଭଙ୍ଗୀ ଥିଲା ଚଉକ (ଏକ ନିର୍ଦ୍ଦିଷ୍ଟ ରୀତିରେ ଆଣ୍ଠୁ ଭାଙ୍ଗିବା), ତ୍ରିଭଙ୍ଗୀ (ଶରୀରକୁ ନିର୍ଦ୍ଦିଷ୍ଟ ରୀତିରେ ତିନିପ୍ରକାର ଭଙ୍ଗୀରେ ଚାଳନା କରିବା), ପରିଙ୍ଗା ଓ ବହୁଳା (ନିର୍ଦ୍ଦିଷ୍ଟ ରୀତିରେ ହସ୍ତରେ ମୁଦ୍ରା ପ୍ରଦର୍ଶନ କରିବା) । ଗୋଟିପୁଅ ଓସ୍ତାଦ୍‌ମାନେ ଶାସ୍ତ୍ରୀୟ ଶବ୍ଦାବଳୀ ହୁଏତ ବ୍ୟବହାର କରୁନଥିଲେ । ତଥାପି ସେମାନଙ୍କ ନୃତ୍ୟଶିକ୍ଷାରେ ସେମାନେ ଏକ ପଦ୍ଧତି ପ୍ରୟୋଗ କରୁଥିଲେ । ଏହି ପଦ୍ଧତି ସେମାନଙ୍କ ଛାତ୍ରମାନଙ୍କ ବୋଧଗମ୍ୟ ହେଉଥିଲା ନିଶ୍ଚୟ । ଗୋଟିପୁଅ ନାଚ ଶିଖୁଥିବା ପିଲାମାନଙ୍କ ବୟସ ମୋଟାମୋଟି ଥିଲା ପାଞ୍ଚରୁ ବାରବର୍ଷ ମଧ୍ୟରେ । ଉଦାହରଣ ସ୍ୱରୂପ, ପାତକ ମୁଦ୍ରା (ମୁକ୍ତ ଅଙ୍ଗୁଳି ପ୍ରଦର୍ଶନ କରୁଥିବା ଖୋଲା ପାପୁଲି) ଶିକ୍ଷା ଦିଆଯାଉଥିବା ସମୟରେ କୁହାଯାଉଥିଲା 'ଏକ ଚାପୁଡ଼ା ମାରିବି ।' କର୍ତ୍ତରୀ (ବିଶି ଆଙ୍ଗୁଠି ଓ ମଝି ଆଙ୍ଗୁଠିକୁ କତୁରୀ ପରି ଦେଖାଇବା)ବେଳେ କୁହାଯାଉଥିଲା 'ନାକ କାଟିଦେବି ।' କପିତ୍ଥ (ବିଶି ଆଙ୍ଗୁଠିକୁ ବଙ୍କାଇ ବୁଢ଼ା ଆଙ୍ଗୁଠିରେ ଲଗାଇବା)କୁ କୁହାଯାଉଥିଲା 'କାନ ମୋଡ଼ିଦେବି ।' ଅର୍ଦ୍ଧଚନ୍ଦ୍ର



ମାତା ଶିରିନାନୀଙ୍କ ସହିତ କେଳୁଚରଣ

(ପାତକ ମୁଦ୍ରାରେ ବୁଢ଼ା ଆଙ୍ଗୁଠିକୁ ଦେଖାଇବା) କୁହାଯାଉଥିଲା 'ଗଳାରେ ଧକ୍କା ଦେଇ ବାହାର କରିଦେବି ।' ଆଖଡ଼ାରେ ତିନିବର୍ଷ ତାଲିମ ନେବା ଭିତରେ କେଳୁଚରଣ କିଛି ତାଳ ଓ ଲୟ ତଥା ପଦଚାଳନା ସହିତ ତିନୋଟି ଓଡ଼ିଆ ଗୀତକୁ ଅଭିନୟ ସହିତ କିପରି ଗାଇହେବ ଶିଖି ନେଇଥିଲେ । ଗୀତ ତିନୋଟି ହେଲା– 'ଲୀଳାନିଧି ହେ ଲାଜେ ମୁଁ ଗଲିଟି ସରି', 'ଆଜ ମୁଁ ଦେଖିଲି ଶ୍ୟାମକୁ ଗୋ' ଏବଂ 'କେଡ଼େ ସୁନ୍ଦର ନବୀନ ନାଟୁଆ'। ସଂଧ୍ୟାବେଳେ ପ୍ରାୟ ସେ ଅନ୍ୟ କାହା ଆଖଡ଼ାରେ ବସି ଅଭିନୟ ଦେଖୁଥିଲେ କିମ୍ବା ବାପାଙ୍କ ସହିତ କୀର୍ତ୍ତନରେ ଯୋଗ ଦେଉଥିଲେ । ବାପାଙ୍କୁ ନଜଣାଇ ଶିଶୁ କେଳୁଚରଣ ଯେ ତିନିବର୍ଷ କାଳ ଗୁରୁ ବଳଭଦ୍ର ସାହୁଙ୍କଠାରୁ ନୃତ୍ୟ ଶିକ୍ଷା କରିପାରିଲେ, ଏଥିପାଇଁ ତାଙ୍କ ମା'ଙ୍କୁ ପ୍ରଶଂସା କରିବାର କଥା । ତାଙ୍କ ମା'ଙ୍କୁ ଗାଆଁରେ ସମସ୍ତେ ଆଦରରେ ଡାକୁଥିଲେ ଶିରିନାନୀ । ସେ ତାଙ୍କ ସ୍ୱାମୀଙ୍କଠାରୁ ଟିକିଏ ଭିନ୍ନ ପ୍ରକୃତିର ମଣିଷ ଥିଲେ । ସ୍ୱାମୀ ଥିଲେ ଗମ୍ଭୀର, ଆତ୍ମକେନ୍ଦ୍ରିକ । ଶିରିନାନୀ କିନ୍ତୁ ଥିଲେ ମେଳାପୀ, ଅନ୍ୟମାନଙ୍କୁ ସାହାଯ୍ୟ କରିବା ପାଇଁ ଆଗେଇ ଆସୁଥିଲେ । ସେ ଥିଲେ କ୍ଷୁଦ୍ର ଓ ପତଳା । ସାଧାରଣ ଓଡ଼ିଆ ମହିଳାଙ୍କ ପରି ତାଙ୍କର ମୁହଁ ଥିଲା ଗୋଲ୍, ଆଖି ଉଜ୍ଜ୍ୱଳ, ଦେହରେ ଅସାଧାରଣ ଶକ୍ତି । ସେ ମଧ୍ୟ ଥିଲେ ଖୁବ୍ ସହନଶୀଳା । କେଳୁଚରଣ ମା'ଙ୍କଠାରୁ ଅନେକ ଭଲଗୁଣ ଶିକ୍ଷା କରିଥିଲେ । ମା'ଙ୍କ ଭଳି ତାଙ୍କର ମଧ୍ୟ ଦୃଢ଼ ବ୍ୟକ୍ତିତ୍ୱ ।

କେଳୁଚରଣଙ୍କ ମା' ସଂଗୀତ ଓ ନାଟକକୁ ଭଲପାଉଥିଲେ । ଗାଆଁଠାରୁ ଦୂରବାଟ ଚାଲି ଚାଲି ଯାଇ ସାରା ରାତି ସେ ଯାତ୍ରା ଦେଖୁଥିଲେ । କୋଣାର୍କ ମନ୍ଦିରରେ ଖୋଦିତ ନର୍ତ୍ତକୀମାନଙ୍କ ବିଭିନ୍ନ ନୃତ୍ୟଭଙ୍ଗୀ ପ୍ରତି ସେ ହିଁ କେଳୁଚରଣଙ୍କୁ ଆକୃଷ୍ଟ କରିଥିଲେ । ଗ୍ରାମର

ଅନ୍ୟ କେତେଜଣ ମହିଳାଙ୍କ ସହିତ ପ୍ରାୟ ସତୁରୀ କିଲୋମିଟର ରାସ୍ତା ଚାଲି ଚାଲି ସେ କୋଣାର୍କ ଯାଇଥିଲେ ଚନ୍ଦ୍ରଭାଗାରେ ବୁଡ଼ ପକାଇବା ପାଇଁ । ସେଠାରୁ ଫେରି କୋଣାର୍କର ସୁନ୍ଦର ମୂର୍ତ୍ତିଗୁଡ଼ିକ ବିଷୟରେ ସେ କେଳୁଚରଣଙ୍କ ନିକଟରେ ବର୍ଣ୍ଣନା କରିଥିଲେ । ସେତେବେଳେ କେଳୁଚରଣଙ୍କୁ ମାତ୍ର ଛଅବର୍ଷ ବୟସ । ସେ ଆଖି ବନ୍ଦକରି କୋଣାର୍କର ମୂର୍ତ୍ତିଗୁଡ଼ିକୁ ଯେପରି ବାସ୍ତବରେ ଦେଖିପାରୁଥିଲେ ।

କେଳୁଚରଣଙ୍କ ମା'ଙ୍କ ବାପଘର ଥିଲା ରଘୁରାଜପୁର । ସେ ଓ ତାଙ୍କ ସ୍ୱାମୀଙ୍କର ଗୋଟିଏ ଜାତି । ଚିତ୍ରକାର ପରିବାରରେ ପଟି ବା କ୍ୟାନ୍‌ଭାସ୍ ପ୍ରସ୍ତୁତ କରିବାର ଅଧିକାଂଶ କାମ ମହିଳାମାନେ କରିଥାନ୍ତି । ହେଂସ କାଟି ଶୁଖାଇ ତା' ଉପରେ ଖଣ୍ଡ ଖଣ୍ଡ ଓଦା କନା ଅଠାରେ ଲଗାଇ ଦିଅନ୍ତି । ତାହା ଭଲଭାବରେ ଶୁଖିଗଲେ ଚିତ୍ରର ଆକାର ଅନୁଯାୟୀ ତାହା କାଟିଦିଅନ୍ତି । ଏହି ପଟିକୁ ଚିକ୍କଣ ପଥରରେ ଘଷି ଘଷି ସାମାନ୍ୟ ହଳଦିଆ କରାଯାଏ । ତାହାପରେ ସେଥିରେ ରଙ୍ଗ ଦିଆଯାଏ ।

ପୁରୁଷମାନେ ଚିତ୍ର ଆଙ୍କନ୍ତି ସତ,କିନ୍ତୁ ଏଥିରେ ମହିଳାମାନଙ୍କର ବିଶେଷ ସହଯୋଗ ଥାଏ । ଚିତ୍ର ଆଙ୍କିବା ପାଇଁ ସେମାନେ ରଙ୍ଗ ପ୍ରସ୍ତୁତ କରନ୍ତି । ଖଣିଜ ପଥର ଗୁଣ୍ଡକରି ସେଥିରୁ ପିଷଳୀ (ନାଲି), ହରିତାଳ (ହଳଦିଆ) ରଙ୍ଗ ପ୍ରସ୍ତୁତ କରାଯାଏ । ସେଥିରେ ସାମାନ୍ୟ ପାଣି ମିଶାଇ ଛୋଟ ଛୋଟ ଗୁଳା ପ୍ରସ୍ତୁତ କରାଯାଏ । ଚିତ୍ର କରିବା ସମୟରେ କଇଁଥ ଗଛର କ୍ଷୀର ବ୍ୟବହାର କରାଯାଏ । ଧଳାରଙ୍ଗ ପାଇଁ ଶାମୁକା ଓ ଶଙ୍ଖକୁ ଗୁଣ୍ଡକରି କିଛିସମୟ ପାଣିରେ ଶିଝାଯାଏ । ଏହା ବହଳ ମଣ୍ଡ ପରି ହୋଇଗଲେ ଖରାରେ ଶୁଖାଇ ଦିଆଯାଏ । କଳାରଙ୍ଗ ପାଇଁ କଜ୍ଜ୍ୱଳ ବ୍ୟବହାର କରାଯାଏ ।

କେଳୁଚରଣଙ୍କ ମନେଅଛି, ତାଙ୍କର ମା' ସବୁବେଳେ କିଛି ନା କିଛି କାମରେ ବ୍ୟସ୍ତ ରହୁଥିଲେ । ହାତରେ ଅଠା ପାତ୍ରଟିଏ ଧରି ଘର ଭିତରେ ଏପଟ ସେପଟ ହେଉଥାନ୍ତି କିମ୍ୱା ମାଠିଆରେ ପାଣି ବୋହି ବୋହି ଘରକୁ ଫେରୁଥାନ୍ତି ।

ଚିତ୍ର ଆଙ୍କିଲା ବେଳେ ମା' ସୁନ୍ଦର ସୁନ୍ଦର କାହାଣୀମାନ କେଳୁଚରଣଙ୍କୁ ଶୁଣାଉଥାନ୍ତି । କେଳୁଚରଣଙ୍କ ଆଖି ଆଗରେ ଯେପରି କାହାଣୀଗୁଡ଼ିକ ଜୀବନ୍ତ ହୋଇଉଠେ । ବିଷ୍ଣୁଙ୍କ ଦଶ ଅବତାର, ବାଣାସୁରଙ୍କ କନ୍ୟା ଉଷା ଏବଂ ଶ୍ରୀକୃଷ୍ଣଙ୍କ ନାତି ଅନିରୁଦ୍ଧଙ୍କ ମଧ୍ୟରେ ପ୍ରେମ, ଯୁଗ ଭଞ୍ଜଙ୍କ ଲିଖିତ ଦଶପୋଇ ଚରିତ ଇତ୍ୟାଦି । ଜଗନ୍ନାଥ ଏବଂ କୃଷ୍ଣଙ୍କ ବିଭିନ୍ନ ଚରିତ ପଟଚିତ୍ରଗୁଡ଼ିକର ମୁଖ୍ୟ ପ୍ରସଙ୍ଗ । ଏଇ ଚରିତ ଏବଂ ସେମାନଙ୍କର କାହାଣୀସବୁ ଚିତ୍ର, ମଞ୍ଚ ଏବଂ ସଂକୀର୍ତ୍ତନର ସଂଗୀତରେ ଏପରି ରୂପାୟିତ ହେଉଥିଲେ ଯେ କଳ୍ପନା ଓ ବାସ୍ତବତା ମଧ୍ୟରେ ଭିନ୍ନତା ରହୁନଥିଲା । କଳାର ବିଭିନ୍ନ ମାଧ୍ୟମରେ ଅରୂପକୁ ରୂପଦାନ କରାଯାଉଥିଲା । କଳା ମାଧ୍ୟମରେ ପରମ୍ପରା ଗଢ଼ିଆସୁଥିଲା । ଏହା ବ୍ୟତିରେକେ ଯେପରି ଜୀବନ ଅର୍ଥହୀନ ହୋଇପଡୁଥିଲା ।

କେଳୁଚରଣଙ୍କ ପିଲାଦିନ କଟିଥିଲା ଚିତ୍ର, ରଙ୍ଗ ଓ ଧ୍ୱନିର ପରିବେଶ ମଧ୍ୟରେ । କଳାପଟାରେ କେତୋଟି ରେଖା ନଶିଖି ସେ ଜୀବନ ବିଦ୍ୟାଳୟରୁ ଶିକ୍ଷା ଲାଭ କରିଥିଲେ । ସାରା ଜୀବନ ସେ ତାହା ହିଁ କରିଥିଲେ ।

ଶିଶୁ କେଳୁଚରଣଙ୍କର ଅସାଧାରଣ ପ୍ରତିଭା ସଂପର୍କରେ ଗୁରୁ ବଳଭଦ୍ର ସାହୁ ନିଶ୍ଚିତ ଭାବରେ ଅବହିତ ଥିବେ । ତିନିବର୍ଷ ନୃତ୍ୟଶିକ୍ଷା ପରେ ଦୁର୍ଗାପୂଜା ସମୟରେ ଦୁର୍ଗାଭୂଜା ମନ୍ଦିର ସମ୍ମୁଖରେ ଶିଷ୍ୟ କେଳୁଚରଣ ନୃତ୍ୟ ପ୍ରଦର୍ଶନ କରିବେ, ଏହା ଥିଲା ଗୁରୁ ସାହୁଙ୍କର ଇଚ୍ଛା । ଏଯାଏଁ କେଳୁଚରଣଙ୍କ ମା' କେଳୁଚରଣଙ୍କ ନୃତ୍ୟଶିକ୍ଷା ସଂପର୍କରେ କେଳୁଚରଣଙ୍କ ବାପାଙ୍କୁ ଜଣାଇ ନଥିଲେ । ଏପରିକି ଗୋଟିନାଚ ସମୟରେ ପିନ୍ଧା ଯାଉଥିବା ଅଳଙ୍କାର – ନାକରେ ନୋଳି, କାନରେ ଫାସିଆ – ପ୍ରଭୃତି ପିନ୍ଧିବା ପାଇଁ କେଳୁଚରଣ ଯେ ନାକ ଓ କାନ ଫୋଡ଼ାଇଥିଲେ, ତାହା ମଧ୍ୟ ତାଙ୍କ ବାପା ଜାଣି ନଥିଲେ । ସର୍ବସାଧାରଣରେ ନାଚିବା ପାଇଁ ତ ବାପାଙ୍କ ଅନୁମତି ଆବଶ୍ୟକ । ମା' ନିଜେ ନାଚିବା ପାଇଁ ପୁଅକୁ ଅନୁମତି ଦେବା ଯଥେଷ୍ଟ ନଥିଲା ।

କେଳୁଚରଣ ବର୍ଷ ବର୍ଷ ଧରି ଯେ ଗୋଟିପୁଅ ଆଖଡ଼ାରେ ଶିକ୍ଷାଲାଭ କରୁଛନ୍ତି, ଏହା ଜାଣି ବାପା ଚିନ୍ତାମଣି ଖୁବ୍ ଦୁଃଖିତ ହେଲେ । ସେ ଥିଲେ ଜଣେ ଗମ୍ଭୀର ପ୍ରକୃତିର ଲୋକ, ଅନ୍ୟମାନଙ୍କ କଥାରେ ପ୍ରାୟ ମୁଣ୍ଡ ଖେଳାଉ ନଥିଲେ । ସେ ଥିଲେ ଦୃଢ଼ମନା ଓ ଈଶ୍ୱରବିଶ୍ୱାସୀ । ନିଜର କାମରେ ସବୁବେଳେ ବ୍ୟସ୍ତ ରହୁଥିଲେ ।

ବଳଭଦ୍ର ସାହୁଙ୍କ ଅନୁରୋଧକୁ ସେ ସମ୍ପୂର୍ଣ୍ଣ ପ୍ରତ୍ୟାଖ୍ୟାନ କରିଦେଲେ ।

'ତୁ କ'ଣ ଦେହ ହାତ ହଲାଇ, ମୁହଁ ବିକୃତ କରି, ଜିଭ କାଢ଼ି, ଫୁଲତୋଡ଼ା ଓ ଟଙ୍କା ଲୋଭରେ ଆମର ବଡ଼ବଡ଼ିଆମାନଙ୍କୁ ଅନାଇ ନାଚ କରିବୁ ? ସେପରି କେବେ ହୋଇପାରିବ ନାହିଁ'– ବାପାଙ୍କର ଏପରି କଡ଼ା କଥାରେ ଶିଶୁ କେଳୁଚରଣ ସ୍ତମ୍ଭୀଭୂତ ହୋଇଗଲେ । ବାପାଙ୍କର ଯେ ନାଚ ବିଷୟରେ ଏପରି ଧାରଣା ଥିଲା, ସେ ଆଦୌ ଜାଣି ନଥିଲେ । ସେହିଦିନଠାରୁ ଗୁରୁଙ୍କୁ ଦେଖା କରିବା ପାଇଁ ତାଙ୍କୁ ମନା କରାଗଲା । ସେହିଦିନ ସେ ଜାଣିଲେ ଯେ ତାଙ୍କର ଗୁରୁ ଆସିଥିଲେ ଅନ୍ୟ ଗୋଟିଏ ଗାଆଁରୁ । ତାଙ୍କୁ ପୁଣି ଥରେ ଭେଟିବାର ଉପାୟ ନଥିଲା । ଏ ଘଟଣା ପରେ ତାଙ୍କର ଗୁରୁ ମଧ୍ୟ ରଘୁରାଜପୁରରେ ଅଧିକ ଦିନ ରହି ନଥିଲେ । ଅଳ୍ପ କେତେବର୍ଷ ଗାଁ' ବାହାରେ ରହିବା ପରେ କେଳୁଚରଣ ଗାଆଁକୁ ଫେରିଲେ । ଗୁରୁଙ୍କୁ ଖୋଜିଲେ । କେହି କିନ୍ତୁ ଗୁରୁଙ୍କ ବିଷୟରେ ତାଙ୍କୁ କହିପାରିଲେନାହିଁ । ଗାଆଁର ତିକ୍ତ ଅନୁଭୂତି ନେଇ ଗୁରୁ ଅନ୍ୟ କେଉଁଆଡ଼େ ଚାଲିଯାଇଥିଲେ ।

କେଳୁଚରଣଙ୍କୁ ସର୍ବସାଧାରଣରେ ନାଚିବା ପାଇଁ ବାପା ଚିନ୍ତାମଣି ଅନୁମତି ନଦେବାର ଏକାଧିକ କାରଣ ଥାଇପାରେ । କେବଳ ବ୍ୟକ୍ତିଗତ କାରଣରୁ ମଧ୍ୟ ସେ ଅନୁମତି ଦେଇପାରି ନଥା'ନ୍ତି । ତେବେ ବିଂଶ ଶତାବ୍ଦୀର ପ୍ରଥମ ଦଶକ ବେଳକୁ ଗୋଟିପୁଅ ନାଚ

ବିକୃତ ଓ ଶସ୍ତା ମନୋରଂଜନରେ ପରିଣତ ହୋଇସାରିଥିଲା । ଏହା ସତ୍ତ୍ୱେ କୁହାଯାଇପାରେ, ଏହି ଗୋଟିପୁଅ ନାଚ ତିଷ୍ଠିରହି ନଥିଲେ ପରବର୍ତ୍ତୀ ସମୟରେ ହୁଏତ ଓଡ଼ିଶୀ ନୃତ୍ୟର ବିକାଶ ସମ୍ଭବ ହୋଇନଥାନ୍ତା । ମନ୍ଦିରରେ ପ୍ରଚଳିତ ମାହାରୀ ନୃତ୍ୟ ଅଳ୍ପ କେତେଜଣ ନାଚୁଥିଲେ । ବିଂଶ ଶତାବ୍ଦୀର ଆରମ୍ଭ ବେଳକୁ ସେମାନଙ୍କ ମଧ୍ୟରୁ ଅନେକେ ଅନ୍ୟ ବୃତ୍ତି ଗ୍ରହଣ କରିନେଇଥିଲେ । ଦେବଦାସୀ ଏବଂ ମନୋରଂଜନଧର୍ମୀ ଗୋଟିପୁଅ ନାଚ, ଏ ଉଭୟର ସମନ୍ୱୟରୁ ଏକ ନୂତନ ଶୈଳୀ ସୃଷ୍ଟି ହେଲା । ଏହି ନୃତ୍ୟଶୈଳୀ ପରେ ଶାସ୍ତ୍ରୀୟତାର ମର୍ଯ୍ୟାଦା ଲାଭ କଲା ।

ପୁଅର ଗୋଟିପୁଅ ନାଚକୁ ବିରୋଧ କଲେ ମଧ୍ୟ ବାପା ଚିନ୍ତାମଣି ପୁଅକୁ ଚିତ୍ରକର ହେବାପାଇଁ ବାଧ୍ୟ କରିନଥିଲେ । ଗାଆଁରେ ତ ଅନେକ ଚିତ୍ରକର ଥିଲେ । ସେମାନେ ଋଣ ଓ ଦାରିଦ୍ର୍ୟ ମଧ୍ୟରେ ଶଢ଼ୁଥିଲେ । ଅଧିକାଂଶ ଅନ୍ୟ କିଛି ବୃତ୍ତି ଆଦରି ନେଇ କୁଟୁମ୍ବ ପାଳୁଥିଲେ । କେହି କେହି ମୂଲିଆ କାମ କରୁଥିଲେ ବା ପାନବରଜ କରିଥିଲେ । ଅନ୍ୟ କେହି କେହି ମିସ୍ତ୍ରୀ କାମ କରୁଥିଲେ ବା ଯାତ୍ରାରେ ଅଭିନୟ କରୁଥିଲେ । ଏକ ସମୟରେ ଗୋଟିପୁଅ ନାଚର ଯେଉଁ ସମୃଦ୍ଧ ପରମ୍ପରା ଥିଲା, ବିଂଶ ଶତାବ୍ଦୀର ଆରମ୍ଭ ବେଳକୁ ତାହା ଆଉ ନଥିଲା । କିଛି ଲୋକ ଗ୍ରାମବାସୀଙ୍କ ଅଶିକ୍ଷାର ସୁଯୋଗ ନେଇ ଏହି ନୃତ୍ୟକୁ ବିକୃତ କରିପକାଇଲେ ।

ଜ୍ୟେଷ୍ଠ ମାସରେ ଜଗନ୍ନାଥଙ୍କ ସ୍ନାନ ପୂର୍ଣ୍ଣିମାର ରୀତିନୀତିରେ ରଘୁରାଜପୁର, ଦାଣ୍ଡସାହି ଏବଂ ପୁରୀର ଚିତ୍ରକରମାନଙ୍କର ଏକ ଭୂମିକା ଥାଏ । ଏହି ସମୟରେ ଜଗନ୍ନାଥ, ବଳଭଦ୍ର ଏବଂ ସୁଭଦ୍ରା ଶୀତଳ ଜଳରେ ସ୍ନାନ କରିବା ଫଳରେ ଅସୁସ୍ଥ ହୋଇପଡ଼ନ୍ତି । ପନ୍ଦର ଦିନ ପାଇଁ ସେମାନଙ୍କୁ ଅଣସର ଘରେ ରଖାଯାଏ ଏବଂ ଔଷଧ ପ୍ରଦାନ କରାଯାଏ । ଏହି ସମୟରେ ଦିଅଁମାନଙ୍କ ପ୍ରତିମାକୁ ଲୋକଲୋଚନର ଅନ୍ତରାଳରେ ତାଟିବାଡ଼ ପଛରେ ରଖାଯାଇଥାଏ । ଏହି ତାଟି ଉପରେ ଚିତ୍ରକରମାନଙ୍କ ଦ୍ୱାରା ପ୍ରସ୍ତୁତ ଜୀଉମାନଙ୍କ ପଟଚିତ୍ର ଝୁଲାଇ ଦିଆଯାଇଥାଏ ଏବଂ ଭକ୍ତଗଣ ଏହି ତାଟିଦିଅଁଙ୍କୁ ହିଁ ଅଣସର ସମୟରେ ଦର୍ଶନ କରିଥାଆନ୍ତି । ଆଷାଢ଼ ମାସରେ ରଥଯାତ୍ରା ଅବସରରେ ଚିତ୍ରକରମାନେ ରଥମାନଙ୍କରେ ଚମତ୍କାର ପାରମ୍ପରିକ ଚିତ୍ରମାନ ଆଙ୍କି ଥାଆନ୍ତି ।

ସ୍ନାନପୂର୍ଣ୍ଣିମା ଓ ରଥଯାତ୍ରାକୁ ବାଦ୍ ଦେଲେ ଅନ୍ୟ ସମୟରେ ଚିତ୍ରକରମାନେ ପଟଚିତ୍ର ବିକ୍ରୟ କରି କିଛି ରୋଜଗାର କରନ୍ତି । ମନ୍ଦିରର ବେଢ଼ା ମଧ୍ୟରେ ତଥା ଅରୁଣ ସ୍ତମ୍ଭ ନିକଟରେ ସେମାନେ ଚିତ୍ର ବିକ୍ରୟ କରିବା ଦେଖାଯାଏ । ସାଧାରଣତଃ ଚିତ୍ରକରମାନଙ୍କ ମଧ୍ୟରୁ କେହି ଜଣେ ନିଲାମ ଧରନ୍ତି । ସେ ଚିତ୍ରକରମାନଙ୍କଠାରୁ ଚିତ୍ର କିଣି ନିଜର ଲାଭ ରଖି ଏପରି ବିକ୍ରୟ କରନ୍ତି । ବିଂଶ ଶତାବ୍ଦୀର ଆରମ୍ଭରେ ଆନନ୍ଦ ମହାନ୍ତି ନାମକ ଜଣେ ବ୍ୟକ୍ତି ଏପରି ନିଲାମ ଧରୁଥିଲେ । ସେ ଶଗଡ଼ରେ ଧାନ ଓ ଚାଉଳ ଇତ୍ୟାଦି ନେଇ

ରଘୁରାଜପୁର ଯାଉଥିଲେ ଏବଂ ବିନିମୟରେ ପଟଚିତ୍ର କିଣୁଥିଲେ । ଅସୁବିଧାରେ ପଡ଼ି ଅନେକେ ଖୁବ୍ କମ୍ ମୂଲ୍ୟରେ ସେମାନଙ୍କ ପଟଚିତ୍ର ବିକ୍ରି କରି ଦେଉଥିଲେ । ସେ ମଧ୍ୟ ଚିତ୍ରକରମାନଙ୍କୁ ଆର୍ଥିକ ଋଣ ଦେଉଥିଲେ ଏବଂ ଋଣ ବଦଳରେ ପଟଚିତ୍ର ନେବେ ବୋଲି ଚୁକ୍ତି କରୁଥିଲେ । ପରେ ସେ ଚୁକ୍ତି ଖିଲାପ କରି ଚିତ୍ରକରମାନଙ୍କଠାରୁ ଶହ ଶହ ଟଙ୍କା ଦାବି କରି ମକଦ୍ଦମା କରୁଥିଲେ । ଏପରି ହେବା ଫଳରେ ବିଂଶ ଶତାବ୍ଦୀର ତୃତୀୟ ଦଶକ ବେଳକୁ ରଘୁରାଜପୁରର ବହୁ ଘରର ସେ ମାଲିକ ହୋଇଗଲେ । ବିଂଶ ଶତାବ୍ଦୀର ଅର୍ଦ୍ଧଭାଗ ବେଳକୁ ନବେଟି ପରିବାରକୁ ଛାଡ଼ିଦେଲେ ଅନ୍ୟମାନେ ଗ୍ରାମ ଛାଡ଼ି ଅନ୍ୟ ସ୍ଥାନକୁ ଚାଲିଗଲେ । ୧୯୫୩ ବେଳକୁ ହାଲିନା ଜିଲି ନାମକ ଜଣେ ଆମେରିକାନ୍ ଭଦ୍ରମହିଳାଙ୍କ ଉଦ୍ୟମରେ ଚିତ୍ରକରମାନଙ୍କର ଭାଗ୍ୟରେ ପୁଣି ପରିବର୍ତ୍ତନ ଆସିଲା ଓ ଅନେକେ ନିଜ ଗ୍ରାମକୁ ଫେରିଆସିଲେ ।

କେଳୁଚରଣଙ୍କ ଭବିଷ୍ୟତ ସ୍ଥିର କରିବା ପାଇଁ ଚିନ୍ତାମଣିଙ୍କୁ ବେଶୀ ସମୟ ଲାଗିନଥିଲା । ପୂର୍ବରୁ ସେ ତାଙ୍କର ଦୁଇପୁଅ ଗଣେଶ ଓ ଏକାଦଶୀଙ୍କୁ ପୁରୀର ମୋହନସୁନ୍ଦର ଦେବ ଗୋସ୍ୱାମୀଙ୍କ ରାସଲୀଳା ଦଳକୁ ପଠାଇ ଦେଇଥିଲେ । ଅଳ୍ପ କେତେବର୍ଷ ପରେ ସେମାନେ ଅଭିନୟ ଓ ଢୋଲ ବାଦନ ଶିକ୍ଷାକରି ବିଭିନ୍ନ ଯାତ୍ରାଦଳରେ ରହି କିଛି କିଛି ଉପାର୍ଜନ କରୁଥିଲେ । ଚିନ୍ତାମଣିଙ୍କର ରାସଲୀଳା ସଂପର୍କରେ ଉଚ୍ଚ ଧାରଣା ଥିଲା । ଏହା ଦେଖିବା ସମୟରେ ସେ ଭାବପ୍ରବଣ ହୋଇ ଅଶ୍ରୁ ସମ୍ବରଣ କରିପାରୁ ନଥିଲେ । ରାସଲୀଳାର କୋମଳ ଭକ୍ତିରସ ତାଙ୍କୁ ବିମୋହିତ କରୁଥିଲା ।

ଗୋଟିପୁଅ ନାଚ ଶିଖିବା ପାଇଁ ଆଖଡ଼ାକୁ ଯିବା ବନ୍ଦ କରିବାର ପନ୍ଦର ଦିନ ପରେ ଚିନ୍ତାମଣି ପୁଅକୁ ମୋହନସୁନ୍ଦର ଦେବ ଗୋସ୍ୱାମୀଙ୍କ ନିକଟରେ ଛାଡ଼ିଦେଲେ । କଥା ଛିଣ୍ଡିଲା, କେଳୁଚରଣ ମୋହନସୁନ୍ଦରଙ୍କ ନିକଟରେ ରହିବେ ଓ ତାଙ୍କର ଖର୍ଚ୍ଚ ମୋହନସୁନ୍ଦର ବହନ କରିବେ । ଏହା ବ୍ୟତୀତ କେଳୁଚରଣଙ୍କ ପାରିଶ୍ରମିକ ବାବଦକୁ କିଛି ଅର୍ଥ ମୋହନସୁନ୍ଦର ଚିନ୍ତାମଣିଙ୍କ ନିକଟକୁ ପଠାଇବେ ।

•••

# ଘରଠାରୁ ଦୂରରେ

ପୁରୀରେ ମୋହନସୁନ୍ଦର ଦେବ ଗୋସ୍ୱାମୀଙ୍କ ଅନୁଷ୍ଠାନରେ ଯୋଗ ଦେଲାବେଳକୁ କେଳୁଚରଣଙ୍କୁ ମାତ୍ର ନଅ ବର୍ଷ ବୟସ । ଲମ୍ବା ବାଳ, ବୁଦ୍ଧିଦୀପ୍ତ ଚକ୍ଷୁ ଏବଂ ନୂଆ କିଛି ଶିଖିବାପାଇଁ ପ୍ରଚଣ୍ଡ ଆଗ୍ରହ । ଗୋସ୍ୱାମୀଙ୍କ ମରିଚିକୋଟ ଗଳିରେ ତାଙ୍କର ଧର୍ମପତ୍ନୀ, ପୁତ୍ର ଗୌରସୁନ୍ଦର ଦେବ ଏବଂ ଆଠରୁ ଅଠର ବର୍ଷ ବୟସର ପ୍ରାୟ ତିରିଶି ଜଣ ପିଲା ରହୁଥାନ୍ତି । ସେମାନଙ୍କ ଦୈନିକ କାର୍ଯ୍ୟକ୍ରମ ଥାଏ ବେଶ୍ ନିୟମିତ ଓ ଶୃଙ୍ଖଳିତ ।

ଗୁରୁ ମୋହନସୁନ୍ଦର ଦେବଙ୍କ ଜନ୍ମ ୧୮୯୨ରେ । ସେତେବେଳକୁ ତାଙ୍କର ବୟସ ଚାଳିଶି ଉପରେ । ସେ ଥିଲେ ନିତ୍ୟାନନ୍ଦ ମହାପ୍ରଭୁଙ୍କ ବଂଶଧର- ଦ୍ୱାଦଶ ପିଢ଼ିର । ସେମାନଙ୍କ ମୂଳ ବାସସ୍ଥାନ ଥିଲା ପଶ୍ଚିମବଙ୍ଗର ଖରଡ଼ା ଗ୍ରାମ । ବୋଧହୁଏ ସେମାନେ ଷୋଡ଼ଶ ଶତାବ୍ଦୀରୁ ଚୈତନ୍ୟଙ୍କ ସମୟରୁ ପୁରୀରେ ସ୍ଥାୟୀ ଭାବରେ ରହିଆସୁଥିଲେ । ନିତ୍ୟାନନ୍ଦ ମହାପ୍ରଭୁ ଥିଲେ ପୁରୀ ମହାରାଜାଙ୍କ କର୍ଣ୍ଣଗୁରୁ । ମହାରାଜା ପ୍ରତାପରୁଦ୍ରଙ୍କ ସମୟରୁ ଗୋସ୍ୱାମୀ ପରିବାରକୁ ଗୁଣ୍ଡିଚା ମାର୍ଜନା ସେବା ପ୍ରଦାନ କରାଯାଇଥିଲା । ଏହି ସେବା ଏଯାଏଁ ଚଳିଆସୁଛି । ବୋଧହୁଏ, ରଘୁରାଜପୁରରେ ଅବସ୍ଥିତ ଗୌରାଙ୍ଗ ମନ୍ଦିରର ଜମି ଚୈତନ୍ୟ ମହାପ୍ରଭୁଙ୍କ ପୂଜା ଆରାଧନା ପାଇଁ ମହାରାଜା ପ୍ରତାପରୁଦ୍ରଦେବ ଗୋସ୍ୱାମୀ ପରିବାରକୁ ପ୍ରଦାନ କରିଥିଲେ ।

ମାତ୍ର ଦୁଇବର୍ଷ ହୋଇଥିବା ସମୟରେ ମୋହନସୁନ୍ଦର ଦେବ ତାଙ୍କ ମାଆଙ୍କୁ ଏବଂ ଆଠବର୍ଷ ହୋଇଥିବା ସମୟରେ ପିତା ହରିଦେବ ଗୋସ୍ୱାମୀଙ୍କୁ ହରାଇଥିଲେ । ତାଙ୍କରି ନାତି ବଟରାଜ ଦେବ ସାଇତି ରଖିଥିବା ମୋହନ ସୁନ୍ଦରଙ୍କ ଡାଏରୀରୁ ଜଣାଯାଏ, ତାଙ୍କୁ ଏଗାର ବର୍ଷ ହେବାଯାଏଁ ତାଙ୍କର ବଡ଼ଭାଇ ଓ ଭଉଣୀ ତାଙ୍କର ଦାୟିତ୍ୱ ବହନ କରିଥିଲେ । ଏହାପରେ ତାଙ୍କୁ ନିଜର ଭରଣପୋଷଣ ଦାୟିତ୍ୱ ନେବାକୁ ହେଲା । ସେ ନିଜ ଘର ଛାଡ଼ି ପ୍ରାୟ ଗୋଟିଏ ବର୍ଷ ପୁରୀର ପଥର ଆଖଡ଼ାରେ ରହିଲେ । ସେଠାରେ ସେ ଖୋଳ ବଜାଇବା ଶିଖିଲେ । ତାଙ୍କୁ ବାରବର୍ଷ ହୋଇଥିବା ସମୟରେ ସେ ବୃନ୍ଦାବନ ଗଲେ ଏବଂ ବୃନ୍ଦାବନେଶ୍ୱରଙ୍କ ଆଶୀର୍ବାଦ ଲାଭ କଲେ ।

ପାଞ୍ଚବର୍ଷ ପରେ ସେ ପୁରୀ ଫେରିଲେ । ତାଙ୍କୁ ସତର ବର୍ଷ ହୋଇଥିବା ସମୟରେ କେତେକ ସେବାୟତଙ୍କ ସହିତ ଗୋଟିଏ ଦଳ ଗଢ଼ି ଓଡ଼ିଶା ସାରା ରାଧା-କୃଷ୍ଣଙ୍କ କାହାଣୀ ଉପରେ ଆଧାରିତ ରାସ ସଂକୀର୍ତ୍ତନ ଏବଂ ପଥପ୍ରାନ୍ତ ନାଟକ ପରିବେଷଣ କଲେ । ପ୍ରାୟ ତିନିବର୍ଷ ଏହିପରି କରିବା ପରେ ସେ ନବଦ୍ୱୀପ ଯାଇ ବିଶ୍ୱରୂପ ଗୋସ୍ୱାମୀଙ୍କୁ ସାକ୍ଷାତ କଲେ । ରାସଲୀଳା ଏବଂ ହରିନାମ ସଂକୀର୍ତ୍ତନ ପାଇଁ ବିଶ୍ୱରୂପ ସମଗ୍ର ପଶ୍ଚିମବଙ୍ଗରେ ସୁପରିଚିତ ଥିଲେ । ମୋହନସୁନ୍ଦର ବିଶ୍ୱରୂପଙ୍କଠାରୁ ଧ୍ରୁପଦ ପଖଉଜ ବାଦନ, ହିନ୍ଦୁସ୍ତାନୀ ସଂଗୀତ, ଅଭିନୟ, ମଞ୍ଚ ପରିଚାଳନା ପ୍ରଭୃତି ଶିଖିଲେ । ବିଶ୍ୱରୂପଙ୍କ ଯାତ୍ରାଦଳରେ ଯୋଗଦେଇ ଅଭିନେତା ଓ ସଂଗୀତଜ୍ଞ ଭାବରେ ମୋହନସୁନ୍ଦର ଯଥେଷ୍ଟ ଖ୍ୟାତି ଲାଭ କଲେ । ୧୯୧୮ରେ ପୁରୀ ପ୍ରତ୍ୟାବର୍ତ୍ତନ କରି ସେ ନିଜେ 'ରାଧା କୃଷ୍ଣବିହାରୀ' ନାମରେ ଏକ ରାସଦଳ ପ୍ରତିଷ୍ଠା କଲେ । ପ୍ରାୟ ଦଶବର୍ଷ ପରେ ସେ ଏହାର ନୂତନ ନାମ ଦେଲେ 'ରାଧା କୁଞ୍ଜବିହାରୀ ରାସଦଳ' । ଅଳ୍ପ କେତେବର୍ଷ ମଧ୍ୟରେ ମୋହନସୁନ୍ଦର ଓଡ଼ିଶାରେ ଏକ କିମ୍ବଦନ୍ତୀ ପୁରୁଷ ଭାବରେ ପରିଚିତ ହୋଇଗଲେ ।

କେଳୁଚରଣ ଯେଉଁ ଘରେ ଆସି ରହିଲେ, ତାହା ପୁରୀ ଏମାର ମଠର ମହନ୍ତ ମହାରାଜଙ୍କ ସାହାଯ୍ୟରେ ୧୯୨୦-୨୫ ମଧ୍ୟରେ ମୋହନସୁନ୍ଦର ନିର୍ମାଣ କରିଥିଲେ । ଏ ଘରେ ୧୨ଫୁଟ ଚଉଡ଼ା ଓ ୫୦ଫୁଟ ଲମ୍ବାର ପ୍ରଶସ୍ତ କୋଠରୀଟିଏ ଥିଲା । ଚାଳ ଘରଟିରେ ଗୋବର ଲିପା ମାଟି ଚଟାଣ ଥିଲା । ଅଗଣା ମଝିରେ ଥିଲା ବିରାଟ ଚମ୍ପା



ମୋହନ ସୁନ୍ଦର ଦେବ ଗୋସ୍ୱାମୀଙ୍କ ଗୃହରେ କୁଞ୍ଜବିହାରୀ ଓ ରାଧାରାଣୀଙ୍କ ବିଗ୍ରହ

ଗଛଟିଏ । ଘରର ଗୋଟିଏ ପାର୍ଶ୍ୱରେ ଗୃହଦେବତାଙ୍କ ଆସ୍ଥାନ ଥିଲା । ସାମ୍ନା ଚାଳଘର ପଛକୁ ତିନି ମହଲା କୋଠାଘରଟିଏ ଥିଲା । ତଳମହଲାରେ ଥିଲା ଶୋଇବା ଘର ଓ ଉପର ମହଲା ଗୁରୁଙ୍କର ଧ୍ୟାନ ଓ ଜପ ପାଇଁ ବ୍ୟବହୃତ ହେଉଥିଲା । ବୃକ୍ଷଲତାପୂର୍ଣ୍ଣ ବାଡ଼ି ଅଗଣା ରୋଷେଇ ଓ ଧୁଆଧୋଇ ପାଇଁ ବ୍ୟବହାର କରାଯାଉଥିଲା ।

ଯେଉଁ ପିଲାମାନଙ୍କଠାରେ ମୋହନସୁନ୍ଦର ଗୀତ ଗାଇବା ବା ଅଭିନୟ କରିବାର ପ୍ରତିଭା ଲକ୍ଷ୍ୟ କରୁଥିଲେ, ସେମାନଙ୍କୁ ସେ ଶିଷ୍ୟ ରୂପେ ଗ୍ରହଣ କରୁଥିଲେ । କେବେ କେବେ ଏହି ପିଲାମାନେ ଗୋଟିଏ ଗାଆଁରୁ ଆସୁଥିଲେ । ଆଗରୁ ହୁଏତ ସେହି ଗାଆଁରୁ ଅନ୍ୟ ପିଲାମାନେ ବି ଆସିଥିଲେ । ରାସଲୀଳା ଦଳରେ ଗାଆଁ ଗାଆଁ ବୁଲିବା ସମୟରେ ମୋହନସୁନ୍ଦର ଏହି ପିଲାମାନଙ୍କୁ ବାଛୁଥିଲେ । ପିଲାମାନେ ଏକାଠି ରହୁଥିଲେ; ଅଧିକାଂଶ ଚାଳଘରେ ଶୋଉଥିଲେ । ମୁଖ୍ୟ ଭୂମିକାରେ ଅଭିନୟ କରୁଥିବା କୌଣସି କୌଣସି ପିଲା ଗୁରୁଙ୍କ ଶୋଇବା ଘର ପ୍ରଥମ ମହଲାରେ ମଧ୍ୟ ଶୋଉଥିଲେ । ପ୍ରତିଦିନ ଖୁବ୍ ସକାଳୁ ସକାଳୁ ପିଲାମାନେ ସା..ରେ..ଗା.. ମା..ପା..ଧା..ନି..ସା.., ଗୀତଗୋବିନ୍ଦ ଓ ବୈଷ୍ଣବ ପଦାବଳୀ ଅଭ୍ୟାସ କରୁଥିଲେ । ମଞ୍ଚ ଉପରେ ବିଭିନ୍ନ ଭୂମିକାରେ ଅଭିନୟ କରୁଥିବାରୁ ଏପରି ସଂଗୀତ ଅଭ୍ୟାସ ନିହାତି ଆବଶ୍ୟକ ଥିଲା । ସେମାନେ ମୁକ୍ତ ରଙ୍ଗମଞ୍ଚରେ ଅଭିନୟ କରୁଥିଲେ । ସେତେବେଳେ କୌଣସି ଡାକବାଜି ଯନ୍ତ୍ର ବ୍ୟବହୃତ ହେଉନଥିଲା । ସେଥିପାଇଁ ଠିକ୍ ଭାବରେ ଉଚ୍ଚ ସ୍ୱରରେ ଗୀତ ଗାଇବା ଉପରେ ଗୁରୁତ୍ୱ ଦିଆଯାଉଥିଲା । ଗୁରୁ ନିଜେ ପିଲାମାନଙ୍କ ସଂଗୀତ ଶିକ୍ଷାର ତତ୍ତ୍ୱାବଧାନ କରୁଥିଲେ । ପିଲାମାନେ ଗୀତସବୁ ମନେ ରଖୁଥିଲେ । ଯେଉଁମାନେ ଲେଖାପଢ଼ା ଜାଣିଥିଲେ, ସେମାନେ ଗୀତସବୁ ଲେଖି ରଖୁଥିଲେ ।

ରାସଲୀଳା ଅଭିନୀତ ହେବା ପୂର୍ବରୁ ମୋହନସୁନ୍ଦର ବୈଷ୍ଣବ ଧର୍ମର ତଥ୍ୟ ସଂପର୍କରେ ଭାଷଣଟିଏ ଦେଉଥିଲେ । ଭାଷଣ ମଧ୍ୟରେ ଗୀତ ମଧ୍ୟ ଗାଉଥିଲେ । ଦୁର୍ବଳ ସ୍ୱାସ୍ଥ୍ୟ ହେଲେହେଁ ତାଙ୍କର କଣ୍ଠଟି ଥିଲା ଚମତ୍କାର । ଚାରି ହଜାରରୁ ପାଞ୍ଚ ହଜାର ଶ୍ରୋତାଙ୍କୁ ସେ ମନ୍ତ୍ରମୁଗ୍ଧ କରି ରଖିପାରୁଥିଲେ । ଏକାଧାରରେ ସେ ଥିଲେ ବାଗ୍ମୀ ଓ ଗାୟକ । ସାଧାରଣ ଲୋକେ ବୁଝିପାରିବା ଭଳି ସରଳ ଭାଷାରେ ଭାଷଣ ଦେଉଥିଲେ । ଆତ୍ମା-ପରମାତ୍ମା, ମନ ଓ ଶରୀର, ସୃଷ୍ଟିର ପଞ୍ଚ ଉପାଦାନ, ମାୟା, ବ୍ରହ୍ମ ଭଳି ଜଟିଳ ତଥ୍ୟମାନ ସାଧାରଣ ମଣିଷର ଅନୁଭୂତି ସହିତ ତୁଳନା କରି ବୁଝାଇ ପାରୁଥିଲେ । ଦର୍ଶନର ଜଟିଳ ତଥ୍ୟମାନ ଜୀବନର ଦୈନନ୍ଦିନ ଅନୁଭୂତି ମାଧ୍ୟମରେ ଉପଲବ୍ଧି କରିବା ମଧ୍ୟ ଥିଲା କେଳୁଚରଣଙ୍କ ବୈଶିଷ୍ଟ୍ୟ । ମୋହନସୁନ୍ଦରଙ୍କ ସହିତ କଟାଇଥିବା ଦଶବର୍ଷ କେଳୁଚରଣଙ୍କ ଜୀବନରେ ଗଭୀର ପ୍ରଭାବ ପକାଇଥିଲା ।


ମୋହନ ସୁନ୍ଦର ଦେବ ଗୋସ୍ୱାମୀ

୧୯୩୩ରେ ସୁଗାୟକ ମୋହନସୁନ୍ଦର ଦେବଙ୍କର ସ୍ୱରଚିତ ସାତଟି ସଂଗୀତ କଲିକତାର ଏଚ୍.ଏମ୍.ଭି. ଷ୍ଟୁଡିଓ ରେକର୍ଡ଼ କରିଥିଲେ । ତାଙ୍କର ରାସଲୀଳା ଭଳି ଏହି ଗୀତଗୁଡ଼ିକ ଥିଲା କୃଷ୍ଣଙ୍କର ବିଭିନ୍ନ ଲୀଳା ଓ ମହିମା ଉପରେ ଆଧାରିତ । 'ଆସ ଭାଇ ଲୁଚକାଳି ଖେଳିବା', 'ଆହା ମୋ ନନ୍ଦ କୋଳେ ଗୋବିନ୍ଦ' ଭଳି ଭକ୍ତି ସଂଗୀତଗୁଡ଼ିକ ଓଡ଼ିଶାରେ ଯଥେଷ୍ଟ ଜନପ୍ରିୟ ।

ସକାଳେ ପ୍ରସାଦ ଗ୍ରହଣ କରିବା ପରେ ଦିନ ଏଗାରଟା ଯାଏଁ ମୋହନସୁନ୍ଦରଙ୍କ ଶିଷ୍ୟମାନେ ଅଭିନୟ ଓ ସଂଗୀତରେ ତାଲିମ ନେଉଥିଲେ । ଗୁରୁଙ୍କ ନିର୍ଦ୍ଦେଶମତେ ପ୍ରତ୍ୟେକ ଛାତ୍ର ଅଭିନୟ ଓ ସଂଗୀତ ଅଭ୍ୟାସ କରୁଥିଲେ । ପୂଜା ଭୋଗ ସରିବା ଯାଏଁ ଛାତ୍ରମାନେ ଗୁରୁଙ୍କ ଅଗଣାରେ କ୍ଷୁଦ୍ର ମନ୍ଦିରଟି ସମ୍ମୁଖରେ ହରିନାମ କୀର୍ତ୍ତନ କରୁଥିଲେ । ଅପରାହ୍ନରେ ମଧ୍ୟ ସନ୍ଧ୍ୟା ଆରତୀ ଯାଏଁ ଗୁରୁଙ୍କ ଚାଳଘରେ ଅଭିନୟ ଓ ସଂଗୀତ ଶିକ୍ଷା ହେଉଥିଲା । କୀର୍ତ୍ତନ ସମୟରେ ସେମାନେ ଖୋଳ ଓ ଘଣ୍ଟା ସହିତ ଗୀତ ଗାଉଥିଲେ ।

ଗୋସ୍ୱାମୀଙ୍କ ପରିବାରରେ କୁଞ୍ଜବିହାରୀ ଓ ରାଧାରାଣୀଙ୍କ ଯୁଗଳ ମୂର୍ତ୍ତି ପୂଜିତ ହେଉଥିଲେ । ରଥଯାତ୍ରା ସମୟରେ ନାଗାଲାଣ୍ଡର କେତେଜଣ ଭକ୍ତ କୁଞ୍ଜବିହାରୀ ମୂର୍ତ୍ତି ସାଥିରେ ଆଣିଥିଲେ । ସେମାନେ ରାତ୍ରିଯାପନ କରିଥିଲେ ହରିଦେବ ଗୋସ୍ୱାମୀଙ୍କ ଗୃହରେ । ସେଦିନ ରାତ୍ରିରେ ଭଗବାନ କୃଷ୍ଣ ହରିଦେବଙ୍କୁ ସ୍ୱପ୍ନରେ ଦେଖାଦେଲେ ଏବଂ ତାଙ୍କରି ଗୃହରେ ପୂଜିତ ହେବାକୁ ଚାହୁଁଛନ୍ତି ବୋଲି କହିଲେ । ମୋହନସୁନ୍ଦରଙ୍କ ପିତା ହରିଦେବ ନାଗାମାନଙ୍କଠାରୁ ମୂର୍ତ୍ତିଟି ଗ୍ରହଣ କଲେ ଏବଂ ନିଜ ଅଗଣାରେ କ୍ଷୁଦ୍ର ମନ୍ଦିରଟିଏ ନିର୍ମାଣ କଲେ । କୁଞ୍ଜବିହାରୀ ଏଯାଏଁ ସେହି ମନ୍ଦିରରେ ପୂଜିତ ହେଉଛନ୍ତି । କୁଞ୍ଜବିହାରୀଙ୍କ ମୂର୍ତ୍ତିଟି ପ୍ରସ୍ତରରେ ଏବଂ ରାଧାରାଣୀଙ୍କ ମୂର୍ତ୍ତିଟି ଅଷ୍ଟଧାତୁରେ ନିର୍ମିତ । ରାଧାରାଣୀଙ୍କ ମୂର୍ତ୍ତିଟି ପୁରୀର ରାଜା ଦାନ କରିଥିଲେ । ଭଗବାନ କୃଷ୍ଣ (କୁଞ୍ଜବିହାରୀ)ଙ୍କ ସହିତ ତାଙ୍କର ବିବାହ ପରେ ଉଭୟ ମୂର୍ତ୍ତି ଏକତ୍ର ପୂଜା ପାଇଆସୁଛନ୍ତି ।

ମୋହନସୁନ୍ଦରଙ୍କ ଗୃହର ବାତାବରଣ ରାଧାକୃଷ୍ଣଙ୍କ ଭକ୍ତିଭାବରେ ଆଚ୍ଛନ୍ନ ରହୁଥିଲା । କାହାରି କଥା, କାର୍ଯ୍ୟ ବା ଚିନ୍ତାରେ ଏହି ଭକ୍ତିଭାବ ଭିନ୍ନ ଅନ୍ୟ କିଛି ନଥିଲା । ଶିକ୍ଷାଲାଭ, ଭକ୍ତିଭାବ ଓ ଶୃଙ୍ଖଳା ମଧ୍ୟରେ ହିଁ ଛାତ୍ରମାନଙ୍କର ସମୟ ଅତିବାହିତ ହେଉଥିଲା ।

ମନୁଷ୍ୟର ସଂସାର ଓ ଈଶ୍ୱରଙ୍କ ଅସ୍ତିତ୍ୱ ମଧ୍ୟରେ ଯେପରି କୌଣସି ପାର୍ଥକ୍ୟ ନଥିଲା, ଛାତ୍ରମାନେ ସେହିପରି ଅନୁଭବ କରୁଥିଲେ । ଛାତ୍ର ଭାବରେ ଯୋଗଦେବା ପରେ କେଳୁଚରଣଙ୍କୁ ପ୍ରଥମେ ତାଙ୍କର ଲମ୍ବାବାଳ କାଟିବାକୁ ହେଲା । ଗୋଟିପୁଅ ଅଭିନୟ ପାଇଁ ଆଗରୁ ପିନ୍ଧିଥିବା ବାହୁ, ନାକ ଓ କାନର ଅଳଙ୍କାରସବୁ କାଢ଼ି ଦେଇ କେବଳ ତୁଳସୀ ମାଳଟିଏ ପିନ୍ଧିଲେ । ଏପରି ମାଳମାନ ପ୍ରଥମେ ଠାକୁରମାନଙ୍କୁ ଅର୍ପିତ ହେବା ପରେ ଗୁରୁଙ୍କ ଦ୍ୱାରା ଛାତ୍ରମାନଙ୍କୁ ପ୍ରଦାନ କରାଯାଉଥିଲା । କେଳୁଚରଣ ପ୍ରଥମେ ବାଲ୍ୟଲୀଳା ବା ରାସଲୀଳାରେ କୃଷ୍ଣ ଭୂମିକାରେ ଅଭିନୟ କରିଥିଲେ । ଅନ୍ୟ ଗାଈଆଳ ପିଲାମାନଙ୍କ ସହିତ ଖେଳିଲାବେଳେ ସେ ଗୀତ ଗାଉଥିଲେ, 'ଆସ ଭାଇ ଲୁଚକାଳି ଖେଳିବା' । ବାଳକୃଷ୍ଣ ମା' ଯଶୋଦାଙ୍କ ନିକଟରେ ଅଳି କରୁଥିଲେ, ମା' କାହିଁକି ତାଙ୍କ ପାଇଁ ଛୋଟ ହଳଦିଆ ପକ୍ଷୀଟିଏ ଧରି ଆଣିନାହାନ୍ତି । ପିଲାମାନଙ୍କୁ ସେମାନଙ୍କ ବୟସ ଓ ଅଭିନୟ ପ୍ରତିଭା ବିଚାରରେ ଭୂମିକାମାନ ଦିଆଯାଉଥିଲା । ବାରବର୍ଷରୁ ସାନ ପିଲାଟିଏ ବାଳକୃଷ୍ଣ ଭୂମିକାରେ ଅଭିନୟ କରୁଥିଲା । ଏହାପରେ କୋଡ଼ିଏ ବର୍ଷ ଯାଏଁ ସେ ଅଭିନୟ କରୁଥିଲା ମଦନମୋହନ ଭୂମିକାରେ । ଦ୍ୱାରକାର ରାଜା କିମ୍ବା କୁରୁକ୍ଷେତ୍ର ଯୁଦ୍ଧରେ କୃଷ୍ଣଙ୍କର ଭୂମିକା ରାସଲୀଳାର ବିଷୟବସ୍ତୁ ନଥିଲା । ନାଟକରେ କୃଷ୍ଣଙ୍କର ଏହି ଚରିତ୍ର ପ୍ରଦର୍ଶିତ ହେଉଥିଲା । ନାଟକରେ ଅଭିନୟ ଓ ସଂଳାପ ଥିଲା ଅଧିକ; ସଂଗୀତ ଥିଲା କମ୍ ।

ରାସଦଳର ସମସ୍ତ ଅଭିନେତା ପୁଅ ଥିଲେ ହେଁ ଦୁଇଟି ଝିଅ ମଧ୍ୟ ସେମାନଙ୍କ ସହିତ ଥିଲେ । ଜଣେ ମାହାରୀଙ୍କ ଭଉଣୀ ରାଧାରାଣୀ ବୃନ୍ଦାଦେବୀ ଚରିତ୍ରରେ ଅଭିନୟ କରୁଥିଲେ, ଆଉ ଗୋଟିଏ ଝିଅ ବିଦ୍ୟୁତ୍‌ଲତା ମହାନ୍ତି ଚନ୍ଦ୍ରାବଳୀ ଭୂମିକାରେ । କିନ୍ତୁ ରାଧା ଭୂମିକାରେ ବାସୁଦେବ ଏବଂ ଲଳିତା ଭୂମିକାରେ ରଘୁନାଥ ନନ୍ଦ ଝିଅ ଭାବରେ ଚମତ୍କାର ଅଭିନୟ କରୁଥିଲେ । ବଡ଼ଦାଣ୍ଡରେ ବାପାଙ୍କ ସହିତ ମଧୁର କଣ୍ଠରେ ଗୀତ ଗାଇବା ଦେଖି ମୋହନସୁନ୍ଦର ରଘୁନାଥଙ୍କୁ ନିଜ ଦଳକୁ ଆଣିଥିଲେ । ରାଧା ଏବଂ ଲଳିତା ଭୂମିକାର ଅଭିନୟ ଆଦୌ ସହଜ ନଥିଲା । ପ୍ରଥମ ଭୂମିକାଟି ଯେପରି ଭାବୋଦ୍ଦୀପକ ଥିଲା, ଦ୍ୱିତୀୟଟି ସେହିପରି ଥିଲା ହାସ୍ୟରସାତ୍ମକ । ରଘୁନାଥ ଶ୍ରୋତାମାନଙ୍କୁ ଖୁବ୍ ହସାଇ ପାରୁଥିଲେ ଏବଂ ପ୍ରତିଥର ଅଭିନୟ ପରେ ମେଡାଲ୍‌ମାନ ପାଉଥିଲେ ।

କେଳୁଚରଣ ବାଳକୃଷ୍ଣ ଭୂମିକାରେ ପ୍ରାୟ ଚାରିମାସ ଅଭିନୟ କରିଛନ୍ତି, ମୋହନ ସୁନ୍ଦରଙ୍କ ଗୁରୁ ବିଶ୍ୱରୂପ ଗୋସ୍ୱାମୀ ପୁରୀରେ ଆସି ପହଞ୍ଚିଲେ । ସେ ତ ପ୍ରତିବର୍ଷ ପୁରୀ ଆସିଥାନ୍ତି । ଏଥର ସେ ପୁରୀ ଆସିଲା ବେଳକୁ ଗୁଣ୍ଡିଚା ମାର୍ଜନା ସମୟ । ରଥଯାତ୍ରା ସମୟରେ ଗୋସ୍ୱାମୀ ପରିବାର ବହୁବର୍ଷ ଧରି ଗୁଣ୍ଡିଚା ମାର୍ଜନା କରୁଥିଲେ । କେଳୁଚରଣ ବିଶ୍ୱରୂପଙ୍କୁ ଭେଟିଥିବା ମନେ ରଖିଥିଲେ । ବିଶ୍ୱରୂପ ଥିଲେ ସାତଫୁଟ ଉଚ୍ଚର ଦୀର୍ଘକାୟ

ସାଧୁ, ମୁଣ୍ଡରେ ତାଙ୍କର ବାରହାତ ଲମ୍ବ ଜଟା, ଜଟାକୁ ସେ ଦୁଇ ପରସ୍ତ କରି ଦୁଇଟି ସୁନା କଣ୍ଟା ସାହାଯ୍ୟରେ ମୁଣ୍ଡ ଉପରେ ବାନ୍ଧିଥାନ୍ତି । ହାତରେ ଧ୍ରୁପଦ ପଖଉଜ ଧରି ଉଦାତ୍ତ ସ୍ୱରରେ ସେ 'ଶମ୍ଭୁ ଶିବ ହର ହର ତ୍ରିନୟନ ଜଟାଧାରୀ' ସଂଗୀତ ଗାନ କଲାବେଳେ ଘରର ଝରକାସବୁ ଯେପରି ଦୋହଲି ଯାଉଥିଲା । ଯୋଗଶକ୍ତି ହେତୁ ସେ ଏକ ସଂଗେ ଦଶଜଣଙ୍କ ଆହାର ଗ୍ରହଣ କରିପାରୁଥିଲେ । ସେହିପରି ଦଶଦିନ ଧରି କ୍ରମାଗତ ଉପବାସରେ ମଧ୍ୟ ରହିପାରୁଥିଲେ ।

ଦିନେ ବିଶ୍ୱରୂପ ଗୋସ୍ୱାମୀ ରାସଲୀଳାର ପିଲାମାନଙ୍କୁ ନେଇ ସ୍ନାନ ପାଇଁ ନରେନ୍ଦ୍ର ପୋଖରୀ ଯାଇଥିଲେ । ହଠାତ୍ ସେ ପାଣି ଭିତରେ ବୁଡ଼ିଗଲେ ଓ କିଛି ସମୟ ପରେ ଶବଟିଏ ପରି ପାଣି ଉପରେ ଭାସିବାକୁ ଲାଗିଲେ । ଏହି ଅବସ୍ଥାରେ ସେ ରହିଲେ ସାତଦିନ । ଅଷ୍ଟମ ଦିନ ପିଲାମାନେ ଗାଧୋଉଥିବା ବେଳେ ହଠାତ୍ ସେ କେଳୁଚରଣଙ୍କ ଗୋଡ଼କୁ ଟିକିଏ ତଳକୁ ଟାଣିଦେଲେ । କେଳୁଚରଣ ଡରିଗଲେ ଅବଶ୍ୟ । କିନ୍ତୁ ଗୁରୁ ପୁଣି ବଞ୍ଚି ଉଠିବାରୁ ପିଲାମାନଙ୍କ ଆନନ୍ଦର ସୀମା ରହିଲା ନାହିଁ । ସେ ଶିଶୁ କେଳୁଚରଣଙ୍କୁ ନିଜ ପେଟ ଉପରେ ବସାଉଥିଲେ, କେବେ କେବେ ତାଙ୍କୁ ଉପରକୁ ଫିଙ୍ଗି ପୁଣି ହାତରେ ଧରିପକାଉଥିଲେ । ପିଲାମାନଙ୍କୁ ସେ ଭଲପାଉଥିଲେ ଖୁବ୍ । କିନ୍ତୁ କେଳୁଚରଣଙ୍କ ବାଳକୃଷ୍ଣ ଅଭିନୟ ଦେଖିବା ପରେ ତାଙ୍କ ପ୍ରତି ବିଶ୍ୱରୂପଙ୍କର ଟିକିଏ ସ୍ୱତନ୍ତ୍ର ଦୃଷ୍ଟି ଥିଲା । କୌଣସି କାରଣରୁ କେଳୁଚରଣଙ୍କୁ କୌଣସି ଦଣ୍ଡ ନଦେବା ପାଇଁ ସେ ମୋହନସୁନ୍ଦରଙ୍କୁ କହିଥିଲେ । ଗୁରୁଙ୍କର ଏଭଳି ଆଦେଶ ପରେ ମୋହନସୁନ୍ଦରଙ୍କର ମଧ୍ୟ କେଳୁଚରଣଙ୍କ ପ୍ରତି ସ୍ୱତନ୍ତ୍ର ଦୃଷ୍ଟି ରହିଲା ।

ତିନି ବା ଚାରିବର୍ଷ ରାସଲୀଳା ଦଳରେ ରହିବା ପରେ ଛୁଟି କଟାଇବା ପାଇଁ କେଳୁଚରଣ ଗାଆଁକୁ ଆସିଲେ । ଦିନେ ଅପରାହ୍ନରେ ଚିକ୍କଣ ପଥରଟିରେ ପଟିଟିଏ ଘଷୁଥିବା ବେଳେ ତାଙ୍କ ବାପା ଦେଖିଲେ, କେଳୁଚରଣ ହାତରେ ଛୋଟ ବାକ୍ସଟିଏ ଧରି କେଉଁଆଡ଼େ ଯାଉଛନ୍ତି । ବାପା କେଳୁଚରଣ କେଉଁଆଡ଼େ ଯାଉଛନ୍ତି ପଚାରିଲେ । ସେ ବାକ୍ସରେ ତାସ୍ ଖେଳିବା ପାଇଁ ଚାଳିଶିଟି କାଗଜ ଚିତ୍ର ଥିଲା । କେଳୁ ତାସ୍ ଖେଳିବାକୁ ବାହାରିଛନ୍ତି ଶୁଣି ବାପା ହାତରେ ଧରିଥିବା ଚିକ୍କଣ ପଥର ଖଣ୍ଡିକ କେଳୁଙ୍କ ଉପରକୁ ଫୋପାଡ଼ିବେ ବୋଲି ଧମକାଇଲେ । ଆଗରୁ ତାଙ୍କର ବଡ଼ପୁଅ ଗଣେଶ ତାସ୍ ଖେଳି ବହୁ ଅର୍ଥ ଅପବ୍ୟୟ କରିସାରିଥିଲା । ଆଉ ଗୋଟିଏ ପୁଅ ତାସ୍ ଖେଳରେ ମାତି ସେପରି କରିପାରେ, ଏହା ସେ ଆଶଙ୍କା କରୁଥିଲେ ।

ବାପାଙ୍କର ଏଭଳି କ୍ରୋଧ ଦେଖି କେଳୁଚରଣ ବାକ୍ସ ଭିତରେ ଥିବା କାଗଜଗୁଡ଼ିକ ଫିଙ୍ଗିଦେଲେ, ଗୁରୁଜନମାନଙ୍କୁ ସମ୍ମାନ ଜଣାଇ ଏରୁଣ୍ଡି ବନ୍ଧରେ ମୁଣ୍ଡିଆଟିଏ ମାରିଲେ ।

ସେତେବେଳେ ତାଙ୍କର ମା' ଭୂଆସୁଣୀ ମନ୍ଦିରରେ ପ୍ରାର୍ଥନା କରୁଥିଲେ । କେଳୁଚରଣ ମା'ଙ୍କଠାରୁ ବିଦାୟ ନେଇ ସିଧା ପୁରୀର ଗୁରୁଙ୍କ ଘରକୁ ଯାତ୍ରା କଲେ । ମାତ୍ର ଗୋଟିଏ ଘଣ୍ଟାରେ ସେ ବାର କିଲୋମିଟର ରାସ୍ତା ଅତିକ୍ରମ କଲେ । ସେତେବେଳେ ଖରାଛୁଟି ହୋଇଥିବାରୁ ରାସଲୀଳାର ଅନ୍ୟ ସବୁ ପିଲା ନିଜ ନିଜ ଗାଆଁକୁ ଯାଇଥାଆନ୍ତି । କେଳୁଚରଣଙ୍କ କଥା ବୁଝିବା ପାଇଁ ମୋହନସୁନ୍ଦରଙ୍କୁ କିଛି ସମୟ ଲାଗିଲା । କେଳୁଚରଣଙ୍କ ବାପାଙ୍କ ଆଚରଣରେ ମୋହନସୁନ୍ଦର କ୍ଷୁବ୍ଧ ହେଲେ । କେଳୁଚରଣଙ୍କ ପ୍ରତି କେହି ନିର୍ଦ୍ଦୟ ହେବା ମୋହନସୁନ୍ଦର ସହି ପାରୁନଥିଲେ । ସେହିଦିନ ସନ୍ଧ୍ୟାରେ ଚିନ୍ତାମଣି ପହଞ୍ଚିଲେ ମୋହନସୁନ୍ଦରଙ୍କ ଘରେ– କେଳୁଚରଣଙ୍କ ସଂପର୍କରେ ବୁଝିବା ପାଇଁ । ମୋହନସୁନ୍ଦର ଚିନ୍ତାମଣିଙ୍କୁ ସିଧା ସିଧା କହିଲେ, କେଳୁଚରଣ ତାଙ୍କର (ମୋହନସୁନ୍ଦରଙ୍କର) ପୁଅ ଏବଂ ଚିନ୍ତାମଣିଙ୍କର କେଳୁଚରଣଙ୍କ ଉପରେ କୌଣସି ଅଧିକାର ନାହିଁ । ଚିନ୍ତାମଣି ଉତ୍ତର ଦେଲେ, ପୁଅ ପୁରୀରେ ପହଞ୍ଚିଛି କି ନାହିଁ, ତାହାହିଁ ଦେଖିବାକୁ ସେ ଆସିଥିଲେ । ଏହାପରେ ସେ ଚୁପ୍‌ଚାପ୍ ଗାଆଁକୁ ଫେରିଗଲେ । ବାପା ଜୀବିତ ଥିବାଯାଏଁ କେଳୁଚରଣ ଆଉ ରଘୁରାଜପୁର ଯାଇନଥିଲେ । ବାପା କେବେ କେବେ ମୋହନସୁନ୍ଦରଙ୍କ ଘରକୁ ଆସୁଥିଲେ ପୁଅର ପାରିଶ୍ରମିକ ନେବାପାଇଁ କିମ୍ବା ରାସଲୀଳାରେ ପୁଅର ଅଭିନୟ ଦେଖିବା ପାଇଁ ସ୍ତ୍ରୀଙ୍କ ସହିତ ପହଞ୍ଚି ଯାଉଥିଲେ ମୋହନସୁନ୍ଦରଙ୍କ ଆଶ୍ରମରେ ।

ଗୁରୁ ମୋହନସୁନ୍ଦରଙ୍କ ପାଇଁ କେଳୁଚରଣ ଥିଲେ ପୁଅଠାରୁ ଅଧିକ । କେବଳ ତାଙ୍କୁ ଓ ଆଉ ଗୋଟିଏ ଶିଷ୍ୟଙ୍କୁ ଗୁରୁଙ୍କର ସେବା ପାଇଁ ଅଧିକାର ମିଳିଥିଲା । ଗୁରୁଙ୍କ ଦେହରେ ତେଲ ମାଲିସ୍ କରିବା, ତାଙ୍କର ଘଷାମୋଡ଼ା କରିବା ଏବଂ ତାଙ୍କ ସ୍ନାନ ପାଇଁ ଜଳ ଆଣିଦେବା ଥିଲା ଏହି ସେବା । ପରେ ଯେତେବେଳେ ଗୁରୁ ଅସୁସ୍ଥ ହୋଇପଡ଼ିଲେ ଓ ତାଙ୍କ ଦେହସାରା ଘା' ହୋଇଗଲା, କେବଳ କେଳୁଚରଣ ହିଁ ତାଙ୍କର ସମସ୍ତ ଯତ୍ନ ନେଉଥିଲେ । ତାଙ୍କ ଦେହ ପରିଷ୍କାର କରି ସେଥିରେ ତୈଳ ଲେପନ କରୁଥିଲେ ଏବଂ ସମସ୍ତ ଦୈନନ୍ଦିନ କାର୍ଯ୍ୟରେ ତାଙ୍କର ସହାୟତା କରୁଥିଲେ । ମୋହନସୁନ୍ଦର ବହୁ ରୋଗ ଯନ୍ତ୍ରଣା ଭୋଗିଲେ । ସେ ବିଶ୍ୱାସ କରୁଥିଲେ ଯେ ରାଧାକୃଷ୍ଣଙ୍କ ନିଗୂଢ଼ କେଳିରହସ୍ୟ ସର୍ବଜନ ସମ୍ମୁଖରେ ପ୍ରକାଶ କରାଇଥିବାରୁ ତାଙ୍କୁ ଏଭଳି ଦଣ୍ଡ ଭୋଗିବାକୁ ହେଲା ।

ଗୁରୁଙ୍କର ବ୍ୟକ୍ତିଗତ ସେବା କରିବା ବ୍ୟତୀତ କେଳୁଚରଣ ତାଙ୍କର ଗୃହକାର୍ଯ୍ୟରେ ମଧ୍ୟ ବ୍ୟସ୍ତ ରହୁଥିଲେ । ପ୍ରଥମେ ଖୁବ୍ ସକାଳୁ ଉଠିପଡ଼ି ସେ ପ୍ରାର୍ଥନା ପାଇଁ ଅନ୍ୟ ପିଲାମାନଙ୍କୁ ଉଠାଉଥିଲେ । ଅଭିନୟ ଚାଲିଥିଲା ବେଳେ ସେ ସମୟ ବାହାର କରି ଘର ଓଳାଇବା, ବାସନ ମାଜିବା ଓ ଅନ୍ୟାନ୍ୟ କାର୍ଯ୍ୟରେ ଗୁରୁଙ୍କ ପତ୍ନୀଙ୍କୁ ସାହାଯ୍ୟ କରୁଥିଲେ । କେବଳ ବ୍ରାହ୍ମଣ ରୋଷେୟାଟିଏ ବାଦ୍ ଦେଲେ ଗୁରୁଙ୍କ ଘରେ ଘରକାମ ପାଇଁ ଆଉ କେହି ନଥିଲେ ।

ରଘୁରାଜପୁରରେ ବାପାଙ୍କ କ୍ରୋଧର ସମ୍ମୁଖୀନ ହେବା ଆଗରୁ କେଳୁଚରଣ ରାସଲୀଳାରେ ବିଭିନ୍ନ ଭୂମିକାରେ ଅଭିନୟ କରିବା ଶିଖି ସାରିଥିଲେ । ବାଳକୃଷ୍ଣ, ଅଷ୍ଟଗୋପୀ (ରାଧା ଓ କୃଷ୍ଣଙ୍କ ପ୍ରେମଲୀଳାରେ ସହାୟତା କରୁଥିବା ଆଠଜଣ ସଖୀ), ବିଶାଖା ଓ ଲଳିତା (ରାଧାଙ୍କର ଦୁଇଜଣ ଅନ୍ତରଙ୍ଗ ସଖୀ), ଇତ୍ୟାଦିଙ୍କ ଅଭିନୟରେ କେଳୁଚରଣ ପାରଦର୍ଶିତା ଅର୍ଜନ କରିସାରିଥିଲେ । ପାଞ୍ଚ ଛଅ ମାସ ରାଧା ଭୂମିକାରେ ଅଭିନୟ କଲାପରେ ତାଙ୍କୁ ଅଠର ବର୍ଷ ହେବାଯାଏଁ ସେ କୃଷ୍ଣ ଭୂମିକାରେ ଅଭିନୟ କଲେ ।

ବର୍ଷାଦିନେ ଦୁଇ ତିନି ମାସ ପିଲାମାନଙ୍କୁ ଘରେ ରହିବାକୁ ହେଉଥିଲା । ଏହି ସମୟରେ ସେମାନେ ରାସଲୀଳାର ରିହର୍ସାଲ୍ କରୁଥିଲେ ଓ ନିଜ ନିଜ ଭୂମିକାରେ ଅଭିନୟ କରିବା ଶିଖୁଥିଲେ । ଖରାଛୁଟିକୁ ବାଦ୍ ଦେଲେ ଅନ୍ୟ ସମୟରେ ସେମାନେ ସାରା ଓଡ଼ିଶା ଓ କେବେ କେବେ ପଡ଼ୋଶୀ ପ୍ରଦେଶରେ ଅଭିନୟ କରୁଥିଲେ । ବସ୍, ଟ୍ରକ୍, ଶଗଡ଼, ସାଇକେଲ ରିକ୍ସା, ରେଳଗାଡ଼ି – ଏପରିକି ସଂଗୀତ ଯନ୍ତ୍ରମାନ ବୋହି ବୋହି ପାଦରେ ଚାଲି ଚାଲି ସେମାନଙ୍କୁ ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଯିବାକୁ ପଡୁଥିଲା । ସାଧାରଣତଃ ଏହି ଦଳରେ ପଚାଶରୁ ଷାଠିଏ ଜଣ ରହୁଥିଲେ । ସ୍ଥାନୀୟ ଧର୍ମଶାଳାରେ ରହି ପ୍ରଥମେ ସେମାନେ ମାଟିରେ ବେଦୀଟିଏ ତିଆରି କରୁଥିଲେ । ବେଦୀଟି ପ୍ରାୟ ଅଢ଼େଇ ଫୁଟ ଉଚ୍ଚ, କୋଡ଼ିଏ ଫୁଟ ଲମ୍ବ, ଅଠର ଫୁଟ ଚଉଡ଼ା ହେଉଥିଲା । ଦର୍ଶକମାନେ ବେଦୀ ଚାରିପାଖେ ବସୁଥିଲେ । ବେଦୀ ଉପରେ ବାଉଁଶ ଓ ବରଡ଼ାରେ ଛାମୁଣ୍ଡିଆଟିଏ ତିଆରି ହେଉଥିଲା ।



ଭୁଆସୁଣୀ ମନ୍ଦିର

ମୋହନସୁନ୍ଦରଙ୍କ ରାସଲୀଳା ସମୟରେ ତିନି ହଜାରରୁ ଚାରି ହଜାର ଦର୍ଶକ ଉପସ୍ଥିତ ରହୁଥିଲେ । ରାସଲୀଳା ହେଉଥିବା ଗ୍ରାମର ଅଧିବାସୀଙ୍କ ବ୍ୟତୀତ ଦୂର ଗ୍ରାମମାନଙ୍କରୁ ମଧ୍ୟ ବହୁ ଲୋକ ଆସୁଥିଲେ । ମୋହନସୁନ୍ଦର ରାସଲୀଳାର ନିର୍ଦ୍ଦେଶନା ଦେଉଥିଲେ ମଧ୍ୟ ସମସ୍ତ ରାସଲୀଳା ତାଙ୍କ ଦ୍ୱାରା ଲିଖିତ ହେଉ ନଥିଲା । ଓଡ଼ିଶାର ବୈଷ୍ଣବ କବିମାନଙ୍କ ରଚିତ ବହୁ ସଂଗୀତ ସେ ରାସଲୀଳାରେ ବ୍ୟବହାର କରୁଥିଲେ । ବିଷୟବସ୍ତୁ ଅନୁଯାୟୀ ସେ ସଂଗୀତ ନିର୍ବାଚନ କରୁଥିଲେ । ଜୟଦେବ, ବନମାଳୀ, ବଳଦେବ ରଥ, ଉପେନ୍ଦ୍ର ଭଞ୍ଜ ଏବଂ ଅନ୍ୟାନ୍ୟ ଓଡ଼ିଆ କବିମାନଙ୍କର ରଚନା ତାଙ୍କ ରାସଲୀଳାରେ ଗାନ

କରାଯାଉଥିଲା । ବିଦଗ୍ଧ ମାଦବ, ବିଦଗ୍ଧ ଚିନ୍ତାମଣି, ମଥୁରାମଙ୍ଗଳ, ଶ୍ରୀରାଧା ପ୍ରେମାମୃତ, ମାନଭଞ୍ଜନ, ସୁଦାମା ଦାରିଦ୍ର୍ୟ ଭଞ୍ଜନ, ଗୋଷ୍ଠ ଚନ୍ଦ୍ରମା, ବିଲ୍ୱମଙ୍ଗଳ ପ୍ରଭୃତି ରାସଲୀଳା ବହୁବାର ଅଭିନୀତ ହେଉଥିଲା । ମୋହନସୁନ୍ଦରଙ୍କ ଦ୍ୱାରା ସଂପୂର୍ଣ୍ଣ ଲିଖିତ ନାଟକଗୁଡ଼ିକ ହେଲା – ଆନନ୍ଦ ବୃନ୍ଦାବନ ଚମ୍ପୂ, ଅଧରାମୃତ, ଶ୍ରୀ ଗୋବିନ୍ଦ ଲୀଳାମୃତ ଏବଂ ଅଭିସାର । ୧୯୨୯–୩୦ରେ ପ୍ରକାଶିତ କେତୋଟି କବିତା ସଂକଳନକୁ ବାଦ୍ ଦେଲେ ତାଙ୍କର ଅଧିକାଂଶ ରଚନା ଏଯାଏଁ ପ୍ରକାଶିତ ହୋଇନାହିଁ ।

ରାସଲୀଳା ଅଭିନୟରେ ବାଦ୍ୟଯନ୍ତ୍ର ଓ ସଂଗୀତ ଗାୟନକୁ ପ୍ରାଧାନ୍ୟ ଦିଆଯାଉଥିଲା । ଅଭିନୟ ମଧ୍ୟରେ କେବେ କେବେ ସଂଳାପ ଆବୃତ୍ତି ମଧ୍ୟ କରାଯାଉଥିଲା । ମୋହନସୁନ୍ଦର ନିଜେ ବାଦ୍ୟଯନ୍ତ୍ରସମୂହ ପରିଚାଳନା କରୁଥିଲେ । ସେ ହାରମୋନିୟମ୍ ବଜାଉଥିଲେ । ଅନ୍ୟମାନେ ଖୋଳ, ମଞ୍ଜିରା ଓ ଝାଞ୍ଜ ବଜାଉଥିଲେ । ପୁରୀରେ ଅଭିନୟ ହେଉଥିବା ସମୟରେ ବଂଶୀବାଦକ ଓ ସୀତାର ବାଦକମାନେ ମଧ୍ୟ ଯୋଗ ଦେଉଥିଲେ । ମଞ୍ଚସଜ୍ଜା ନିହାତି ସାଧାରଣ ଭାବରେ ହେଉଥିଲା । ଦୃଶ୍ୟ ଅପେକ୍ଷା ଭାବର ପ୍ରକାଶ ଥିଲା ଅଧିକ ମହତ୍ତ୍ୱପୂର୍ଣ୍ଣ । ବାଉଁଶରେ ନିର୍ମିତ ଛାମୁଣ୍ଡିଆ ଉପରୁ ତିନୋଟି ପର୍ଦ୍ଦା ଏବଂ ଦୁଇ ପାର୍ଶ୍ୱରେ ଦୁଇଟି ପର୍ଦ୍ଦା ଟଣାଯାଇ ମଞ୍ଚ ପ୍ରସ୍ତୁତ ହେଉଥିଲା । ସମ୍ମୁଖ ପର୍ଦ୍ଦା ଉପରେ ରାଧାକୃଷ୍ଣଙ୍କର ରାସକେଳିର ଚିତ୍ର ରହୁଥିଲା । ରାସଲୀଳା ଅଭିନୟ ପୂର୍ବରୁ ମୋହନସୁନ୍ଦର ମଞ୍ଚ ଉପରେ ଠିଆହୋଇ ବୈଷ୍ଣବ ଦର୍ଶନ ସମ୍ପର୍କରେ ସଂକ୍ଷିପ୍ତ ଭାଷଣଟିଏ ଦେଉଥିଲେ । ଭାଷଣର ଉଦ୍ଦେଶ୍ୟ ଥିଲା, ଦର୍ଶକମାନଙ୍କୁ ଆକର୍ଷଣ କରିବା ଏବଂ ବୈଷ୍ଣବ ଧର୍ମ ସଂପର୍କରେ ଅବହିତ କରିବା । ସାଧାରଣତଃ ସେ ଗୀତଗୋବିନ୍ଦରୁ କେତୋଟି ପଦ ଆବୃତ୍ତି କରି ଭାଷଣ ଆରମ୍ଭ କରୁଥିଲେ । କେଳୁଚରଣ ଶେଷଜୀବନ ଯାଏଁ ତାଙ୍କ ସଂଧ୍ୟା ପ୍ରାର୍ଥନାରେ ସେହି ପଦ ସବୁ ଗାନ କରୁଥିଲେ :–

**ବନ୍ଦେ ଚନ୍ଦ୍ରକ ଚାରୁ ଶିଖଣ୍ଡକ ଗୋବର୍ଦ୍ଧନ ଗିରିଧାରୀ**
**ଘଟଣ କଳେବର ନଟନ ସୁନ୍ଦର ପୂତ ହଂଟକ କର**
**କଙ୍କଣ ସୁରୁଚିର ଠାଣି ଉତାନ ଧର**
**ଗୋପୀ ପଟଚର ମଧୁକୈଟଭ ଦହୁକାରି ।**

ସାଧାରଣତଃ ଏପରି ରାସଲୀଳା ପାଇଁ ମାତ୍ର ଚାରିରୁ ଆଠଅଣାରେ ଟିକେଟ୍ ମିଳୁଥିଲା । ସମ୍ମୁଖ ପର୍ଦ୍ଦା ଉଠିଗଲା ପରେ ସମସ୍ତ ଅଭିନେତା ହାତରେ ତୁଳସୀ ଡାଳ ଓ ରାଧାକୃଷ୍ଣଙ୍କର ପଟଚିତ୍ରଟିଏ ଧରି ଠିଆ ହେବାର ଦେଖାଯାଉଥିଲା । ସେମାନଙ୍କ ପଛ ପର୍ଦ୍ଦାରେ ଥିଲା ଗ୍ରାମପଥର ଦୃଶ୍ୟ । ସେମାନେ ସଂସ୍କୃତରେ ବନ୍ଦନା ଗାନ କରିବାପରେ ମଞ୍ଚ ଉପରେ ତୁଳସୀ ଡାଳ ଓ ପଟଚିତ୍ର ରଖି ବିଦାୟ ନେଉଥିଲେ । ଏହାପରେ ତୃତୀୟ ପର୍ଦ୍ଦାଟିର ପୃଷ୍ଠଭୂମିରେ ରାସଲୀଳା ଅଭିନୟ ଆରମ୍ଭ ହେଉଥିଲା । ଏହି ପର୍ଦ୍ଦା ଉପରେ

ରହୁଥିଲା ବୃନ୍ଦାବନର ମନୋହର ଦୃଶ୍ୟ । ପର୍ଦ୍ଦା ମଝିରେ ଅଙ୍କିତ ହେଉଥିଲା ଗୋଟିଏ କଦମ୍ବ ବୃକ୍ଷ । ପରିବେଶକୁ ଅଧିକ ଜୀବନ୍ତ କରିବା ପାଇଁ ମଞ୍ଚ ଉପରେ କଦମ୍ବ ଡାଳ ଓ ଫୁଲସବୁ ସଜାଇ ରଖାଯାଉଥିଲା । ରଘୁରାଜପୁରର କୁଞ୍ଜ ମହାରଣା ମଞ୍ଚ ପ୍ରସ୍ତୁତ କରିବା ଦାୟିତ୍ୱରେ ରହୁଥିଲେ । ପର୍ଦ୍ଦା ଉପରେ ଚିତ୍ର ଆଙ୍କୁଥିଲେ ପୁରୀର ଶ୍ରୀକୃଷ୍ଣ ମୁଖାର୍ଜୀ ।

ରାସଲୀଳା ଅଭିନୟରେ ଗାନ କରାଯାଉଥିବା ସଂଗୀତ ଅନୁଯାୟୀ ହସ୍ତର ମୁଦ୍ରା, ଚକ୍ଷୁଚାଳନା, ମୁଖର ଭଙ୍ଗୀ ସ୍ଥିର କରାଯାଉଥିଲା । ଭାବ ପ୍ରକାଶ ଥିଲା ମୂଳ ଲକ୍ଷ୍ୟ, ଅଙ୍ଗପ୍ରତ୍ୟଙ୍ଗର ଚାଳନା ନୁହେଁ । ସାଧାରଣ ଜୀବନଯାତ୍ରାର ଶୈଳୀ ଅଭିନୟରେ ଅନୁସୃତ ହେଉଥିଲା । ଆବଶ୍ୟକତା ଅନୁଯାୟୀ ଫୁଲମାଳ, ଚୁଡ଼ି, ରୁମାଲ ପ୍ରଭୃତି ବ୍ୟବହୃତ ହେଉଥିଲା । ପାଦଚାଳନା ଥିଲା ଖୁବ୍ କମ୍ । ଏକରୁ ଛଅ ମଧ୍ୟରେ ପଦକ୍ଷେପ ସୀମିତ ରହୁଥିଲା । ରାସଲୀଳା ଶେଷରେ ରାଧାକୃଷ୍ଣଙ୍କ ମିଳନ ଅବସରରେ ଗୋପୀମାନେ ବୃତ୍ତାକାରରେ ନୃତ୍ୟ କରୁଥିଲେ । ଏହି ସମୟରେ ପାଦଚାଳନା ଥିଲା ଅପେକ୍ଷାକୃତ ଅଧିକ । ବାହୁରେ ବାହୁ ଛନ୍ଦି ସେମାନେ ଭକ୍ତିଭାବ ପ୍ରକାଶ ପାଇଁ ନୃତ୍ୟ କରୁଥିଲେ, ନୃତ୍ୟର ଶୈଳୀ ଉପରେ ସେତେ ଗୁରୁତ୍ୱ ଦେଉନଥିଲେ ।

ଅଭିନୟ ସମୟରେ ଅଭିନେତାମାନେ ମଞ୍ଚ ଉପରେ ବୁଲି ବୁଲି ପରସ୍ପରକୁ ସମ୍ଭାଷଣ କରୁଥିଲେ ଏବଂ ଅଙ୍ଗ ଚାଳନା ମାଧ୍ୟମରେ ଭାବର ନିବିଡ଼ତା ପ୍ରକାଶ କରୁଥିଲେ ।



୧୯୮୮ରେ ରାଷ୍ଟ୍ରପତିଙ୍କ ଠାରୁ କେଳୁଚରଣଙ୍କର 'ପଦ୍ମଭୂଷଣ' ସମ୍ମାନ ଗ୍ରହଣ

ସାତ୍ତ୍ୱିକ ବିଭାବ ଉପରେ ସମସ୍ତଙ୍କର ଦୃଷ୍ଟି ଥିଲା । ଗୁରୁ ଗୋସ୍ୱାମୀ ମଞ୍ଚ ପାର୍ଶ୍ୱରେ ଠିଆହୋଇ ଅଭିନେତାମାନଙ୍କୁ ନିର୍ଦ୍ଦେଶନା ଓ ଦିଗ୍‌ଦର୍ଶନ ଦେଉଥିଲେ । ଅଭିନେତାମାନେ ସତରେ ଅଶ୍ରୁମୋଚନ କରୁଥିଲେ । କେଳୁଚରଣ ନିଜେ ଥରେ କୃଷ୍ଣ ଭୂମିକାରେ ରାଧାଙ୍କୁ 'ଦେହି ପଦପଲ୍ଲବମୁଦାରମ୍' କହୁଥିବା ସମୟରେ ଚୈତନ୍ୟ ହରାଇଥିଲେ (ଗୀତଗୋବିନ୍ଦର ଊନବିଂଶତମ ଗୀତ) । ୧୯୮୧ରେ କେଳୁଚରଣ ସେହି ଦୃଶ୍ୟର ନିର୍ଦ୍ଦେଶନା ଦେବାକୁ ଯାଇ ଏକୋଇଶି ଥର ଅଭିନୟଟିର ରିହର୍ସାଲ୍ କରାଇଥିଲେ । ତଥାପି ସେଥିରେ ସନ୍ତୁଷ୍ଟ ହୋଇନଥିଲେ ।

ରାସଲୀଳାର ଦର୍ଶକମାନେ ଉତ୍ସାହ ଓ ଭାବପ୍ରବଣତାର ସହିତ ଏହା ଉପଭୋଗ କରୁଥିଲେ । ସେମାନଙ୍କୁ ରାସଲୀଳାର ବିଷୟବସ୍ତୁ ଓ ସଂଗୀତ ଆଗରୁ ଜଣାଥିଲା । ରାଧାକୃଷ୍ଣଙ୍କର ସ୍ୱର୍ଗୀୟ ପ୍ରେମଲୀଳା ଅନାୟାସରେ ସେମାନଙ୍କୁ ବିମୋହିତ କରୁଥିଲା ଏବଂ ସେମାନେ ଅଭିନୟ ସହିତ ଅନ୍ତରଙ୍ଗ ହୋଇଯାଉଥିଲେ ।

'ମାନଭଞ୍ଜନ' ଥିଲା ଗୁରୁ ଗୋସ୍ୱାମୀଙ୍କର ଏକ ସଫଳ ରାସଲୀଳା । ଏଥିରେ ଜୟଦେବ, ଗୋପାଳକୃଷ୍ଣ ଓ ବନମାଳୀଙ୍କ ରଚିତ କେତେକ ସଂଗୀତ ଗାନ କରାଯାଉ ଥିଲା । ଗୁରୁ ଗୋସ୍ୱାମୀଙ୍କ ରଚିତ କେତେକ ସଂଗୀତ ମଧ୍ୟ ଏଥିରେ ସ୍ଥାନ ପାଉଥିଲା ।

'ଶ୍ରିତକମଳାକୁଚମଣ୍ଡଳ' ବନ୍ଦନା ଗାନ ପରେ ବିରହିଣୀ ରାଧା ଗୋପୀମାନଙ୍କ ଗହଣରେ ଆବିର୍ଭୂତା ହେଉଥିଲେ । କୃଷ୍ଣଙ୍କ ପ୍ରତି ଅଭିମାନ କରି ସେ କୃଷ୍ଣରଙ୍ଗର କୌଣସି ପରିଚ୍ଛଦ ବା ଅଳଙ୍କାର ପରିଧାନ କରିବାକୁ ସମ୍ମତି ଦେଉନଥିଲେ । ସେ ଲଳିତାଙ୍କୁ କହୁଥିଲେ, ତାଙ୍କ ସମ୍ମୁଖରୁ ସମସ୍ତ କୃଷ୍ଣରଙ୍ଗର ବସ୍ତୁ ଦୂର କରିଦିଆଯାଉ । କାରଣ, ତାହା ତାଙ୍କୁ କୃଷ୍ଣଙ୍କର ଛଳନା ସ୍ମରଣ କରାଇ ଦେଉଅଛି । ରାଧାଙ୍କ ସଖୀମାନେ ତାଙ୍କୁ ଛିଗୁଲେଇ କହୁଥିଲେ, 'ଆଖି ମୁଦିଲେ ତ ତୁମେ ଅନ୍ଧାର ଦେଖିବ । ତାହାର ରଙ୍ଗ ଦୂର କରିବ କିପରି ?' ରାଧା ଉତ୍ତର ଦେଉଥିଲେ, 'ମୁଁ ଖଣ୍ଡିଏ ହୀରକ ମୁଖରେ ଦେଇ ଆତ୍ମହତ୍ୟା କରିବି ।'

ପରବର୍ତ୍ତୀ ଦୃଶ୍ୟରେ କୃଷ୍ଣ ଲଳିତାଙ୍କ ସହିତ ମନ୍ତ୍ରଣା କରି ଛଦ୍ମବେଶରେ ରାଧାଙ୍କ ନିକଟରେ ପହଞ୍ଚିବାର ଯୋଜନା କରୁଥିଲେ । ଯଥାଶୀଘ୍ର ନିଜକୁ ବିଭିନ୍ନ ପୋଷାକରେ ସଜାଇ ପକାଉଥିଲେ (କେଳୁଚରଣ ନିଜେ ରାବଣ ଭୂମିକାରେ ଅଭିନୟ କରିବା ପାଇଁ ଠିକ୍ ଏହି ଶୈଳୀ ଅନୁସରଣ କରି ଯୋଗୀ ବେଶରେ ସୀତାଙ୍କ ନିକଟରେ ପହଞ୍ଚିଥିଲେ) ।

ପ୍ରଥମେ କୃଷ୍ଣ ମାଲୁଣୀ ବେଶରେ ରାଧାଙ୍କ ନିକଟରେ ପହଞ୍ଚିଲେ । ରାଧା ଦେଖିଲେ, ମାଲୁଣୀ ଆଣିଥିବା ଗୋଟିଏ ପତ୍ର ଉପରେ କୃଷ୍ଣଙ୍କ ନାମ ଲିଖିତ ଅଛି । ସେ ମାଲୁଣୀକୁ ଫେରାଇଦେଲେ । ଏହାପରେ କୃଷ୍ଣ ଆସିଲେ ନାପିତୁଣୀ ବେଶରେ । ପ୍ରଥମେ ରାଧା ନାପିତୁଣୀକୁ ସ୍ୱାଗତ କଲେ । କିନ୍ତୁ ନାପିତୁଣୀ ଯେତେବେଳେ ରାଧାଙ୍କ ପାଦରେ କୃଷ୍ଣଙ୍କ ନାମ ଲେଖିଦେଲେ, ରାଧା ତାକୁ ଫେରାଇଦେଲେ । ତା'ପରେ କୃଷ୍ଣ ଆସିଲେ

କାଚରା ବେଶରେ । କିନ୍ତୁ କାଚରା ତାଙ୍କୁ କଳା ରଙ୍ଗର ଚୁଡ଼ି କିଣିବାକୁ କହିବାରୁ ତାଙ୍କୁ ମଧ୍ୟ ରାଧା ଫେରାଇଦେଲେ ।

ଏହାପରେ ଲଳିତା ରାଧାଙ୍କୁ କହନ୍ତି, ଜଣେ ସୌମ୍ୟଦର୍ଶନ ସାଧୁ ତାଙ୍କ ଦ୍ୱାରକୁ ଆସିଛନ୍ତି ଏବଂ କୌଣସି ପତିବ୍ରତା ନାରୀଙ୍କଠାରୁ ଭିକ୍ଷା ଗ୍ରହଣ କଲେ ତାଙ୍କର ଯୋଗଶକ୍ତି ବୃଦ୍ଧିଲାଭ କରିବ ବୋଲି କହୁଛନ୍ତି । ରାଧା ଯଦିଓ ଚନ୍ଦ୍ରସେଣାଙ୍କୁ ବିବାହ କରିଥିଲେ, ତାଙ୍କର ବିବାହ ସଫଳ ହୋଇନଥିଲା । ଏଠାରେ ପତିବ୍ରତା କହିଲେ ରାଧାଙ୍କୁ ବୁଝାଉଛି । ଭିକ୍ଷାଦାନ ସମୟରେ ରାଧା ଓ କୃଷ୍ଣଙ୍କର ନେତ୍ରର ମିଳନ ହୁଏ ଏବଂ ରାଧା ଚୈତନ୍ୟ ହରାଇ ବସନ୍ତି । କୃଷ୍ଣ ବିଦାୟ ନେଲାପରେ ରାଧା ତାଙ୍କ ପାଦ ଚିହ୍ନରେ ଶଙ୍ଖ ଓ ପଦ୍ମର ଛାପ ଦେଖନ୍ତି ଏବଂ ତାଙ୍କ ଚକ୍ଷୁରୁ ଅଶ୍ରୁ ବିଗଳିତ ହୁଏ । ଏହି ଅଶ୍ରୁ କୃଷ୍ଣଙ୍କ ପାଦ ଚିହ୍ନ ଉପରେ ପଡ଼େ । ଆଉ ବିରହ ବେଦନା ସହ୍ୟ କରିନପାରି ରାଧା କୃଷ୍ଣଙ୍କୁ ଆଣିବା ପାଇଁ ଲଳିତାଙ୍କୁ ପଠାନ୍ତି । ଏହି ସମୟରେ ବୃନ୍ଦାବତୀ ମଞ୍ଚ ଉପରକୁ ଆସନ୍ତି ଏବଂ ଘୋଷଣା କରନ୍ତି – କୃଷ୍ଣ ନିଶ୍ଚୟ ନଦୀରେ ଜଳମଗ୍ନ ହୋଇଛନ୍ତି । କାରଣ, ତାଙ୍କର ମୟୂର ଚୂଳ ଓ ମୁକୁଟ ନଦୀକୂଳରେ ପଡ଼ିରହିଛି । ଏ ସମ୍ବାଦ ପାଇବା ପରେ ରାଧା ଯମୁନା କୂଳକୁ ଧାଇଁଯାନ୍ତି ।

ଶେଷ ଦୃଶ୍ୟରେ ପ୍ରେମିକ ପ୍ରେମିକା ପରସ୍ପରକୁ ଆଲିଙ୍ଗନ କରୁଥିବାର ଦେଖାଯାଏ । ଉଭୟ ଗୋଟିଏ ଦୋଳିରେ ବସିଥାନ୍ତି ଏବଂ ସଖୀମାନେ ସେ ଦୋଳି ଝୁଲାଉଥାନ୍ତି । ସେମାନଙ୍କ ସମ୍ମୁଖରେ ରାସଲୀଳା ଅଭିନୀତ ହେଉଥାଏ । ରାସଲୀଳା ପରେ ରାଧା ଓ କୃଷ୍ଣ ପିନ୍ଧିଥିବା ଫୁଲମାଳରୁ ଫୁଲଟିଏ ଲେଖାଏଁ ନେବାପାଇଁ ଦର୍ଶକମାନଙ୍କ ମଧ୍ୟରେ ପ୍ରତିଯୋଗିତା ହୁଏ । କୃଷ୍ଣ ପିନ୍ଧିଥିବା ମାଳରେ ଥାଏ କେତକୀ, ତରାଟ ଓ ମଲ୍ଲୀ । ପୁରୀର ପୋଲିସ୍ ସୁପରିଣ୍ଟେଣ୍ଡେଣ୍ଟ କ୍ଷେତ୍ରମଣି ମହାନ୍ତିଙ୍କର ଦୁଇ କନ୍ୟା ପ୍ରଥମେ କିପରି ମାଳାରୁ ଫୁଲ ଛିଣ୍ଡାଇ ନେଉଥିଲେ, ଏହା କେଳୁଚରଣ କେତେଥର କହିଛନ୍ତି ।

ଏହି ରାସଲୀଳାରେ ଗାନ କରାଯାଉଥିବା ବିଭିନ୍ନ ସଂଗୀତ ଷୋଡ଼ଶ ଓ ସପ୍ତଦଶ ଶତାବ୍ଦୀରେ ଓଡ଼ିଆ କବିମାନଙ୍କ ଦ୍ୱାରା ଲିଖିତ ରାଧା–କୃଷ୍ଣ ପ୍ରେମଲୀଳାର ବହୁ ଦିଗ ଓ ବୈଚିତ୍ର୍ୟ ସୂଚାଉଥିଲା । କେଳୁଚରଣ ଏ ସଂପର୍କରେ ଯଥେଷ୍ଟ ଅବହିତ ଥିଲେ । କେବଳ ବିଷୟବସ୍ତୁ ନୁହେଁ, ଭକ୍ତିଭାବ ତାଙ୍କୁ ସର୍ବଦା ଆକୃଷ୍ଟ କରୁଥିଲା । ପରବର୍ତ୍ତୀ ସମୟରେ ତାଙ୍କର ପ୍ରସିଦ୍ଧ ଜୟଦେବଙ୍କ ଅଷ୍ଟପଦୀ ଗୀତିନାଟ୍ୟ କଳ୍ପନା କଲାବେଳେ ସେ ଏହି ଭକ୍ତିଭାବର ସଞ୍ଚାରୀ ରୂପ ସୃଷ୍ଟି କରିଥିଲେ । ଶୃଙ୍ଗାର ରସରେ ଆପ୍ଲୁତ ଜୟଦେବଙ୍କ ରଚନାରେ ଭକ୍ତିଭାବକୁ ପ୍ରାଧାନ୍ୟ ଦେବା ଫଳରେ ଏହି ରଚନା ଅସାଧାରଣ ଶକ୍ତି ଧାରଣ କରୁଥିଲା ।

ସଂସାର ତଥା ସୃଷ୍ଟିର ରହସ୍ୟ କେଳୁଚରଣଙ୍କୁ ଏତେ ବ୍ୟାକୁଳ କରୁଥିଲା ଯେ ଥରେ ସେ ଲଳିତା ଭୂମିକାରେ ଅଭିନୟ କରୁଥିବା ରଘୁନାଥ ନନ୍ଦଙ୍କ ସହିତ ପାଦରେ ଚାଲି ଚାଲି ଶ୍ରୀକୃଷ୍ଣଙ୍କ କାଳ୍ପନିକ ଲୀଳାଭୂମି ବୃନ୍ଦାବନ ଅଭିମୁଖେ ଯାତ୍ରା ଆରମ୍ଭ କରିଦେଇଥିଲେ ।

ପୁରୀ ରେଳଷ୍ଟେସନରେ ପହଞ୍ଚି ସେମାନେ ଅପେକ୍ଷା କରିଥିବା ରେଳଗାଡ଼ିରେ ଚଢ଼ିଗଲେ । ଅଳ୍ପ ସମୟ ପରେ ଟିକେଟ୍ କଲେକ୍ଟର ଆସି ସେମାନଙ୍କୁ ଟିକେଟ ମାଗିଲା । ସେମାନଙ୍କ ପାଖରେ କିଛି ଟଙ୍କା ନଥିବାର ଜାଣି, ସେମାନେ କେଉଁଠାକୁ ଯିବାକୁ ଚାହାନ୍ତି ବୋଲି ଟିକେଟ କଲେକ୍ଟର ପଚାରିଲା । ସେମାନେ କହିଲେ, ସେମାନଙ୍କ ଲକ୍ଷ୍ୟସ୍ଥଳ ଶ୍ରୀକୃଷ୍ଣଙ୍କ ଲୀଳାଭୂମି । ଟିକେଟ କଲେକ୍ଟର ଅନ୍ୟ ଗୋଟିଏ ରେଳରେ ଯିବା ପାଇଁ ସେମାନଙ୍କୁ ଅନୁରୋଧ କଲା ଏବଂ ମୋହନସୁନ୍ଦରଙ୍କ ନିକଟକୁ ଖବର ପଠାଇଲା । ରଘୁରାଜପୁରର ଖୋଳବାଦକ ଅଗାଧୁ ମହାରଣା ତୁରନ୍ତ ପହଞ୍ଚି ସେମାନଙ୍କୁ ଘରକୁ ଫେରାଇନେଲେ ।

ବହୁବର୍ଷ ପରେ ୧୯୯୮ ମସିହାରେ କେଳୁଚରଣ ଆଉ ଥରେ ଏହିପରି ଘର ଛାଡ଼ି ପଳାଇବାର ଚେଷ୍ଟା କରିଥିଲେ । ଏଥର ସେ ବୃନ୍ଦାବନ ଯାଇନଥିଲେ, ଯାଇଥିଲେ ତାଙ୍କର ମା' ଭୂଆସୁଣୀଙ୍କ ନିକଟକୁ । ତାଙ୍କୁ ତିନିବର୍ଷ ହୋଇଥିବା ବେଳେ ତାଙ୍କୁ ଭୂଆସୁଣୀଙ୍କ ଦାୟିତ୍ୱରେ ଦିଆଯାଇଥିଲା । ହଠାତ୍ ତାଙ୍କର ସ୍ତ୍ରୀ ବିନା କାରଣରେ କନ୍ଦାକଟା କରିବାରୁ ତାଙ୍କୁ ସାନ୍ତ୍ୱନା ଦେଇନପାରି କେଳୁଚରଣ ପାଗଳ ପରି ଭୂଆସୁଣୀଙ୍କ ନିକଟକୁ ଚାଲିଆସିଲେ । ପାଖରେ ପଇସା ନଥାଏ, କାନ୍ଧରେ ଖଣ୍ଡିଏ ଗାମୁଛା । ଘର ଛାଡ଼ି ବସ୍‌ରେ ବସି ସେ ପହଞ୍ଚିଲେ ରଘୁରାଜପୁରରେ । ଗାଆଁକୁ ଆସି ପ୍ରକାଣ୍ଡ ବରଗଛ ମୂଳେ ଆଶ୍ରୟ ନେଲେ । ବରଗଛଟିର ଗଣ୍ଡିରେ ସିନ୍ଦୂର ବୋଳା ହୋଇଥିଲା । ଏପରି ଘଟିଲା ବେଳକୁ କେଳୁଚରଣ ଜଣେ ବିଶିଷ୍ଟ ନୃତ୍ୟଗୁରୁ ଭାବରେ ପ୍ରସିଦ୍ଧ ହୋଇସାରିଥିଲେ । ପୃଥିବୀସାରା ତାଙ୍କର ଶହ ଶହ ଶିଷ୍ୟ-ଶିଷ୍ୟା ଓ ପ୍ରଶଂସକ । ଓଡ଼ିଶୀ ନୃତ୍ୟ କହିଲେ ତାଙ୍କୁ ବୁଝାଉଥିଲା । ଭାରତର ନୃତ୍ୟଗୁରୁମାନଙ୍କ ମଧ୍ୟରେ ସେ ଥିଲେ ଅନ୍ୟତମ । ସେଦିନ ଗାଁ ଠାକୁରାଣୀଙ୍କ ନିକଟକୁ ଫେରିବା ଓ ବରଗଛ ମୂଳେ ଆଶ୍ରା ନେବାପରେ ତାଙ୍କ ଜୀବନର ଶେଷ କାର୍ଯ୍ୟଟି ସେ କରିଥିଲେ- ମା' ଭୂଆସୁଣୀଙ୍କ ପାଇଁ ମନ୍ଦିରଟିଏ ନିର୍ମାଣ । ଅବଶ୍ୟ ଏହାପରେ ତାଙ୍କର ସ୍ତ୍ରୀ ଓ ପୁଅ ତାଙ୍କୁ ପୁଣି ଘରକୁ ଫେରାଇ ଆଣିଥିଲେ ।

କେନ୍ଦ୍ରାପଡ଼ାରେ ନୃତ୍ୟ ପରିବେଷଣ କରୁଥିବା ସମୟରେ ସେ ଟେଲିଗ୍ରାମ୍‌ଟିଏ ପାଇଲେ- ତାଙ୍କ ପିତାଙ୍କ ମୃତ୍ୟୁ ହୋଇଯାଇଛି । ସେତେବେଳେ ତାଙ୍କୁ ପନ୍ଦର ବର୍ଷ ବୟସ । ମୋହନସୁନ୍ଦର ଗୋସ୍ୱାମୀଙ୍କୁ ପ୍ରଥମେ ଟେଲିଗ୍ରାମ୍‌ଟି ଦିଆଗଲା । ରାସଲୀଳା ଚାଲିଥାଏ । ଲୀଳା ଶେଷରେ ସବୁଥର ପରି କେଳୁଚରଣ ଆସି ଗୁରୁଙ୍କୁ ପ୍ରଣାମ କଲେ । ଗୁରୁ ଚିନ୍ତାକୁଳ ହୋଇ ମୁଣ୍ଡ ନୁଆଁଇ ବସିଥାନ୍ତି । ଗୁରୁ ତାଙ୍କୁ କିଛି କହିବେ କି ବୋଲି କେଳୁଚରଣ ପଚାରିଲେ । ଗୁରୁ ଓଲଟି ପଚାରିଲେ, କେଳୁଚରଣ ତାଙ୍କ ବିଷୟରେ କ'ଣ ଭାବନ୍ତି । କେଳୁଚରଣ କହିଲେ, ଗୁରୁ ତାଙ୍କର ବାପାଙ୍କଠାରୁ ମଧ୍ୟ ଅଧିକ । ଗୋସ୍ୱାମୀ କହିଲେ, ସେ କୃଷ୍ଣଙ୍କ ବେଶ ଓହ୍ଲାଇଦେଇ କିଛି ଖାଦ୍ୟ ଗ୍ରହଣ କରନ୍ତୁ । ଏହାପରେ ସେ ତାଙ୍କୁ ଟେଲିଗ୍ରାମ୍‌ଟି ଦେଖାଇଲେ । କେଳୁଚରଣ ଆଉ ସମ୍ଭାଳି ପାରିଲେ ନାହିଁ । କାନ୍ଦିବାରେ ଲାଗିଲେ । ସେଦିନ

ଥିଲା ରାସଲୀଳାର ଶେଷ ଅଭିନୟ । ଯାତ୍ରାଦଳ ସେମାନଙ୍କ ଜିନିଷପତ୍ର ବାନ୍ଧି କଟକ ଯିବାପାଇଁ ବାହାରିଲେ ।

ସେତେବେଳେ ଦ୍ୱିତୀୟ ମହାଯୁଦ୍ଧ ଆରମ୍ଭ ହେବାକୁ ଯାଉଥାଏ । ସହରରେ ପେଟ୍ରୋଲ ମିଳୁନଥାଏ । କଟକରୁ ପୁରୀ ଯାଉଥିବା ରେଳଗାଡ଼ିଟି ଜାନକାଦେଈପୁର ଷ୍ଟେସନ୍‌ରେ ଅଳ୍ପ ସମୟ ରହେ । ସେହି ଷ୍ଟେସନ୍‌ରୁ ଗୁରୁ ଗୋସ୍ୱାମୀ ତାଙ୍କର ଜଣେ ପରିଚିତ ଲୋକ ମାଧ୍ୟମରେ କେଳୁଚରଣଙ୍କ ମା'ଙ୍କ ନିକଟକୁ ଖବର ପଠାଇଲେ । କେଳୁଚରଣଙ୍କୁ ପନ୍ଦର ବର୍ଷ ହୋଇଯାଇଥିଲେ ମଧ ଗୁରୁ ଗୋସ୍ୱାମୀ ତାଙ୍କୁ କେଉଁଆଡ଼େ ଏକୁଟିଆ ଛାଡୁନଥିଲେ । କେଳୁଚରଣ ତାଙ୍କ ଘରେ ଖରାଛୁଟିରେ ରହୁଥିବା ପିଲାମାନଙ୍କ ସୁରକ୍ଷା ବିଷୟରେ ସେହିପରି ସତର୍କ ରହୁଥିଲେ; କୌଣସି ପିଲାକୁ ଏକୁଟିଆ କୁଆଡ଼େ ଛାଡୁନଥିଲେ ।

ଶିରୀନାନୀ ସେହିଦିନ ସଂଧ୍ୟାରେ ପୁରୀରେ ପହଞ୍ଚିଲେ ଏବଂ କାନ୍ଦି କାନ୍ଦି କେଳୁଚରଣଙ୍କ ପ୍ରତି ତାଙ୍କ ବାପାଙ୍କ ଶେଷ ଉପଦେଶ ଜଣାଇଦେଲେ:

'ହାତେ ମାପି ଚାଖଣ୍ଡେ ଚାଲ ।
କରଜ କରିବୁ ନାହିଁ, କର୍ମ କର ।
ଯେଉଁ ରାସ୍ତାରେ ମୁଁ ଚାଲିଲି,
ସେଥିରେ ମୋର ନାମ ରଖ ।'

୧୯୮୮ ମସିହାରେ – ପ୍ରାୟ ପଚାଶ ବର୍ଷ ପରେ କେଳୁଚରଣ ମା'ଙ୍କ ପାଦତଳେ ଭାରତ ସରକାରଙ୍କଠାରୁ ପାଇଥିବା ପଦ୍ମଭୂଷଣ ମାନପତ୍ର ରଖିଦେବା ବେଳେ ମା' କେଳୁଚରଣଙ୍କ ବାପାଙ୍କ କଥା କେତେପଦ ମନେ ପକାଇଲେ । କାନ୍ଦ କାନ୍ଦ ହୋଇ କହିଲେ, 'ବାପାଙ୍କ ସହିତ ସ୍ୱର୍ଗରେ ଦେଖାହେଲେ ତୋର କୃତିତ୍ୱ ବିଷୟରେ କହିବି ।'

ସେତେବେଳେ ଛୁଟି ସମୟ । କେଳୁଚରଣ ଗୁରୁଙ୍କଠାରୁ ବିଦାୟ ନେଇ ମା'ଙ୍କ ସହିତ ଗାଆଁକୁ ଫେରିଲେ । ସେହି ତାସ୍‌ଖେଳ ଘଟଣା ପରେ ସେ ଆଉ ଗାଆଁକୁ ଯାଇ ନଥିଲେ । ବାପାଙ୍କର ଦାହ କ୍ରିୟା ସରିଯାଇଥିଲା । ସେ ମଶାଣିକୁ ଯାଇ ବାପା ଦାହ ହୋଇଥିବା ମାଟିକୁ ଛୁଇଁଲେ ଏବଂ ପ୍ରତିଜ୍ଞା କଲେ– ବାପାଙ୍କ ଇଚ୍ଛା ପୂର୍ଣ୍ଣ କରିବେ । ଏହାପରେ ସେ ବାରମ୍ବାର ଗାଆଁକୁ ଯାଇଥିଲେ ଏବଂ ଗାଁ ତାଙ୍କୁ ଖୁବ୍ ଭଲ ଲାଗିଥିଲା ।

୧୯୩୭ ମସିହା ପରେ ସ୍ୱାସ୍ଥ୍ୟର ଅବନତି ହେବାରୁ ତଥା ଆର୍ଥିକ ଦୁରବସ୍ଥା କାରଣରୁ ମୋହନସୁନ୍ଦରଙ୍କ ରାସଲୀଳା ଅଭିନୟ ଅନିୟମିତ ହୋଇପଡ଼ିଲା । ଅଭିନୟ କରୁଥିବା ପିଲାମାନଙ୍କୁ ବହୁ ସମୟରେ ନିଜ ନିଜ ଗ୍ରାମକୁ ପଠାଇ ଦିଆଯାଉଥିଲା । କେଳୁଚରଣ କିନ୍ତୁ ପ୍ରାୟ ସମୟ ଗୁରୁଙ୍କ ପାଖେ ପାଖେ ରହୁଥିଲେ । ନିହାତି ଆବଶ୍ୟକ ନପଡ଼ିଲେ ନିଜ ଗାଆଁକୁ ଯାଉନଥିଲେ ।

୧୯୩୬ରେ ମୋହନ ସୁନ୍ଦର 'ସୀତାବିବାହ' ନାମରେ ଓଡ଼ିଆ ଚଳଚ୍ଚିତ୍ରଟିଏ ପ୍ରସ୍ତୁତ କଲେ । ଏହା କାମପାଳ ମିଶ୍ରଙ୍କ ଲିଖିତ ନାଟକ ଉପରେ ଆଧାରିତ ଥିଲା । ଏପ୍ରିଲ ମାସରେ ଏହା ପୁରୀର ଲକ୍ଷ୍ମୀ ସିନେମାରେ ପ୍ରଦର୍ଶିତ ହେଲା । ଏହି ଚଳଚ୍ଚିତ୍ର ନିର୍ମାଣ ପାଇଁ ସେ କଲିକତା କାଳୀ ଫିଲ୍ମସ୍ ଷ୍ଟୁଡିଓଠାରୁ ଯଥେଷ୍ଟ ସାହାଯ୍ୟ ପାଇଥିଲେ । ତଥାପି ଚଳଚ୍ଚିତ୍ର ପାଇଁ ଆବଶ୍ୟକ ତିରିଶି ହଜାର ଯୋଗାଡ଼ କରିବା ପାଇଁ ତାଙ୍କୁ ତାଙ୍କର ପୁରୀ ଘର ସମେତ ସମସ୍ତ ସମ୍ପତ୍ତି ବନ୍ଧକ ଦେବାକୁ ପଡ଼ିଥିଲା । ପରେ ତାଙ୍କର ନାତି ବଟରାଜ ଦେବ ଗୋସ୍ୱାମୀ ୧୯୯୦-୯୫ ମଧ୍ୟରେ ଘରଟିକୁ ବନ୍ଧକରୁ ମୁକୁଳାଇଲେ । ଚଳଚ୍ଚିତ୍ରଟି ନିର୍ମାଣ କରିବା ପରେ ଆର୍ଥିକ ଦୁଃସ୍ଥିତିରେ ପଡ଼ି ସେ ପୁରୀର ମଠ ମହନ୍ତମାନଙ୍କୁ ସାହାଯ୍ୟ ପାଇଁ ନିବେଦନ କରିଥିଲେ ।

ସେ ଯାହାହେଉ, ଚଳଚ୍ଚିତ୍ରଟି ସଫଳତା ଲାଭ କରିଥିଲା ଏବଂ ମୋହନସୁନ୍ଦରଙ୍କ ସୁଖ୍ୟାତି ବଢ଼ାଇଥିଲା । ଏହି ଚଳଚ୍ଚିତ୍ରରେ ବିଶ୍ୱାମିତ୍ର ଭୂମିକାରେ ଅଭିନୟ କରି ସେ ତାଙ୍କର ଅଭିନୟ କଳାର ଯଥେଷ୍ଟ ପାରଦର୍ଶିତା ପ୍ରଦର୍ଶନ କରିଥିଲେ । ସୁଦାମା ଓ ବିଲ୍ୱମଙ୍ଗଳଙ୍କ ଭୂମିକାରେ ତ ସେ ମଞ୍ଚ ଉପରେ ଅବତୀର୍ଣ୍ଣ ହେଉଥିଲେ । ଗୁରୁଙ୍କୁ ଏପରି ଭୂମିକାରେ ଦେଖିବା କେଳୁଚରଣଙ୍କ ପାଇଁ ଥିଲା ଏକ ଶିକ୍ଷାପ୍ରଦ ଅନୁଭୂତି । କେଳୁଚରଣଙ୍କୁ ସତର ବର୍ଷ ବୟସ ହୋଇଥିବା ସମୟରେ ସେ 'ସୁଦାମା ଦାରିଦ୍ର୍ୟ ଭଞ୍ଜନ' ନାଟକରେ ସୁଦାମା ଭୂମିକାରେ ଅଭିନୟ କରିଥିଲେ । 'ସୁଦାମା ଦାରିଦ୍ର୍ୟ ଭଞ୍ଜନ' ନାଟକର ବିଷୟବସ୍ତୁ ହେଲା, ଦରିଦ୍ର ବ୍ରାହ୍ମଣ ସୁଦାମାର କୃଷ୍ଣଙ୍କ ସହିତ ମିଳନ । ସୁଦାମାଙ୍କ ବାଲ୍ୟବନ୍ଧୁ କୃଷ୍ଣ ବର୍ତ୍ତମାନ ଦ୍ୱାରକାର ଶକ୍ତିଶାଳୀ ସମ୍ରାଟ । ସୁଦାମାଙ୍କ ସରଳତା, ଭକ୍ତି, ବନ୍ଧୁପ୍ରେମର ସାର୍ବଜନୀନ ଆବେଦନ ଓ କେତେକାଂଶରେ ହାସ୍ୟାସ୍ପଦ ପରିସ୍ଥିତିକୁ କେଳୁଚରଣ ତାଙ୍କ ଅଭିନୟରେ ଚମତ୍କାର ଭାବରେ ପ୍ରକାଶ କରୁଥିଲେ । ଅଷ୍ଟମ ଦଶକର ଶେଷଭାଗରେ ରାମାୟଣରେ ବର୍ଣ୍ଣିତ କୈବର୍ତ୍ତ ଚରିତ୍ରଟିକୁ ମଧ୍ୟ ସେ ସୁନ୍ଦର ଭାବରେ ଅଭିନୟରେ ଜୀବନ୍ତ କରିପାରୁଥିଲେ । ପଞ୍ଚବଟୀ ଅରଣ୍ୟରେ ରହୁଥିବା ସମୟରେ ରାମଚନ୍ଦ୍ର କୈବର୍ତ୍ତଙ୍କୁ ଅନୁରୋଧ କରିଥିଲେ ଗଙ୍ଗା ପାରି କରିଦେବା ପାଇଁ ।

ନାରୀ ଭୂମିକାରେ ଅଭିନୟ କରିବାର ପାରଦର୍ଶିତା ମଧ୍ୟ ତାଙ୍କଠାରେ ଥିଲା । ସେ ସୀତା ଭୂମିକାରେ ଅଭିନୟ କରନ୍ତୁ, ଏହା ଥିଲା ମୋହନସୁନ୍ଦରଙ୍କର ଇଚ୍ଛା । କିନ୍ତୁ ସେତେବେଳକୁ କେଳୁଚରଣଙ୍କୁ ଅଠରବର୍ଷ ହୋଇସାରିଥାଏ । ଗୁରୁ ଭାବିଲେ, ଏପରି ବୟସରେ ହୁଏତ କେଳୁଚରଣ ନାରୀସୁଲଭ ଅଙ୍ଗଭଙ୍ଗୀ ଓ ଆଚରଣ ପ୍ରଦର୍ଶନ କରିପାରିବେ ନାହିଁ । କେଳୁଚରଣ କିନ୍ତୁ ନାରୀଟିଏ ପାଣି କଳସୀ ଧରି ନଦୀରୁ ଫେରୁଥିବାର ଅଙ୍ଗଭଙ୍ଗୀ ଅବିକଳ ଅଭିନୟରେ ଦେଖାଇ ପାରିଥିଲେ । ନାରୀଙ୍କୁ ଏପରି ଅନୁକରଣ କରିପାରିବା ଦେଖି ମୋହନସୁନ୍ଦର ନିଜ ଆଖିକୁ ବିଶ୍ୱାସ କରିପାରିଲେ ନାହିଁ । କେଳୁଚରଣ ଯେ କିପରି

ଏପରି ଅଭିନୟ କରିବା ଜାଣିଲେ, ତାହା ତାଙ୍କୁ ଆଶ୍ଚର୍ଯ୍ୟ କରିଦେଲା । କେଳୁଚରଣ କହିଲେ, ଛୋଟ ଥିବା ସମୟରେ ତାଙ୍କର ମା' ଓ ଦୁଇଜଣ ଭାଉଜଙ୍କ ଅଙ୍ଗଭଙ୍ଗୀ ସେ ଲକ୍ଷ୍ୟ କରୁଥିଲେ । ସ୍ୱାମୀମାନଙ୍କ ସମ୍ମୁଖରେ ଗଲାବେଳେ ସେମାନେ କିପରି ମୁଣ୍ଡରେ ଓଢ଼ଣା ଦେଇଯାଆନ୍ତି, ତାହା ମଧ୍ୟ ସେ ଦେଖୁଥିଲେ । ସେହି ଦୃଶ୍ୟ ମନେରଖି ତାହା ସେ ଅଭିନୟରେ ଦେଖାଉଛନ୍ତି । ତାଙ୍କ ସାଙ୍ଗରେ ରହୁଥିବା ଅନ୍ୟ ପିଲାମାନଙ୍କର ଚାଲିଚଳଣ ଓ ଢଙ୍ଗଢାଙ୍ଗ ମଧ୍ୟ ସେ ଅବିକଳ ଅନୁକରଣ କରିପାରୁଥିଲେ ।

କେଳୁଚରଣଙ୍କର କ'ଣ ଆଉ କୌଣସି ଗୁରୁଙ୍କର ଆବଶ୍ୟକତା ଥିଲା ? ଅନେକ ଛୋଟ ଛୋଟ ଘଟଣା ଜୀବନର ମୋଡ଼ ବଦଳାଇଦିଏ । ଅତୀତକୁ ଫେରି ଚାହିଁଲେ ଏହା ବୁଝିହୁଏ । କେଳୁଚରଣ ଗୁରୁଙ୍କଠାରୁ ଅନେକ କିଛି ଶିଖିଥିଲେ- ଗୁରୁଙ୍କ ନିକଟରେ କଟାଇଥିବା ଦଶବର୍ଷ ମଧ୍ୟରେ । ଗୁରୁଙ୍କର ବହୁ ସେବା କରିଥିଲେ । ଗୁରୁ ଓ ଶିଷ୍ୟ- କାହାର ଅବଦାନ ଅଧିକ ଥିଲା, କହିବା ସହଜ ନୁହେଁ । ପ୍ରଥମରୁ ହିଁ ସେ ଥିଲେ ଗୁରୁଙ୍କର ଅତି ପ୍ରିୟ ଶିଷ୍ୟ । ତାଙ୍କ ବ୍ୟତୀତ ଆଉ କେହି ଗୁରୁଙ୍କୁ ସ୍ନାନ କରାଇଦେବା ବା ଖାଦ୍ୟ ଖୁଆଇଦେବା ଗୁରୁ ଚାହୁଁନଥିଲେ । ଗୁରୁ ଭୟଙ୍କର ଅସୁସ୍ଥ ଥିବା ସମୟରେ ଯେତେବେଳେ ତାଙ୍କର ଦେହରେ ଘା' ମାଡ଼ିଗଲା, କେବଳ କେଳୁଚରଣ ହିଁ ତାଙ୍କର ଯତ୍ନ ନେଉଥିଲେ- ତାଙ୍କୁ ଗାଧୋଇ ଦେଉଥିଲେ, ତାଙ୍କ ଦେହରେ ଔଷଧ ଲଗାଇ ଦେଉଥିଲେ । ଏପରିକି ତାଙ୍କୁ ପାଇଖାନାକୁ ନେଉଥିଲେ । ଗୁରୁଙ୍କ ପାଇଁ ସେ ଥିଲେ ପୁଅଠାରୁ ଅଧିକ । ନିଜ ସ୍ତ୍ରୀ ଓ ପୁଅଙ୍କ ଆଗରେ ଗୁରୁ ଏକଥା ବାରମ୍ବାର କହିଛନ୍ତି । ସେମାନଙ୍କ ମନରେ ଏଥିପାଇଁ ସାମାନ୍ୟ ଈର୍ଷା ଜାତ ହୋଇଛି ହୁଏତ ।

ଦିନେ ଜୟୀ ମକଦ୍ଦମ ନାମରେ ଜଣେ ଜମିଦାର ମୋହନସୁନ୍ଦରଙ୍କ ନିକଟକୁ ଆସିଲେ । ଗୁରୁଙ୍କୁ ଉପହାର ଦେବାପାଇଁ ସେ ଆଣିଥିଲେ କେତେ ବସ୍ତା ଧାନ ଏବଂ କିଛି ପରିବାପତ୍ର । ଗୁରୁଙ୍କ ପତ୍ନୀଙ୍କୁ ତାହା ଦେବାପରେ ସେ ତାଙ୍କ ଦାୟିତ୍ୱରେ ଅଳ୍ପକିଛି ସୁନା ରଖିବାକୁ ଚାହିଁଲେ । ପରେ ଅବଶ୍ୟ ସେ ସୁନାକୁ ଫେରାଇନେବେ । କେଳୁଚରଣଙ୍କ ପାଖରେ ତ ରହୁଥିଲା ଘରର ସବୁ ଚାବି । ପରିବାପତ୍ର ଇତ୍ୟାଦି ଯଥା ସ୍ଥାନରେ ରଖିବା ପରେ ତଳମହଲା ଶୋଇବାଘରେ ଆଲମିରାରେ ସୁନା ରଖିବା ପାଇଁ ତାଙ୍କୁ କୁହାଗଲା ।

ସେହିଦିନ ସନ୍ଧ୍ୟାରେ ସ୍ଥାନୀୟ ଲକ୍ଷ୍ମୀ ଟକିଜ୍ ସିନେମା ହଲ୍‌ରେ କେଳୁଚରଣଙ୍କର ସିନେମାଟିଏ ଦେଖିବାର ଥିଲା । ସିନେମାଟି ଥିଲା 'କଙ୍ଗନ୍' । ଏଥିରେ ମୁଖ୍ୟ ଭୂମିକାରେ ଅଭିନୟ କରୁଥାନ୍ତି ଲୀଳା ଚିଟ୍‌ନିସ୍ ଓ ଅଶୋକ କୁମାର । ଏହା ଆଗରୁ କେଳୁଚରଣ ମାତ୍ର ଦୁଇଥର ସିନେମା ଦେଖିବାକୁ ଯାଇଥାନ୍ତି- ଗୁରୁଙ୍କ ସହିତ 'ସୀତା ବିବାହ' ଦେଖିବାକୁ । ସିନେମାର ବଡ଼ ପର୍ଦ୍ଦାରେ ଚଳନ୍ତି ପ୍ରତିମା ତାଙ୍କୁ ଖୁବ୍ ଆମୋଦିତ କରିଥାଏ । ଚରିତ୍ରମାନଙ୍କ କଥା କହିବାର ଢଙ୍ଗ, କାହାଣୀର ନାଟକୀୟତା, ପ୍ରଚ୍ଛଦ ଦୃଶ୍ୟ – ବିଶେଷ ଭାବରେ

ଚରିତ୍ରମାନଙ୍କୁ ଲକ୍ଷ୍ୟ କରି ସେମାନଙ୍କଠାରୁ ଅଭିନୟ କଳା ଶିଖିବା – ତାଙ୍କୁ ଖୁବ୍ ଆକର୍ଷଣ କରିଥାଏ । ଶେଷ ବୟସଯାଏଁ ମଧ୍ୟ ତାଙ୍କର ଏହି ଆକର୍ଷଣ ଅତୁଟ ରହିଥିଲା ।

ଅଷ୍ଟମ ଦଶକ ଆରମ୍ଭରେ ଟେଲିଭିଜନ ସେଟ୍‌ଟିଏ କିଣିବା ପରେ ଘଣ୍ଟା ଘଣ୍ଟା ଧରି ସେ ଟେଲିଭିଜନ ଦେଖିବାରେ ସମୟ ବିତାଉଥିଲେ ।

ସିନେମାର ସେକେଣ୍ଡ ସୋ ଦେଖିବା ପାଇଁ ସେଦିନ ରାତି ୯ଟା ପନ୍ଦର ମିନିଟରେ କେଳୁଚରଣ ଘରୁ ବାହାରି ଯାଇଥିଲେ । ଯିବା ଆଗରୁ ରାଧା ଭୂମିକାରେ ଅଭିନୟ କରୁଥିବା ତାଙ୍କର ବନ୍ଧୁ ବାସୁଦେବଙ୍କୁ କହିଥିଲେ, ଗୁରୁ ଯଦି ତାଙ୍କୁ ଖୋଜନ୍ତି, ତେବେ ସେ (କେଳୁଚରଣ) ଅନ୍ୟ ପିଲାମାନଙ୍କ ସହିତ ଚାଳଘରେ ଶୋଇଛନ୍ତି ବୋଲି ତାଙ୍କୁ କହିଦେବ । ରାତି ଅଧ ବେଳକୁ ମୋହନସୁନ୍ଦର ନିଦରୁ ଉଠି କେଳୁଚରଣଙ୍କୁ ଖୋଜିଲେ । ଏପରି କରିବାରେ ଘରର ସମସ୍ତେ ଉଠିପଡ଼ିଲେ । କେଳୁଚରଣ ଘରେ କେଉଁଠାରେ ନଥିଲେ । ଗୁରୁମା' (ମୋହନସୁନ୍ଦରଙ୍କ ସ୍ତ୍ରୀ)ଙ୍କ ମନରେ ସନ୍ଦେହ ହେଲା । କେଳୁଚରଣ ସୁନାଗହଣା ନେଇ ପଳାଇଯାଇ ନାହାନ୍ତି ତ ? ସ୍ୱାମୀଙ୍କୁ ନପଚାରି ସେ ସଙ୍ଗେ ସଙ୍ଗେ ତାଙ୍କ ପୁଅକୁ ପୋଲିସ୍ ଷ୍ଟେସନ୍ ପଠାଇଦେଲେ କେଳୁଚରଣଙ୍କ ବିରୋଧରେ କେସ୍‌ଟିଏ ଫାଇଲ୍ କରିବା ପାଇଁ । ପୋଲିସ୍ ସୁପରିଣ୍ଟେଣ୍ଡେଣ୍ଟ କ୍ଷେତ୍ରମଣି ମହାନ୍ତି ଏ ଅଭିଯୋଗରେ ଆଦୌ ବିଶ୍ୱାସ କଲେନାହିଁ । ତାଙ୍କର ଦୁଇଟି ଝିଅ ଥିଲେ କେଳୁଚରଣଙ୍କର ଦୁଇଜଣ ଅନୁରକ୍ତ ଶିଷ୍ୟା । ସେମାନଙ୍କର 'କୃଷ୍ଣ' କେଳୁଚରଣ ଯେ ଜଣେ ଚୋର, ଏହା କେବେହେଁ ସମ୍ଭବ ନୁହେଁ ବୋଲି ସେମାନେ ଭାବିଲେ ।

ଘଟଣାଟା ଠିକ୍ ଭାବରେ ନବୁଝି ପୋଲିସ୍ ଷ୍ଟେସନ୍‌କୁ ଯାଇଥିବାରୁ ମୋହନସୁନ୍ଦର ପୁତ୍ର ଗୌରସୁନ୍ଦରଙ୍କ ଉପରେ ବିରକ୍ତ ହେଲେ । ଠିକ୍ ସେହି ସମୟରେ କେଳୁଚରଣ ସିନେମା ହଲ୍‌ରୁ ଫେରିଲେ । ଅଗଣାର ଚନ୍ଦନ ଗଛ ତଳେ ଠିଆହୋଇ ଗୁରୁଜୀ ତାଙ୍କ ପତ୍ନୀଙ୍କ ଉପରେ ବିରକ୍ତ ହେଉଥିବାର ସେ ଶୁଣିଲେ । କେଳୁଚରଣ ଏଥିରେ ଆଶ୍ଚର୍ଯ୍ୟ ହେଲେ, ତାଙ୍କ ହାତରୁ ଚାବି ମୁଠାଏ ଖସିପଡ଼ିଲା । ଗୁରୁମା' ଜାଣିଲେ, କେଳୁଚରଣ ଘର ଛାଡ଼ିନାହାନ୍ତି । ଗୌରସୁନ୍ଦର ମଧ୍ୟ ଦେଖିଲେ – କେଳୁଚରଣ ଘରେ ଅଛନ୍ତି । ମୋହନସୁନ୍ଦରଙ୍କୁ ସେ ଏକଥା ଜଣାଇଦେଲେ । କେଳୁଚରଣ ଚାବି ମୁଠାକ ଆଣି ଗୁରୁମା'ଙ୍କ ପାଦତଳେ ରଖିଲେ ଏବଂ ଘରର ବାହାର ପିଣ୍ଡାରେ ରାତିସାରା ବସିରହିଲେ ।

ଘରର ସମସ୍ତେ ଶୋଇବାକୁ ଗଲେ । କିନ୍ତୁ କେଳୁଚରଣ ସକାଳ ହେବାଯାଏଁ ସେହିପରି ପିଣ୍ଡାରେ ବସିରହିଲେ । ଘର ସାମ୍ନା ଦେଇ ଯାଉଥିବା ଗାଁ ଲୋକଟିଏ ଭେଟିବାରୁ, ତା' ହାତରେ ଖବର ଦେଲେ, ମା' ଆସି ତାଙ୍କୁ ଗାଆଁକୁ ନେଇଯିବା ପାଇଁ । ତାଙ୍କ ବିରୋଧରେ ଥାନାରେ ଏତଲା ଦିଆଯାଇଥିବା କଥା ଜଣେ ପୁଲିସ ତାଙ୍କୁ ଜଣାଇଦେଲା । କେଳୁଚରଣ ତାହା ଶୁଣି ବିଚଳିତ ହେଲେନାହିଁ । ଏହାପରେ ସେ କ'ଣ କରିବେ, ସ୍ଥିର କରିସାରିଥିଲେ ।

ସେଦିନ ସମସ୍ତେ ଖାଇସାରିବା ପରେ କେଳୁଚରଣ ଘର ଭିତରକୁ ଯାଇ ନିଜେ ସାଇତି ରଖିଥିବା ପଇସାତକ ଆଣିଲେ । ଏହାପରେ ସେ ନିକଟସ୍ଥ ଗୋଟିଏ ହୋଟେଲକୁ ଯାଇ ମାଂସ ତରକାରି ଖାଇଲେ (ଗୋସ୍ୱାମୀଙ୍କ ଘରେ କେବଳ ନିରାମିଷ ଖାଦ୍ୟ ହିଁ ଦିଆଯାଉଥିଲା) । ମା'ଆସି ପହଞ୍ଚିଲା ବେଳକୁ କେଳୁଚରଣ ଗୁରୁଙ୍କ ଦାଣ୍ଡ ପିଣ୍ଡାରେ ବସିଥାନ୍ତି । ତାଙ୍କୁ ଗାଆଁକୁ ଫେରାଇନେବା ପାଇଁ ସେ ମା'ଙ୍କୁ କହିଲେ । ଏହାପରେ ସେ ଘର ଭିତରକୁ ଯାଇ ଗୁରୁ ଓ ତାଙ୍କ ପତ୍ନୀଙ୍କୁ ପ୍ରଣାମ କଲେ । ସେମାନେ ତାଙ୍କୁ ଗାଆଁକୁ ଫେରି ନଯିବା ପାଇଁ ବୁଝାଇଲେ । କିନ୍ତୁ କେଳୁଚରଣ କହିଲେ, ସେମାନଙ୍କର ତାଙ୍କ ଉପରେ ଆଉ ଆସ୍ଥା ନଥିବାରୁ ସେ ସେଠାରେ ରହିପାରିବେ ନାହିଁ । ଏଥିରେ ଗୁରୁ କ୍ଷୁବ୍ଧ ହୋଇ କହିଲେ, 'ମୋର ଏ ଅବସ୍ଥାରେ ତୁ କ'ଣ ମୋତେ ଛାଡ଼ିଯିବୁ ? ଯିବୁ ଯଦି ଯା, କିନ୍ତୁ ଆଜି ଯାହା ମୁଁ ଭୋଗୁଛି, ତୁ ମଧ୍ୟ ଦିନେ ତାହା ଭୋଗିବୁ ।'

ଗୁରୁଙ୍କ ଘର ଛାଡ଼ିବା ପରେ ସେ ମା'ଙ୍କଠାରୁ ଗୋଟିଏ ଟଙ୍କା ଆଣି ପୁଣିଥରେ 'କଙ୍ଗନ୍' ଚଳଚ୍ଚିତ୍ରଟି ଦେଖିଲେ । ଦିନଟିଏ ଜଣେ ସଂପର୍କୀୟଙ୍କ ଘରେ ରହି ତା' ପରଦିନ ଚାଲିଚାଲି ଗାଆଁକୁ ବାହାରିଲେ । ରାସ୍ତାରେ ଚାଲି ଯାଉଥିବା ସମୟରେ ପୁରୀରୁ ଯାଉଥିବା ରେଳଗାଡ଼ିଟି ତାଙ୍କୁ ଅତିକ୍ରମ କରିଗଲା । ସେହି ରେଳଗାଡ଼ିରେ ଆଶ୍ରମର କେତୋଟି ପିଲା ଯାଉଥିବାର ସେ ଦେଖିଲେ । ଗାଆଁରେ ପହଞ୍ଚି ସେ ଶୁଣିଲେ, ଗୁରୁ ଆଉ କୌଣସି ପିଲାକୁ ସେବାପାଇଁ ଅନୁମତି ଦେଇନଥିଲେ ଏବଂ ସବୁ ପିଲାଙ୍କୁ ଗାଆଁକୁ ପଠାଇ ଦେଇଥିଲେ । ଏହାପରେ ମୋହନସୁନ୍ଦର ରାସଲୀଳା ଅଭିନୟ ସଂପୂର୍ଣ୍ଣ ବନ୍ଦ କରିଦେଲେ । ଏହା ଶୁଣି କେଳୁଚରଣ ଅତ୍ୟନ୍ତ ଆଶ୍ଚର୍ଯ୍ୟ ହେଲେ ।

୧୯୪୭ରେ ପୁରୀ ଅନ୍ନପୂର୍ଣ୍ଣା 'ଏ' ଗ୍ରୁପ୍ ମଞ୍ଚରେ କେଳୁଚରଣ ଦଶାବତାର ନୃତ୍ୟ ପରିବେଷଣ କରିଥିଲେ । ଗୌରସୁନ୍ଦର ଏହା ଦେଖି ପିତାଙ୍କୁ ଜଣାଇଲେ ଯେ ସେଦିନର ସେହି ବାଳକ ଜଣେ ବିଶିଷ୍ଟ ନୃତ୍ୟଶିଳ୍ପୀ ହୋଇପାରିଛନ୍ତି । ମୋହନସୁନ୍ଦର କେଳୁଚରଣଙ୍କୁ ଡକାଇ ପଠାଇଲେ । ତାଙ୍କର ବ୍ୟାଧି ଉତ୍କଟ ହୋଇଯାଇଥିଲା । ସେ କେଳୁଚରଣଙ୍କୁ ଘା'ରେ ଭରିଯାଇଥିବା ତାଙ୍କ ହାତ ଦେଖାଇ କହିଲେ- 'ତୁ ଗଲାପରେ ମୋର ଯତ୍ନ ନେବାପାଇଁ କେହି ରହିଲେ ନାହିଁ । ତୁ ଯାହା କରିବାର କଥା କରିଛୁ । ମୁଁ ତୋର ସବୁ ଦୁର୍ଭାଗ୍ୟ ମୋ ମୁଣ୍ଡକୁ ନେଉଛି । ମୋର ଆଶୀର୍ବାଦ ନେଇ ତୁ ଜୀବନଯାତ୍ରାରେ ଆଗେଇ ଯା । ମୋ ମୃତ୍ୟୁ ପରେ ମୋର କାମକୁ ସଂପୂର୍ଣ୍ଣ କର ।'

ଜୀବନର ଶେଷ କେତେଦିନ ମୋହନସୁନ୍ଦର ଘୋର ଯନ୍ତ୍ରଣାରେ କଟାଇଥିଲେ । ତାଙ୍କ ଶେଷ ରଚିତ ଗୀତଟି ଥିଲା ମାତୃଭୂମି ଓଡ଼ିଶା ସଂପର୍କରେ-

'ହେ ମୋର ଜନନୀ ଓଡ଼ିଶା, ମୁଁ ତୋ'ଠାରୁ ବିଦାୟ ନେଉଛି । ତୁ ମୋତେ ଆଶୀର୍ବାଦ ଦେ- ଶେଷଯାଏଁ ମୁଁ ତୋର ବନ୍ଦନା କରୁଥାଏ । ଶ୍ମଶାନରୁ ମୃତ୍ୟୁଦୂତମାନେ

ବର୍ତ୍ତମାନ ପହଞ୍ଚିଯିବେ । ମୋ ଶରୀର ଅତ୍ୟନ୍ତ ଦୁର୍ବଳ । ରୋଗବ୍ୟାଧି ମୋ ଉପରେ ପ୍ରତିଶୋଧ ନେଉଛନ୍ତି ।'

ମୃତ୍ୟୁ ପୂର୍ବରୁ ମୋହନସୁନ୍ଦର ତାଙ୍କର ଆରାଧ୍ୟ ଦେବତାମାନଙ୍କର ଦର୍ଶନ ପାଇଥିଲେ । ଗୌରସୁନ୍ଦରଙ୍କ ସ୍ତ୍ରୀଙ୍କୁ ଡାକି ସେ କହିଲେ– 'ରାଧା କୃଷ୍ଣ ଆମ ଘରେ ଆସି ପହଞ୍ଚି ଗଲେଣି । ତୁ କ'ଣ ଦେଖିପାରୁ ନାହୁଁ ? ସେମାନଙ୍କୁ ବସିବା ପାଇଁ ଆସନ ଦେ ।'

ଏହାପରେ ସେ ପାଦୁକ ଟିକିଏ ଗ୍ରହଣ କଲେ ଏବଂ ତାଙ୍କ ନାତିନାତୁଣୀଙ୍କୁ ଆଶୀର୍ବାଦ କଲେ । ମୃତ୍ୟୁ ପୂର୍ବରୁ ତାଙ୍କର ତିନୋଟି ଇଚ୍ଛା ଥିଲା– ସେବା ପାଇଁ ମିଳିଥିବା ଜମିରେ ମନ୍ଦିରଟିଏ ନିର୍ମିତ ହେବ, ତାଙ୍କର ପୁତ୍ର ରାସଲୀଳା ଅଭିନୟ ଚଳାଇ ରଖିବେ ଏବଂ ତାଙ୍କର ଜଣେ ନାତିଙ୍କ ଦ୍ୱାରା ଜଗନ୍ନାଥ ଏବଂ କୁଞ୍ଜବିହାରୀଙ୍କ ସେବାନୀତି ଅନୁସୃତ ହେବ । ପଞ୍ଚମ ଦଶକର ପ୍ରଥମ ଭାଗରେ ତାଙ୍କର ପୁତ୍ର ଗୌରସୁନ୍ଦର ମୋହନ ଥିଏଟର ନାମରେ ରାସଲୀଳା ଦଳଟିଏ ଗଠନ କଲେ ଏବଂ ଆଜିପର୍ଯ୍ୟନ୍ତ ତାଙ୍କର ନାତି ବଟରାଜ ଦେବ ଜଗନ୍ନାଥ ଏବଂ କୁଞ୍ଜବିହାରୀଙ୍କର ସେବାନୀତି ଅନୁସରଣ କରିଆସୁଛନ୍ତି ।

୧୯୪୮ ମସିହା ଜାନୁଆରୀ ମାସ । ଗୁରୁଙ୍କ ମୃତ୍ୟୁର ତିନିଦିନ ପରେ କେଳୁଚରଣ ଏ ସମ୍ବାଦ ପାଇଲେ । ସେ ତେଣୁ ଗୁରୁଙ୍କର ଶବ ଶୋଭାଯାତ୍ରାରେ ଯାଇପାରି ନଥିଲେ । ତାଙ୍କ ପ୍ରିୟ ଗୁରୁଙ୍କ ସ୍ମୃତି ତାଙ୍କୁ ସାରା ଜୀବନ ଅନୁପ୍ରାଣିତ କରିଥିଲା । ପ୍ରତିଦିନ ଜଗନ୍ନାଥଙ୍କର ପୂଜା କରିବା ସମୟରେ ସେ ପ୍ରଥମେ ନିଜ ଗୁରୁଙ୍କୁ ସ୍ମରଣ କରୁଥିଲେ ।

•••

# ବିଭିନ୍ନ ଧନ୍ଦା

କେଳୁଚରଣ ରାସଲୀଳାରେ ଥିବା ସମୟରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହୋଇଯାଇଥିଲା । କିନ୍ତୁ ସେଥିପାଇଁ ତାଙ୍କୁ ବିଶେଷ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ି ନଥିଲା । କେତେବେଳେ କେମିତି ସୈନ୍ୟମାନେ ଡ୍ରିଲ୍ କରିବା କିମ୍ବା ଆକାଶରେ ଯୁଦ୍ଧବିମାନ ଉଡ଼ିବା ଦେଖାଯାଉଥିଲା । କେବେ କେବେ ଖାଦ୍ୟ ଓ ପେଟ୍ରୋଲର ଅଭାବ ଦେଖାଯାଉଥିଲା । ଜୀବନ କିନ୍ତୁ ମୋଟାମୋଟି ଆଗ ଭଳି ଚାଲିଥିଲା ।

କେଳୁଚରଣ ୧୯୪୩ରେ ଗାଆଁକୁ ଫେରିଲା ବେଳକୁ ଅବସ୍ଥା ଆଗ ଭଳି ନଥିଲା । ଚିତ୍ରକର ପରିବାରମାନେ ଆଗ ଭଳି ସେମାନଙ୍କ କାରିଗରୀ ଧନ୍ଦା ଚଳାଇ ପାରୁ ନଥିଲେ । କାହାରିକୁ ଖାଇବାକୁ ମିଳୁ ନଥିଲା । କାମ ବା ପଇସା ନଥିଲା । ଯାହା ପାଖରେ ଯାହା ଥିଲା, ପ୍ରାୟ ସବୁ ବନ୍ଧା ଦେଇ ମଧ୍ୟ ଆର୍ଥିକ ଅବସ୍ଥାରେ କିଛି ଉନ୍ନତି ହୋଇ ନଥିଲା । ପ୍ରତିଦିନ ସକାଳେ କୁଲି ସର୍ଦ୍ଦାରମାନେ ଗାଆଁକୁ ଆସି ଦୈନିକ ମାତ୍ର ପନ୍ଦର କୋଡ଼ିଏ ପଇସା ମଜୁରି ଦେଇ ପରିଶ୍ରମୀ ଲୋକମାନଙ୍କୁ କୁଲି କାମରେ ଲଗାଉଥିଲେ । ଜିନିଷପତ୍ରର ଦରଦାମ୍ ଆକାଶଛୁଆଁ ହୋଇଯାଇଥିବା ବେଳେ ଏତେ କମ୍ ମଜୁରିରେ କେହି ଚଳିପାରୁ ନଥିଲେ ।

କେଳୁଚରଣ ଗାଆଁକୁ ଫେରିବାର ଅଳ୍ପଦିନ ପରେ ତାଙ୍କ ବଡ଼ଭାଇ ତାଙ୍କୁ ପ୍ରସ୍ତାବ ଦେଲେ ପାନବରଜରେ କାମ କରିବା ପାଇଁ । ରଘୁରାଜପୁର ଓ ଚନ୍ଦନପୁର ଅଞ୍ଚଳରେ ବହୁ ପାନବରଜ ଦେଖିବାକୁ ମିଳେ । ଏ ଅଞ୍ଚଳର ମାଟି ଓ ଆର୍ଦ୍ରତା ପାନଚାଷ ପାଇଁ ଅନୁକୂଳ । ପାନ ଲଟା ଛାଇରେ ମାଡ଼େ, ବେଶୀ ଉଷ୍ଣତା ବା ଥଣ୍ଡା ସହିପାରେ ନାହିଁ । ପ୍ରାୟ ଚାରିଫୁଟ ଛାଡ଼ି ଛାଡ଼ି ପାନ ଗଛମାନ ଲଗାଯାଏ । ଗଛମାନଙ୍କ ଉପରେ ବାଉଁଶପାତିଆର ଛାମୁଣ୍ଡିଆଟିଏ ଥାଏ । ଗଛରେ ସବୁବେଳେ ପାଣି ଦେବାକୁ ପଡ଼େ । ଗଛମୂଳର ମାଟି ବଦଳାଇବାକୁ ହୁଏ । ଲଟାର ଅଗକୁ ନୂଆଁଇ ପୁଣି ମାଟିରେ ପୋତିବାକୁ ହୁଏ । ଏହିପରି ନଅ ଥର କରିବା ପରେ ଆଉ ଗୋଟିଏ ପାନ ବରଜରେ ଆଉ ଥରେ ପାନ ଚାଷ କରାଯାଏ । ବାରମ୍ବାର ଗଛମୂଳେ ମାଟି ଦିଆହେଉଥିବାରୁ ପାନବରଜସବୁ ଛୋଟିଆ ମାଟିକୁଢ଼ ପରି ଦେଖାଯାଏ । ସାଧାରଣତଃ ପାନବରଜସବୁ ପୋଖରୀ ନିକଟରେ ଥାଏ ।

ପାନଚାଷ ପାଇଁ ବିଭିନ୍ନ ପ୍ରକାରର କାର୍ଯ୍ୟ କରିବାକୁ ହୁଏ । ଏହି ଚାଷରେ ବ୍ୟବହୃତ କେତେଗୁଡ଼ିଏ ଶବ୍ଦ ହେଲା, କଣ ଛିଣ୍ଡା (ପାନଲଟା ବଢ଼ାଇବା ପାଇଁ ସରୁ ବାଉଁଶ ପୋତିବା), ନ'ଅଳା (ପାନ ଲଟାର ଅଗ ତଳକୁ ନୁଆଁଇବା), ଗୋଡ଼ ବନ୍ଧା (ବାଉଁଶର ତଳ ଅଂଶରେ ପାନ ଲଟାକୁ ଛନ୍ଦିବା), କୁଟା ବଛା (ଜମି ସଫା କରିବା), ପେଟି ବନ୍ଧା (ପାନ ଲଟାର ମଝି ଅଂଶ ବାଉଁଶରେ ବାନ୍ଧିବା), ପାନ ଲୋଡ଼ା (ପତ୍ର ତୋଳିବା) । କେଳୁଚରଣ ମୋତେ ଏହି ଶବ୍ଦସବୁର ଅର୍ଥ ବୁଝାଇଲା ବେଳେ ଚମତ୍କାର ଅଙ୍ଗଭଙ୍ଗୀ ଦେଖାଉଥିଲେ । ପାନ ବରଜରେ ପଶି ପାନଲଟାଗୁଡ଼ିକ ଦେଖିବା ପରେ ମୋର ମନେହେଲା, ସତେ ଯେପରି ସେ ପାନବରଜର କାମ ସଂପର୍କରେ ଚମତ୍କାର ନୃତ୍ୟନାଟିକାଟିଏ ରଚନା କରିଥିଲେ ।

ପାନବରଜ ଭିତରେ ପଶିଗଲେ ଗୋଟିଏ କୁହୁକ ରାଜ୍ୟରେ ଥିବା ପରି ମନେହୁଏ । ଛାମୁଣ୍ଡିଆ ମଧ୍ୟଦେଇ କ୍ଷୀଣ ଆଲୋକ ଭିତରକୁ ଆସୁଥାଏ । ଭିତରଟି ବେଶ୍ ଶୀତଳ ଓ କୁହୁଡ଼ିଆ । ପାନଲଟାଗୁଡ଼ିକ ଧାଡ଼ି ଧାଡ଼ି ଲଗା ହୋଇଥାନ୍ତି । କୌଣସି ପରୀ ରାଜ୍ୟରେ ପହଞ୍ଚିଯାଇଥିବା ପରି ମନେହୁଏ । ପାନବରଜ ଦେଖିବା ପରେ ମୋର କେଳୁଚରଣଙ୍କର ନୃତ୍ୟର କୋଡୋଟି ମୁଦ୍ରା ମନେପଡ଼ିଲା । ଯେପରି– 'ଧୀର ସମୀରେ ଯମୁନା ତୀରେ'– କୃଷ୍ଣ ରାଧାଙ୍କ ପାଇଁ ଫୁଲଶଯ୍ୟାଟିଏ ପ୍ରସ୍ତୁତ କରିବା ପାଇଁ କୋମଳ ପତ୍ରସବୁ ଧୀରେଧୀରେ ଛିଣ୍ଡାଇବା । ମୋର ମନେହେଲା, କୃଷ୍ଣ ପତ୍ର ଛିଣ୍ଡାଇବାର ଅଭିନୟ ଦେଖାଉଥିବା ବେଳେ ବୃଦ୍ଧ କେଳୁଚରଣ ଯେଭଳି ନିଜେ ପାନବରଜରେ କୋମଳ ପାନପତ୍ର ଛିଣ୍ଡାଉଥିବାର ମୁଦ୍ରା ଦେଖାଉଥିଲେ । ପାନ ଗଛର ମୂଳକୁ ବୁଢ଼ା ଆଙ୍ଗୁଠିରେ ଚାପିଧରି ଅନ୍ୟ ଆଙ୍ଗୁଠିମାନଙ୍କ ସାହାଯ୍ୟରେ ବୃତ୍ତାକାରରେ ପତ୍ରଗୁଡ଼ିକ ଛିଣ୍ଡାଯାଏ । ଶେଷରେ ସେଗୁଡ଼ିକୁ ଗୋଟିଏ ଡାଲାରେ ପଙ୍ଖା ଆକାରରେ ସଜାଇ ରଖାଯାଏ । ପାନଲଟାର ଅଗକୁ ସେହିପରି ଖୁବ୍ ଯତ୍ନର ସହିତ ତଳକୁ ନୁଆଁଯାଏ– ଯେପରି ଲଟାଟି ଭାଙ୍ଗି ନଯାଏ ।

ପାନବରଜର ବାଉଁଶ ତିଆରି ଛାମୁଣ୍ଡିଆ ଦେଖି କଟକରେ ଗୁରୁ କେଳୁଚରଣ ନୃତ୍ୟ ପାଇଁ ପ୍ରସ୍ତୁତ କରୁଥିବା ମଞ୍ଚ ମୋର ମନେପଡ଼ିଲା । ଏହିପରି ଛାମୁଣ୍ଡିଆ ତଳେ କେତେ ଚମତ୍କାର ନୃତ୍ୟ ଓ ଅଭିନୟ ଅନୁଷ୍ଠିତ ହୋଇଯାଇଛି । ଏହପରି ଛାମୁଣ୍ଡିଆ ତଳେ ରାସଲୀଳାରେ ଅଭିନୟ କରି ଗୁରୁ କେଳୁଚରଣଙ୍କ ପ୍ରତିଭା ବିକଶିତ ହୋଇଛି ।

ପାନବରଜରେ କାମ କରୁଥିବା ସମୟରେ କଠିନ ପରିଶ୍ରମ କରୁଥିବା ତରୁଣ କେଳୁଚରଣ ହୁଏତ ପାନବରଜ ଭିତରର ଚମତ୍କାର ପରିବେଶ ସଂପର୍କରେ ସଚେତନ ନଥିବେ । ଦିନକୁ ମାତ୍ର କୋଡ଼ିଏ ଅଣା ପାରିଶ୍ରମିକରେ ତାଙ୍କୁ ଶହେ ପଚିଶି ବାଲ୍‌ଟି ପାଣି ହାତରେ ବୋହି ବୋହି ପାନଗଛ ମୂଳେ ଢାଳିବାକୁ ପଡୁଥିବ । ବାଲ୍‌ଟିଏ ପାଣି ଆଣିବାକୁ

ହୁଏତ ପଚିଶିରୁ ତିରିଶିଟି ପାହାଚ ଓହ୍ଲାଇ ପୋଖରୀ ପାଖକୁ ଯିବାକୁ ପଡୁଥିବ । ଏହି ସାମାନ୍ୟ ପାରିଶ୍ରମିକରେ ପୁଣି ନୂଆ ମାଟି ଖୋଳି ପାନଗଛ ମୂଳେ ଦେବାକୁ ପଡୁଥିବ ।

ଦିନର କଠିନ ଶ୍ରମ ପରେ ସଂଧ୍ୟାବେଳେ କେଳୁଚରଣ ସମୟ କଟାଉଥିଲେ ମୋହନ ମହାରଣାଙ୍କ ଆଖଡ଼ାରେ । ଆଖଡ଼ାଟି ଗୋପୀନାଥ ମନ୍ଦିର ପାର୍ଶ୍ୱରେ । ବଳଭଦ୍ର ସାହୁ ରଘୁରାଜପୁର ଗ୍ରାମ ଛାଡ଼ିବା ପରେ ଏହାହିଁ ଥିଲା ଗ୍ରାମର ଏକମାତ୍ର ଆଖଡ଼ା । ସଂଧ୍ୟାବେଳେ ଏଠାରେ ଗାୟକ, ଅଭିନେତା, ଗୋଟିପୁଅ- ନର୍ତ୍ତକମାନେ ଏକାଠି ହେଉଥିଲେ । ମୋହନସୁନ୍ଦର ଗୋସ୍ୱାମୀଙ୍କ ଆଶ୍ରମରେ ଦଶବର୍ଷ ଧରି ଶିଖିଥିବା ଅଭିନୟ ସେଠାରେ ସେ ଦେଖାଉଥିଲେ ଏବଂ ମର୍ଦ୍ଦଳ ବାଦନର ବିଭିନ୍ନ ରୀତି ଶିକ୍ଷା କରୁଥିଲେ । ଅଗାଧୁ ମହାରଣା ସେଠାରେ ଥିଲେ ମୁଖ୍ୟ ବାଦକ । ସେ ମଧ୍ୟ ମୋହନସୁନ୍ଦରଙ୍କ ରାସଦଳରେ ଖୋଳ ବଜାଇବା ଶିଖିଥିଲେ ।

କେଳୁଚରଣଙ୍କ ବଡ଼ଭାଇ ଗଣେଶ କେବେ କେବେ ବିଭିନ୍ନ ଗ୍ରାମକୁ ଯାଇ ଗୋଟିପୁଅ ନାଚ ସମୟରେ ମର୍ଦ୍ଦଳ ବଜାଉଥିଲେ । କେଳୁଚରଣ ମଧ୍ୟ ଭାଇଙ୍କ ସହିତ ଯାଉଥିଲେ । ଥରେ କେଳୁଚରଣ ଓ ମୁଁ କାର୍ ଯୋଗେ ରଘୁରାଜପୁର ଯାଉଥିବା ସମୟରେ ସେ ତାଙ୍କର ଏହି ଯାତ୍ରା ଅନୁଭୂତି ନିମ୍ନମତେ ବର୍ଣ୍ଣନା କରିଥିଲେ :

'ଦିନେ ସକାଳ ଚାରିଟାରେ ଆମେ ଗାଆଁ ଛାଡ଼ି, ବାଟରେ ବିଶ୍ରାମ ନନେଇ ତିରିଶି ମାଇଲ୍ ଚାଲି ଚାଲି ସଂଧ୍ୟା ପାଞ୍ଚଟା ବେଳକୁ ପିପିଲିରେ ପହଞ୍ଚିଲୁ । ମୋ ଭାଇ ଗଣେଶ ଖୁବ୍ ଶୀଘ୍ର ଶୀଘ୍ର ଚାଲେ । ମୁଁ ତା ସାଙ୍ଗେ ପାଦ ମିଳାଇ ଚାଲିପାରୁନଥିଲି । ବେଳେବେଳେ ସେ ବାଟରେ ଅଟକି ବିଡ଼ିରେ ନିଆଁ ଲଗାଏ କି ପାନ ଖଣ୍ଡିଏ ଭାଙ୍ଗେ । ସେତେବେଳେ ମୁଁ ଟିକିଏ ଆଗକୁ ଚାଲିଯାଏ । କିନ୍ତୁ ସେ ପୁଣି ମୋତେ ଅତିକ୍ରମ କରିଯାଏ । ମୁଁ ଦଉଡ଼ି ଦଉଡ଼ି ତା' ସାଙ୍ଗେ ମିଶେ । ଏହିପରି ଚାଲି ଚାଲି ଆମେ ସାକ୍ଷୀଗୋପାଳ ରେଳ ଷ୍ଟେସନକୁ ଆସିଲୁ ଓ ସେଠାରୁ ପୁରୀ ଯାଉଥିବା ମୁଖ୍ୟ ସଡ଼କ ଧରିଲୁ । ଏହିଠାରେ ପାଖରେ ଥିବା ଗୋଟିଏ ପୋଖରୀରେ ମୁଁ ଗାଧୋଇଲି ଓ ଗୋଟିଏ କଦଳୀ ଗଛ ମୂଳେ ବସିପଡ଼ିଲି । ଆଉ ଆଗକୁ ଚାଲିବାର ମୋର ଶକ୍ତି ନଥିଲା । ଯେଉଁ ଗାଆଁରେ ଗୋଟିପୁଅ ନାଚ ହେବ, ସେଠାରେ ପହଞ୍ଚିଲା ବେଳକୁ ମୋ ପାଦ ଦୁଇଟା ଫୁଲି ଯାଇଥାଏ । ରାତିସାରା ମୁଁ ଗୋଟିଏ ଝରକା ଉପରକୁ ମୋ ପାଦ ଦୁଇଟା ଟେକି ଶୋଇ ରହିଲି । ନାଚ ଆଗରୁ ଆମକୁ ଦୁଇଦିନ ରିହର୍ସାଲ୍ କରିବାକୁ ପଡ଼ିଲା । ତାହାପରେ ପୁଣି ଆଗ ପରି ଚାଲିଚାଲି ଆମେ ଗାଆଁକୁ ଫେରିଲୁ ।'

ଏହି ସମୟରେ କେଳୁଚରଣ କେତେଗୁଡ଼ିଏ ମୂଳ ବୋଲ୍ ଶିଖିଥିଲେ । ଏହି ବୋଲ୍ ଉପରେ ଆଧାରିତ ହୋଇ ପଞ୍ଚମ ଦଶକର ଶେଷ ଭାଗରେ ଓଡ଼ିଶୀ ନୃତ୍ୟର ମଙ୍ଗଳାଚରଣ ଏବଂ ବଟୁ ସଂରଚିତ ହେଲା । ଉଦାହରଣ ସ୍ୱରୂପ, ଗୋଟିପୁଅ ନୃତ୍ୟରେ

ପୂର୍ବରୁ 'ଥାରି କିଟ ଧି ଦଲାଙ୍ଗ ତା ଥା' କିମ୍ବା 'ତା କଡ଼ତାକ ଧି କଡ଼ତାକ ତା ଧି କଡ଼ତାକ ଜେ କେଟେ ତାକ ଜେ ଜେ ନମ୍ ତା ଥା' ପ୍ରଭୃତି ଛନ୍ଦ ପ୍ରକ୍ରିୟା ବ୍ୟବହୃତ ହେଉଥିଲା । କିନ୍ତୁ ଏସବୁର ନିର୍ଦ୍ଦିଷ୍ଟ ତାଳ ରୂପରେ ବିଭାଗୀକରଣ ହୋଇ ନଥିଲା । ପଞ୍ଚମ ଦଶକର ଶେଷ ଭାଗରେ କେତେଜଣଙ୍କ ଉଦ୍ୟମରେ ଓଡ଼ିଶୀ ନୃତ୍ୟର ମୂଳ ପଦ୍ଧତି ସ୍ଥିରୀକୃତ ହେଲା ।

ରାସଲୀଳା ଦଳରେ ଅଭିନୟ ସମୟରେ କେଳୁଚରଣ କେତେକ ବାଦ୍ୟଯନ୍ତ୍ର ବ୍ୟବହାର ଜାଣିଥିଲେ ମଧ୍ୟ ମର୍ଦ୍ଦଳର ବିଶେଷ ବ୍ୟବହାର କରୁ ନଥିଲେ । ପରବର୍ତ୍ତୀ ଅବସ୍ଥାରେ ମର୍ଦ୍ଦଳ ବାଦ୍ୟଯନ୍ତ୍ର ପାଇଁ ସେ ବିଶେଷ ଖ୍ୟାତିଲାଭ କଲେ । ପିଲାଦିନେ ବାପା ଓ କକାଙ୍କଠାରୁ ଖୋଳ ବଜାଇବା ଶିଖିଥିଲେ । ପରେ ଅଗାଧୁ ମହାରଣା ଓ ମୋହନସୁନ୍ଦର ଗୋସ୍ୱାମୀଙ୍କ ତତ୍ତ୍ୱାବଧାନରେ ଖୋଳ ବଜାଉଥିଲେ । ଏହି ସମୟରେ କ୍ଷେତ୍ରମୋହନ କରଙ୍କଠାରୁ ତାବ୍‌ଲା ବଜାଇବା ମଧ୍ୟ ଶିଖିଲେ । କ୍ଷେତ୍ରମୋହନ କର ଥିଲେ ପୁରୀର ଓସ୍ତାଦ୍ ତାବ୍‌ଲା ବାଦକ । କେବେ କେବେ କେଳୁଚରଣ ମୋହନସୁନ୍ଦର ଗୋସ୍ୱାମୀଙ୍କ ସହିତ କ୍ଷେତ୍ରମୋହନ କରଙ୍କ ଘରକୁ ଯାଇ ତାଙ୍କର ତାବ୍‌ଲା ବଜାଇବା ଢଙ୍ଗ ଓ ଅଙ୍ଗୁଳି ଚାଳନା ଲକ୍ଷ୍ୟ କରୁଥିଲେ । କ୍ଷେତ୍ରମୋହନ କରଙ୍କ ସମ୍ମୁଖରେ ତାବ୍‌ଲା ବଜାଇବା ପାଇଁ ତାଙ୍କର ସାହସ ନଥିଲା । ଆଶ୍ରମକୁ ଫେରିବା ପରେ ସେ ତାବ୍‌ଲା ବଜାଇବା ଅଭ୍ୟାସ କରୁଥିଲେ ।

ଜୀବନର ପ୍ରଥମ ତିରିଶି ବର୍ଷ କେଳୁଚରଣ ଉଭୟ ଖୋଳ ଓ ତାବ୍‌ଲା ବଜାଇ ନିଜର ଛନ୍ଦ ଜ୍ଞାନର ଅଭିବୃଦ୍ଧି କରିଥିଲେ । ପଞ୍ଚମ ଦଶକର ପ୍ରଥମ ଭାଗରେ ଓଡ଼ିଶୀ ନୃତ୍ୟର ବିକାଶ ଘଟିବା ସହିତ ସେ ମର୍ଦ୍ଦଳ ବଜାଇବାରେ ଅଭ୍ୟସ୍ତ ହେଲେ । ଏହା ତାଙ୍କ ଜୀବନର ଦ୍ୱିତୀୟ ଭାଗରେ ଘଟିଥିଲା । ମର୍ଦ୍ଦଳ ବଜାଇବା ପାଇଁ ସେ କାହାଠାରୁ ଶିକ୍ଷା ଲାଭ କରିନଥିଲେ । ଖୋଳ ଓ ତାବ୍‌ଲା ବଜାଇ ସେ ଯାହା ଶିଖିଥିଲେ, ସେହି ରୀତିକୁ ମର୍ଦ୍ଦଳର ବୋଲ୍‌ରେ ରୂପାନ୍ତରିତ କରିଥିଲେ । ସେ ସମୟରେ ଅନ୍ୟ କାହାଠାରୁ ଶିକ୍ଷାଲାଭ କରିବା ଅପେକ୍ଷା ବାଦ୍ୟଯନ୍ତ୍ର ବଜାଇବା ପାଇଁ ନିଜର ପ୍ରତିଭା ଓ ସାମର୍ଥ୍ୟ ଉପରେ ଅଧିକ ନିର୍ଭର କରିବାକୁ ପଡୁଥିଲା । ଷୋଡ଼ଶ ଶତାବ୍ଦୀ ପରଠାରୁ ଓଡ଼ିଶା ବିଦେଶୀମାନଙ୍କ ଦ୍ୱାରା ଶାସିତ ହୋଇଆସିଥିବାରୁ ଏହାର ପାରମ୍ପରିକ କଳା ବିଶେଷ କ୍ଷତିଗ୍ରସ୍ତ ହୋଇଥିଲା । ପାରମ୍ପରିକ ଜ୍ଞାନ ଓ କୌଶଳ ଏହାଦ୍ୱାରା କେତେକାଂଶରେ ତାହାର ମୌଳିକତା ହରାଇଥିଲା । ତଥାପି ଯାହା ଅକ୍ଷୁର୍ଣ୍ଣ ଥିଲା, ତାହାକୁ ବଞ୍ଚାଇ ରଖିବା ପାଇଁ ଯଥେଷ୍ଟ ପ୍ରତିଭା ତଥା ନିଷ୍ଠାର ଆବଶ୍ୟକତା ଥିଲା ।

ପାରମ୍ପରିକ କଳାକୁ ବଞ୍ଚାଇ ରଖିବାର କୌଶଳ କେଳୁଚରଣଙ୍କୁ ଜଣା ଥିଲା । ତଥାପି ପାନବରଜରେ କାମ ନଥିବା ସମୟରେ ସେ ରାସ୍ତାକଡ଼ରେ ବସି ପାନପତ୍ର ବିକ୍ରି କରୁଥିଲେ । କେହି ଚିହ୍ନିପାରିବେ ନାହିଁ ବୋଲି ସେ ନିଜର ଦାଢ଼ି ଓ ବାଳ ବଢ଼ାଇଥିଲେ । ଏଥିରୁ ପ୍ରାୟ କୌଣସି ଉପାର୍ଜନ ହେଉନଥିଲା । କେହି ତାଙ୍କୁ ଚିହ୍ନନ୍ତୁ ବୋଲି ସେ ଚାହୁଁ

ନଥିଲେ । ତଥାପି କେବେ କେବେ କେହି ଜଣେ ତାଙ୍କୁ ଚିହ୍ନି ପାଟି କରୁଥିଲା– 'ହେଇ ଦେଖ, ନିଜେ କୃଷ୍ଣ ପାନ ବିକୁଛନ୍ତି ।'

ଦିନେ ଜଣେ ବୁଢ଼ୀ ତାଙ୍କୁ ରାସ୍ତାକଡ଼ରେ ଦେଖି ଚିହ୍ନି ପାରିଲେ । ସେ ବୁଢ଼ୀଙ୍କୁ କେଳୁଚରଣ ଡାକୁଥିଲେ, ଗୁରୁମା' । ଗୁରୁମା' ଏକ ସମୟରେ ମୋହନ ସୁନ୍ଦରଙ୍କ ରାସଦଳରେ କାର୍ଯ୍ୟ କରୁଥିଲେ । ସେ ଥିଲେ କେଳୁଚରଣଙ୍କ ମା'ଙ୍କ ଭଳି । ଗୁରୁମା' କେଳୁଚରଣଙ୍କ ଠାରୁ ପାନଗୁଡ଼ିକ ନେଇ ରାସ୍ତାରେ ବୁଲୁଥିବା ଗୋଟିଏ ଗାଈକୁ ଖୁଆଇଦେଲେ ଏବଂ କେଳୁଚରଣଙ୍କୁ କିଛି ଟଙ୍କା ଦେଲେ । ସେହିଦିନଠାରୁ କେଳୁଚରଣ ଆଉ ପାନ ବିକିଲେ ନାହିଁ ।

ରାସଲୀଳା ଦଳ ଛାଡ଼ିବାର ଅନେକ ମାସ ବିତି ଯାଇଥାଏ । ହଠାତ୍ ଭାଗ୍ୟଦେବୀ ତାଙ୍କ ଉପରେ ପ୍ରସନ୍ନ ହେଲେ । ଲୋକି ଭାଇନା ନାମକ ଜଣେ ବ୍ୟକ୍ତି ତାଙ୍କୁ ପାନବରଜରେ କାମ କରିବାକୁ ଡାକିଲେ । ଲୋକି ଭାଇନା ଥିଲେ ଜଣେ ସଂଗୀତପ୍ରେମୀ । ସେ ବାଦ୍ୟଯନ୍ତ୍ର ଭଲ ଭାବରେ ବଜାଇ ପାରୁଥିଲେ । କେଳୁଚରଣ ପାନବରଜରେ ପାଣି ମଡ଼ାଉଥିବା ବେଳେ ଗୀତ ଗାଉଥିବା ସେ ଶୁଣିଥିଲେ । କେଳୁଚରଣ ଦିନେ ପାନବରଜରେ କାମ କରିବା ପରେ ଲୋକି ଭାଇନା ତାଙ୍କୁ ମଜୁରି ବାବଦରେ କୋଡ଼ିଏ ଅଣା ନଦେଇ, ଦେଲେ ଶହେ ଟଙ୍କା । କହିଲେ– ସେ ଆଉ ମଜୁରିଆ ଭାବରେ କାମ ନକରି ସଂଗୀତ ଗାନକୁ ବୃତ୍ତି ଭାବରେ ଗ୍ରହଣ କରନ୍ତୁ । ପାଇଥିବା ଅର୍ଥକୁ ଠିକ୍ ଭାବରେ ଖର୍ଚ୍ଚ କରନ୍ତୁ ଏବଂ ଅର୍ଥ ସରିଗଲେ ପୁଣି ତାଙ୍କ ନିକଟକୁ ଆସନ୍ତୁ ।

କେତେଦିନ ପରେ କେଳୁଚରଣଙ୍କ କର୍ଣ୍ଣମନ୍ତ୍ରଗୁରୁ ତାଙ୍କୁ କହିଲେ– କଟକର ଖାନ୍ ନଗରର ବନମାଳୀ ସାହୁ ନାମକ ଜଣେ ଜମିଦାରଙ୍କୁ କୁଷ୍ଠରୋଗ ହୋଇଛି । ତାଙ୍କ ଘରେ କେହି ନିୟମିତ ନାମ ସଂକୀର୍ତ୍ତନ କଲେ ସେ ତାଙ୍କୁ ମାସିକ ତିନିଶହ ଟଙ୍କା ବେତନ ଦେବେ ବୋଲି ସ୍ଥିର କରିଛନ୍ତି । କେଳୁଚରଣ ବନମାଳୀ ସାହୁଙ୍କ ଘରେ ଗୋଟିଏ ମାସ ନାମ ସଂକୀର୍ତ୍ତନ କଲେ । ମାସ ଶେଷରେ ଜମିଦାର ତାଙ୍କ ଉପରେ ଖୁସି ହୋଇ ତାଙ୍କୁ ତିନିଶହ ଟଙ୍କା ବଦଳରେ ଦେଲେ ଏକହଜାର ଏକ ଟଙ୍କା ।

ସେ ସମୟରେ କଟକ କେବଳ ଓଡ଼ିଶାର ରାଜଧାନୀ ନଥିଲା, ଏହା ମଧ୍ୟ ଥିଲା ଶିକ୍ଷା ଓ ସଂସ୍କୃତିର ମୁଖ୍ୟ କେନ୍ଦ୍ର । ମୋଗଲ, ମରହଟ୍ଟା ଓ ବ୍ରିଟିଶ୍ ଅମଳରେ କଟକ ହିଁ ଥିଲା ଓଡ଼ିଶା ପ୍ରଶାସନର କେନ୍ଦ୍ର । ଉତ୍ତରରେ ମହାନଦୀ ଓ ଦକ୍ଷିଣରେ କାଠଯୋଡ଼ି ନଦୀ ପ୍ରବାହିତ ହେଉଥିବାରୁ ଯାତାୟାତ ଦୃଷ୍ଟିରୁ କଟକ ଥିଲା ଏକ ସୁବିଧାଜନକ ସହର । ବ୍ରିଟିଶ୍ ଅମଳରେ କଟକର ଯୋବ୍ରାଠାରେ ଗୋଟିଏ ମେଡିକାଲ ଓ ଗୋଟିଏ ଇଞ୍ଜିନିୟରିଂ ସ୍କୁଲ ସ୍ଥାପିତ ହୋଇଥିଲା । କଲିକତାରୁ ଆସୁଥିବା ଷ୍ଟିମର୍‌ମାନ ଏହି ଯୋବ୍ରାରେ ପହଞ୍ଚୁଥିଲେ ।

୧୮୭୦ ମସିହାରେ ବିଜ୍ଞ ଇଂରେଜ କମିଶନର ଟି.ଇ. ରେଭନ୍ସା କଟକରେ ଓଡ଼ିଶାର ପ୍ରଥମ କଲେଜ ପ୍ରତିଷ୍ଠା କଲେ । କଲେଜଟି ତାଙ୍କ ନାମରେ ନାମିତ ହୋଇଛି ।

୧୯୦୩ ମସିହାରେ ଓଡ଼ିଶାର ପ୍ରଥମ ସାହିତ୍ୟ ଅନୁଷ୍ଠାନ ଉତ୍କଳ ସାହିତ୍ୟ ସମାଜ କାର୍ଯ୍ୟ ଆରମ୍ଭ କଲା କଟକର ଶ୍ରୀରାମଚନ୍ଦ୍ର ଭବନରେ । ଏହାର ମୂଳଲକ୍ଷ୍ୟ ଥିଲା, ଓଡ଼ିଆ ସାହିତ୍ୟର ଐତିହ୍ୟକୁ ଲୋକଲୋଚନକୁ ଆଣିବା । ୧୯୩୩ରେ ଉତ୍କଳ ସାହିତ୍ୟ ସମାଜର ଗୋଟିଏ ଶାଖା ଭାବରେ ଉତ୍କଳ ସଂଗୀତ ସମାଜ ପ୍ରତିଷ୍ଠା କରାଗଲା । ଓଡ଼ିଶୀ ସଂଗୀତର ଜଣେ ବିଦ୍ୱାନ୍ ସିଂହାରୀ ଶ୍ୟାମସୁନ୍ଦର କର ଏଠାରେ ଶିକ୍ଷାଦାନ କରୁଥିଲେ ।

ଓଡ଼ିଆ ସାହିତ୍ୟ ଓ ଅଭିନୟ କଳାର ପ୍ରମୁଖ ପୁରୁଷ କାଳୀଚରଣ ପଟ୍ଟନାୟକ ପୁରୀରେ କିଛିଦିନ କାର୍ଯ୍ୟ କରିବା ପରେ ତାଙ୍କ ରାସଲୀଳା ଦଳକୁ କଟକକୁ ଉଠାଇ ଆଣିଲେ । ୧୯୩୯ ମସିହାରେ ସେ ପ୍ରତିଷ୍ଠା କଲେ ଓଡ଼ିଶା ଥିଏଟର୍ । ଏହି ଥିଏଟର୍ ଓଡ଼ିଶାର ନାଟ୍ୟ ଜଗତରେ ଚହଳ ସୃଷ୍ଟି କଲା । ତାଙ୍କର ସବୁଠାରୁ ସଫଳ ନାଟକ 'ଚକ୍ରୀ' (୧୯୪୪) କଟକର ବାଙ୍କା ବଜାରରେ ଅଭିନୀତ ହୋଇ ଦର୍ଶକମାନଙ୍କୁ ମନ୍ତ୍ରମୁଗ୍ଧ କରିଥିଲା । ବନମାଳୀ ସାହୁଙ୍କ ଘରେ ରହୁଥିବା ସମୟରେ ଦିନେ ସଂଧ୍ୟାରେ କେଳୁଚରଣ ଏହି ନାଟକଟି ଦେଖିଥିଲେ ।

ଗୁରୁ ମୋହନସୁନ୍ଦର ଗୋସ୍ୱାମୀଙ୍କ ରାସଲୀଳାର ଆଲୋକ ବ୍ୟବସ୍ଥା ତଥା ମଞ୍ଚସଜ୍ଜା ତୁଳନାରେ କାଳୀଚରଣ ପଟ୍ଟନାୟକଙ୍କ ମଞ୍ଚ ତଥା ଆଲୋକ ବ୍ୟବସ୍ଥା, ଅଭିନୟ ଇତ୍ୟାଦି ଖୁବ୍ ଉଚ୍ଚକୋଟୀର ଥିଲା । ଏହା ଲକ୍ଷ୍ୟକରି କେଳୁଚରଣ ଏତେ ମୁଗ୍ଧ ହୋଇଗଲେ ଯେ, ଥିଏଟର୍ ହଲ୍ ସମ୍ମୁଖରେ ବେଶ୍ କିଛି ସମୟ ପ୍ରସ୍ତର ମୂର୍ତ୍ତି ଭଳି ଠିଆ ହୋଇ ରହିଲେ ।

ନାଟକଟିର ନିର୍ଦ୍ଦେଶକ ଦୁର୍ଲଭ ଚନ୍ଦ୍ର ସିଂହ କେଳୁଚରଣଙ୍କୁ ଏ ଅବସ୍ଥାରେ ଚିହ୍ନିପାରିଲେ । କେଳୁଚରଣଙ୍କୁ ଆଗରୁ ସେ ମୋହନସୁନ୍ଦରଙ୍କ ରାସଲୀଳାରେ କଟକରେ ଅଭିନୟ କରୁଥିବାର ଦେଖିଥିଲେ । ଥରେ ସେ ଓ କାଳୀଚରଣ ପଟ୍ଟନାୟକ ମୋହନସୁନ୍ଦରଙ୍କୁ ଭେଟିଥିଲେ କାଳୀଚରଣଙ୍କର ଜଣେ ଶିଷ୍ୟକୁ ରାସଲୀଳରେ ଅଭିନୟ କରିବାକୁ ସୁଯୋଗ ଦେବା ପାଇଁ । ବର୍ତ୍ତମାନ କେଳୁଚରଣଙ୍କ ମୁଖର ଭଙ୍ଗୀ ଦେଖି ସେ କ'ଣ କରୁଛନ୍ତି ବୋଲି ଦୁର୍ଲଭ ପଚାରିଲେ । ସେ ମୋହନସୁନ୍ଦର ଗୋସ୍ୱାମୀଙ୍କ ରାସ ଦଳରେ ନଥିବାର ଜାଣି ତାଙ୍କୁ ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚରେ କାର୍ଯ୍ୟ କରିବାକୁ କହିଲେ । କେଳୁଚରଣ ସଙ୍ଗେ ସଙ୍ଗେ ରାଜି ହୋଇଗଲେ । ଖାଲି ଅଳ୍ପଦିନ ପାଇଁ ସେ ଗାଆଁକୁ ଯାଇ ସାମାନ୍ୟ ଅର୍ଜନ କରିଥିବା ଟଙ୍କା ମାଆଙ୍କୁ ଦେଇ କଟକ ଫେରିଆସିଲେ । ନୂତନ ଉତ୍ସାହ ଓ ଅନୁଭୂତିର ଆଶାରେ ସେ ଉଦ୍‌ବେଳିତ ହେଉଥିଲେ ।

ମାସକୁ ସାତଟଙ୍କା ବେତନରେ କେଳୁଚରଣଙ୍କୁ ଅନେକ କାମ କରିବାକୁ ହେଉଥିଲା । ମଞ୍ଚର ଉପକରଣ ସଜାଇ ରଖିବା, ଅଭିନେତା-ଅଭିନେତ୍ରୀମାନଙ୍କୁ ବେଶ ପିନ୍ଧାଇବା, ଗୀତ ଗାଇବା ଓ ତାବ୍‌ଲା ବଜାଇବା- ସବୁକିଛି ତାଙ୍କୁ କରିବାକୁ ପଡୁଥିଲା । 'ବନମାଳା' ନାମକ ନାଟକରେ ସେ ସାମୁଏଲ ସାହୁ (ବାବି)ଙ୍କର ଚାକର ଭୂମିକାରେ ଅଭିନୟ କରିଥିଲେ । ବାବିଙ୍କ ଭୂମିକାଟି ଥିଲା ଜମିଦାରର । କେଳୁଚରଣଙ୍କ ଭୂମିକା ହାସ୍ୟ ଉଦ୍ଦୀପକ ଥିଲା । ସେ ଟେବୁଲଟିଏ ସଫା କରୁଥିବା ସମୟରେ ଟେବୁଲ ଉଦ୍ଦେଶ୍ୟରେ ପ୍ରେମ ଗୀତଟିଏ ଗାଇ ତାହାକୁ ଆଲିଙ୍ଗନ କରୁଥିଲେ । ଏହି ସମୟରେ ଜମିଦାର ଆସି ପଚାରିଲେ- 'ତୁ କ'ଣ କରୁଛୁ ?' ଚାକର କହିଲା- 'ହଜୁର୍, ଟେବୁଲ୍ ଛଡ଼ା ମୁଁ ଆଉ କାହାକୁ ବା ଆଲିଙ୍ଗନ କରିପାରିବି ?' ଏତିକି କହିସାରି ସେ ମଞ୍ଚର ଗୋଟିଏ କଡ଼ରେ ତାବ୍‌ଲା ଶିକ୍ଷକ ହରିହର ରାଉତଙ୍କ ପାଖରେ ବସି ତାବ୍‌ଲା ବଜାଉଥିଲେ ।

କେଳୁଚରଣ ଓଡ଼ିଶା ଥିଏଟର୍‌ରେ ପ୍ରାୟ ଗୋଟିଏ ବର୍ଷ କାର୍ଯ୍ୟ କରିଥିଲେ । ଏହି ସମୟରେ ସେ ଅନେକ କିଛି ଶିଖିଥିଲେ ଅବଶ୍ୟ, କିନ୍ତୁ ତାଙ୍କ ପ୍ରତିଭାର ପୂର୍ଣ୍ଣ ବିକାଶ ହୋଇପାରୁ ନାହିଁ ବୋଲି ସେ ମନେ କରୁଥିଲେ । ଦିନେ ସଂଧ୍ୟାରେ ତାବ୍‌ଲା ବଜାଉଥିବା ସମୟରେ ତାଙ୍କୁ ଜ୍ୱର ମାଡ଼ିଆସିଲା । ପରେ ଜଣାପଡ଼ିଲା, ତାଙ୍କୁ ବସନ୍ତ ହୋଇଛି । ଜ୍ୱର କିଛିଦିନ ଲାଗିରହିଲା । କାଳୀଚରଣ ପଟ୍ଟନାୟକ ତାଙ୍କର ବିଶେଷ ଯତ୍ନ ନେଲେନାହିଁ ବୋଲି ସେ ମନେକଲେ । ସେ ଅବଶ୍ୟ ତାଙ୍କୁ ପ୍ରଥମେ ପ୍ରଥମେ ଦେଖିବାକୁ ଆସୁଥିଲେ ଓ ତାଙ୍କ ପାଇଁ ହୋମିଓପ୍ୟାଥିକ ଔଷଧର ବ୍ୟବସ୍ଥା କରିଥିଲେ । ହଠାତ୍ ଜ୍ୱର ଆସିବାରୁ ସେ ମଞ୍ଚ ଛାଡ଼ିବା ସମୟରେ କାଳୀଚରଣ ବିରକ୍ତ ହୋଇଉଠିଥିଲେ । ସେହି ସମୟରେ ହିଁ କେଳୁଚରଣ ଭାବିଥିଲେ – ସେ ଆଉ ଓଡ଼ିଶା ଥିଏଟ୍‌ର୍‌ରେ କାର୍ଯ୍ୟ କରିବେ ନାହିଁ । ତାଙ୍କ ପ୍ରତିଭାର ବିକାଶ ପାଇଁ ଓଡ଼ିଶା ଥିଏଟର୍‌ରେ ବିଶେଷ ସୁଯୋଗ ନଥିଲା ବୋଲି ସେ ଆଗରୁ ଜାଣିଥିଲେ ।

ଗାଆଁରେ କେଳୁଚରଣଙ୍କୁ ବେଶୀ ଦିନ ରହିବାକୁ ହୋଇନଥିଲା । ଅଳ୍ପ କେତେଦିନ ପରେ ବୃନ୍ଦନାଥ ରାଉତରାୟ ନାମକ ଜଣେ ବ୍ୟକ୍ତି ପୁରୀରେ ଗୋଟିଏ ରାସଲୀଳା ଦଳର ନିର୍ଦ୍ଦେଶକ ହେବାକୁ ତାଙ୍କୁ ଅନୁରୋଧ କଲେ । ମାତ୍ର ଏକୋଇଶି ବର୍ଷ ବୟସରେ କେଳୁଚରଣ ପ୍ରଥମଥର ପାଇଁ ଗୋଟିଏ ରାସଲୀଳା ଦଳର ଦାୟିତ୍ୱରେ ରହିଲେ । ଏହାର ନାମ ଥିଲା ରାଧାକାନ୍ତ ରାସଲୀଳା ଦଳ । ବଡ଼ଦାଣ୍ଡର ପୋଲିସ୍ ଥାନା ନିକଟରେ ମଞ୍ଚଟିଏ ନିର୍ମିତ ହୋଇ ଏହି ଦଳ ଅଭିନୟ ଆରମ୍ଭ କଲେ । ଏହାଦ୍ୱାରା ଅଭିନୀତ 'ମାନଭଞ୍ଜନ' ଓ 'ବାଲ୍ୟଲୀଳା' ବହୁ ଦର୍ଶକଙ୍କୁ ଆକୃଷ୍ଟ କଲା । କେଳୁଚରଣଙ୍କ ମାସିକ ଉପାର୍ଜନ ହେଲା ତିନିଶହ ଟଙ୍କା । ତାଙ୍କର ସଫଳତା ଦେଖି ଅନ୍ନପୂର୍ଣ୍ଣା ଥିଏଟର 'କ'ର ମାଲିକ ବାଉରୀବନ୍ଧୁ ମହାନ୍ତି ତାଙ୍କୁ ତାଙ୍କ ଦଳରେ ଯୋଗଦେବା ପାଇଁ ଅନୁରୋଧ କଲେ ।

ବାଉରୀବନ୍ଧୁଙ୍କ ରଙ୍ଗମଞ୍ଚଟି ଥାଏ କେଳୁଚରଣଙ୍କ ରାସଦଳର ସମ୍ମୁଖରେ– ରାସ୍ତାର ଅନ୍ୟ ପାର୍ଶ୍ୱରେ । ଦର୍ଶକମାନେ କେଳୁଚରଣଙ୍କ ରାସଦଳ ପ୍ରତି ଆକୃଷ୍ଟ ହେଉଥିବାରୁ ବାଉରୀବନ୍ଧୁ ଏପରି ପ୍ରସ୍ତାବ ଦେଇଥିଲେ ।

ଚତୁର୍ଥ ଦଶକ ଆରମ୍ଭ ବେଳକୁ ଅନ୍ନପୂର୍ଣ୍ଣା ଥିଏଟର 'କ' ଝିଅମାନଙ୍କୁ ମଞ୍ଚ ଉପରେ ନାଚ ଦେଖାଇବାକୁ ତାଲିମ ଦେଲା । ଲଘୁ ସଂଗୀତ ସହିତ ସେମାନେ ଆଦିବାସୀ ଓ ଲୋକନୃତ୍ୟ ମିଶ୍ରଣରେ ଆଧୁନିକ ନୃତ୍ୟ ପ୍ରଦର୍ଶନ କରିବା ଆରମ୍ଭ କଲେ । ଏଯାଏଁ କେବଳ ପୁଅମାନେ ଝିଅ ବେଶରେ ନାଚ ଦେଖାଉଥିଲେ । ମଞ୍ଚ ଉପରେ ଝିଅମାନେ ନୂଆ ଢଙ୍ଗରେ ନାଚ ଦେଖାଇବା ଦର୍ଶକମାନଙ୍କର ପସନ୍ଦ ହେଲା । କେଳୁଚରଣ ମଧ୍ୟ ଏହା ପସନ୍ଦ କଲେ । କିନ୍ତୁ ତାଙ୍କ ଅଭିନୟର ମୂଳ ପ୍ରେରଣା ଥିଲା ଭକ୍ତିଭାବ । ଏହି ନୂଆ ପ୍ରକାର ଅଭିନୟକୁ ସେ ପ୍ରଥମେ ଆପଣାର କରିପାରିଲେ ନାହିଁ ।

ମୋହନସୁନ୍ଦରଙ୍କୁ ପ୍ରଥମେ ସେ ଅନୁକରଣ କରୁଥିଲେ । ପରେ ସେ 'ମୀରାବାଈ' ନାଟକଟି ନିଜ ରୁଚିରେ ନିର୍ଦ୍ଦେଶନା ଦେଲେ । ଏଥିରେ ସେ ନିଜେ ମୀରାବାଈଙ୍କ ସ୍ୱାମୀ ରାଣା କୁମ୍ଭଙ୍କ ଭୂମିକାରେ ଅଭିନୟ କରିଥିଲେ ।

ପୁରୀ ଏମାର ମଠର ମହନ୍ତ ମହାରାଜ ତଥା ବୈଷ୍ଣବ ସଂପ୍ରଦାୟର ମୁଖ୍ୟ କେଳୁଚରଣଙ୍କ 'ମୀରାବାଈ' ନାଟକଟି ଦେଖି ମୁଗ୍ଧ ହେଲେ । ଏମାର ମଠରେ ଏହା ମଞ୍ଚସ୍ଥ କରିବା ପାଇଁ ସେ ତାଙ୍କୁ ଅନୁରୋଧ କଲେ । କେଳୁଚରଣ ମୀରାବାଈଙ୍କ ସ୍ୱାମୀଙ୍କ ଭୂମିକାରେ ସଂପୂର୍ଣ୍ଣ ମଜ୍ଜି ଯାଇଥିଲେ । ଅଭିନୟ ସମୟରେ ମୀରାଙ୍କ ନାମ ଉଚ୍ଚାରଣ କରୁ କରୁ ସେ ତଳେ ପଡ଼ିଗଲେ ଓ ତାଙ୍କ ଛାତିରେ ଆଘାତ ଲାଗିଲା । ଅଭିନୟ ପରେ ଅଧିକ ଖାଦ୍ୟ ଖାଇଦେବାରୁ ସେ ଅସୁସ୍ଥ ହୋଇପଡ଼ିଥିଲେ । ତାଙ୍କ ବନ୍ଧୁମାନେ ତାଙ୍କୁ ଡାକ୍ତରଖାନାରେ ଭର୍ତ୍ତି କରିବାକୁ ଚାହିଁଲେ । ସେ କିନ୍ତୁ ତାଙ୍କର ଜଣେ ସଂପର୍କୀୟଙ୍କ ଘରେ ରହିଲେ । ତାଙ୍କର ଉପଯୁକ୍ତ ଚିକିତ୍ସା କରାଗଲା । ଅନ୍ନପୂର୍ଣ୍ଣା ଥିଏଟର ପକ୍ଷରୁ ତାଙ୍କୁ କୌଣସି ଅର୍ଥ ପ୍ରଦାନ କରାନଯାଇ ତାଙ୍କ ପରିଶ୍ରମ ବାବଦକୁ ଚାଉଳ, ପରିବାପତ୍ର ଇତ୍ୟାଦି ପ୍ରଦାନ କରାଯିବାରୁ ସେ ଦୁଃଖିତ ହୋଇଥିଲେ । ଅର୍ଥ ପାଇଥିଲେ ସେ ଋଣ ଶୁଝିବା ପାଇଁ ଯୋଜନା କରିଥିଲେ ।

ଗାଆଁରେ କିଛିଦିନ ରହିବା ପରେ କେଳୁଚରଣ ପୁଣି ଥରେ ପୁରୀ ଆସିବାପାଇଁ ରେଳରେ ଚଢ଼ିଲେ । ଉଦ୍ଦେଶ୍ୟ ଥିଲା, ପୁରୀରେ କିଛି ଔଷଧ କିଣିବା ସହିତ କେତେଦିନ ପରେ ରାସଦଳରେ ଯୋଗଦେବେ । ସେହିଦିନ ଭୁବନେଶ୍ୱର–ତାଳଚେର ଯାତ୍ରୀ ଗାଡ଼ିରେ ଓଡ଼ିଶା ଥିଏଟର୍‌ର ଅଭିନେତା ତଥା ନିର୍ଦ୍ଦେଶକ ସାମୁଏଲ ସାହୁ (ବାବି) ମଧ୍ୟ ଆସୁଥାନ୍ତି । ଆଗରୁ ସାମୁଏଲ ସାହୁ ଜମିଦାର ଏବଂ କେଳୁଚରଣ ଚାକର ଭୂମିକାରେ ଅଭିନୟ କରିଥିଲେ । କେଳୁଚରଣ ଓଡ଼ିଶା ଥିଏଟର ଛାଡ଼ିବା ପରେ ଯାହାସବୁ ଘଟିଥିଲା, ବାବିଙ୍କଠାରୁ ଜାଣିଲେ ।

୧୯୪୫ ଡିସେମ୍ବର ମାସରେ ବିଶ୍ୱ ମହାଯୁଦ୍ଧ ସରିଲା । ସେହି ସମୟରେ ଓଡ଼ିଶା ଥିଏଟର୍‌ର ମୁଖ୍ୟ ଅଭିନେତାମାନେ କାଳୀଚରଣ ପଟ୍ଟନାୟକଙ୍କୁ ଭେଟି ଦରଦାମ ବୃଦ୍ଧି କାରଣରୁ ସେମାନଙ୍କ ଦରମା ଶତକଡ଼ା ପଚିଶି ବଢ଼ାଇଦେବାକୁ ଦାବି କଲେ (ସେତେବେଳେ ସେମାନଙ୍କ ଦରମା ପ୍ରାୟ ଆଠ ଟଙ୍କାରୁ ଦଶ ଟଙ୍କା ମଧ୍ୟରେ ଥିଲା) । କାଳୀଚରଣ ଏଥିରେ ସମ୍ମତ ହେଲେନାହିଁ । କେବଳ ବାବିଙ୍କ ଦରମା ବଢ଼ାଇ ଦେବାପାଇଁ ସେ ରାଜି ହେଲେ । ଅଭିନେତାମାନଙ୍କ ମଧ୍ୟରେ ବାବି ଥିଲେ ବୟୋଜ୍ୟେଷ୍ଠ ଓ ସବୁଠାରୁ ଶିକ୍ଷିତ । ଇଞ୍ଜିନିୟରିଂରେ ତାଙ୍କର ଡିପ୍ଲୋମା ଥିଲା । ଛୋଟନାଗପୁରରେ ସେ ଚାକିରୀ କରିଥିଲେ । ୧୯୩୯ରେ ମହାଯୁଦ୍ଧ ପାଇଁ ଛୋଟନାଗପୁରର କଳକାରଖାନା ବନ୍ଦ ହୋଇଯିବାରୁ ସେ ଚାକିରୀ ହରାଇଲେ । ୧୯୪୦ରେ କାଳୀଚରଣ ଓଡ଼ିଶା ଥିଏଟର୍ ଆରମ୍ଭ କରିବାରୁ ବାବି ଏଥିରେ ଯୋଗଦାନ କଲେ । କଲେଜରେ ପଢ଼ିବା ସମୟରୁ ଜଣେ ଅଭିନେତା ହେବାପାଇଁ ସେ ଇଚ୍ଛା କରୁଥିଲେ । କାଳୀଚରଣ ତାଙ୍କ ଦରମା ବଢ଼ାଇବା ଓ ଅନ୍ୟମାନଙ୍କ ଦରମା ନବଢ଼ାଇବା ପ୍ରସ୍ତାବକୁ ସେ ଆଦୌ ଗ୍ରହଣ କଲେନାହିଁ । ପ୍ରିୟନାଥ ମିଶ୍ର, ମଧୁ ପଲେଇ, ବିପିନ ପଟ୍ଟନାୟକ, କୃଷ୍ଣଚନ୍ଦ୍ର ପାଣ୍ଡେ ଓ ଅନ୍ୟ ପୋଖତ ଅଭିନେତାମାନଙ୍କ ସହିତ ବାବି ଓଡ଼ିଶା ଥିଏଟର୍ ଛାଡ଼ିଲେ । ଭବିଷ୍ୟତରେ ମୁଖ୍ୟ ଭୂମିକାରେ ଅଭିନୟ କରିବା ଆଶାରେ ଗୌଣ ଭୂମିକାରେ ଅଭିନୟ କରୁଥିବା କେତେଜଣ ଅବଶ୍ୟ ଓଡ଼ିଶା ଥିଏଟର୍‌ରେ ରହିଲେ ।

ଓଡ଼ିଶା ଥିଏଟର୍ ଛାଡ଼ିଥିବା ଅଭିନେତାମାନେ ଆଉ ଗୋଟିଏ ନାଟ୍ୟଦଳ ଗଢ଼ିଲେ । ସେମାନେ ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚ (ସେତେବେଳର ନାମ ଅନ୍ନପୂର୍ଣ୍ଣା ନାଟ୍ୟମଣ୍ଡଳୀ)ର ମାଲିକ ସୋମନାଥ ଦାଶଙ୍କୁ ଭେଟି କଟକରେ ଥିବା ତାଙ୍କର ମଞ୍ଚଟି ବ୍ୟବହାର କରିବାକୁ ତାଙ୍କୁ ଅନୁରୋଧ କଲେ । ଏହି ମଞ୍ଚଟି କେବେ କିପରି ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚ ଦ୍ୱାରା ବ୍ୟବହୃତ ହେଉଥିଲା । ବକ୍ସିବଜାରରେ ଅବସ୍ଥିତ ଏହି ମଞ୍ଚଟିର ମାଲିକ ଥିଲେ ଜଣେ ମାଡ଼ୱାଡ଼ି । ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚ ଏହାକୁ ବ୍ୟବହାର କରିବା ପୂର୍ବରୁ ଏଠାରେ ସିନେମା ହଲ୍‌ଟିଏ ଥିଲା । ବର୍ତ୍ତମାନ ଏଠାରେ ଆରମ୍ଭ ହେଲା ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚ 'ଖ' । ପରବର୍ତ୍ତୀ ସମୟରେ ଓଡ଼ିଶୀ ନାମରେ ପରିଚିତ ନୃତ୍ୟର ବିକାଶ ପାଇଁ ଏହି ରଙ୍ଗମଞ୍ଚର ଯଥେଷ୍ଟ ଅବଦାନ ଥିଲା । ଏହାର ପରିଚାଳକ ଲିଙ୍ଗରାଜ ନନ୍ଦଙ୍କର ଘର ଥିଲା ଚିଲିକା କୂଳର ଖଣ୍ଡୁଆଳ ହାଟ । ସେ ମୂଳରୁ ଅନ୍ନପୂର୍ଣ୍ଣା ନାଟ୍ୟମଣ୍ଡଳୀ ସହିତ ସଂପୃକ୍ତ ଥିଲେ । ସେ ବିଶେଷ ନୃତ୍ୟପ୍ରିୟ ଥିଲେ ଓ ନୃତ୍ୟରେ ବିଭିନ୍ନ ପରୀକ୍ଷା ନିରୀକ୍ଷା କରୁଥିଲେ । ଯାହା ଜଣାଯାଏ, ପିଲାଦିନେ ସେ ନିଜ ଗାଆଁରେ ଗୋଟିପୁଅ ନାଚ ଶିଖିଥିଲେ । ଅନ୍ନପୂର୍ଣ୍ଣା 'ଖ' ରଙ୍ଗମଞ୍ଚ ଦ୍ୱାରା ପ୍ରଥମେ ଦୁଇଟି ନାଟକ ଅଭିନୀତ ହୋଇଥିଲା– 'ମ୍ୟାନେଜର' ଓ 'ମୂଳିଆ' । ରାମଚନ୍ଦ୍ର ମିଶ୍ରଙ୍କ ଦ୍ୱାରା ଲିଖିତ 'ମୂଳିଆ' ନାଟକ ବହୁଦିନ ଚାଲିଥିଲା ଓ ବିଶେଷ

ଆଦୃତ ହୋଇଥିଲା । ବର୍ତ୍ତମାନ ସେମାନେ ଗୋଟିଏ ନୂତନ ନାଟକ 'ଦେବୀ' ମଞ୍ଚସ୍ଥ କରିବା ପାଇଁ ପ୍ରସ୍ତୁତ ହେଉଥିଲେ ଏବଂ ଏହାର ମୁଖ୍ୟ ନାରୀ ଭୂମିକାରେ ଅଭିନୟ କରିବା ପାଇଁ ଜଣେ ଅଭିନେତ୍ରୀ ଖୋଜୁଥିଲେ । ସେଇଥିପାଇଁ ବାବି ଯାଉଥିଲେ ପୁରୀ ଅନ୍ନପୂର୍ଣ୍ଣା 'କ' ରଙ୍ଗମଞ୍ଚର କେତେଜଣ ଅଭିନେତ୍ରୀଙ୍କ ସହିତ କଥାବାର୍ତ୍ତା କରିବା ପାଇଁ ।

ପୁରୀରେ ପହଞ୍ଚିବା ପୂର୍ବରୁ ବାବି କେଳୁଚରଣଙ୍କୁ ଅନୁରୋଧ କଲେ ତାଙ୍କ ଦଳରେ ଯୋଗଦେବା ପାଇଁ । କେଳୁଚରଣ ପ୍ରସ୍ତାବଟି ଗ୍ରହଣ କଲେ । ସ୍ଥିର ହେଲା, ବାବି ପୁରୀରୁ ଫେରିବା ବାଟରେ କେଳୁଚରଣଙ୍କୁ କଟକ ନେଇଯିବେ (ସେତେବେଳେ ବି କେଳୁଚରଣ ଏକାକୀ କୁଆଡ଼େ ଯିବାପାଇଁ ସାହସ କରୁନଥିଲେ) ।

ପୁରୀରେ ପହଞ୍ଚି କେଳୁଚରଣ ଆଉ ରାସଦଳକୁ ଗଲେନାହିଁ । ଦରକାରୀ ଔଷଧ କିଣି ସଂଗେ ସଂଗେ ସେ ଫେରିଆସିଲେ ମାଳତୀପାଟପୁର ରେଳ ଷ୍ଟେସନକୁ । ଛିଣ୍ଡା ଧୋତିଟିଏ ପିନ୍ଧିଥାନ୍ତି ଓ କାନ୍ଧରେ ଗାମୁଛାଟିଏ ପକାଇଥାନ୍ତି । ସେହିଠାରେ ସେ ବାବିଙ୍କୁ ଅପେକ୍ଷା କଲେ । ରାତି ତିନିଟା ବେଳେ ରେଳ ଆସିଲା । ଚାରିଆଡ଼ କିଟିକିଟି ଅନ୍ଧାର । ବାବି ରେଳ ଝରକା ମଧ୍ୟଦେଇ କେଳୁଚରଣଙ୍କୁ ଡାକିଲେ । କେଳୁଚରଣ ଧୀରେ ଧୀରେ ଚାଲୁଥିବା ରେଳଗାଡ଼ି ଭିତରକୁ ଚଢ଼ିଗଲେ । ଜୀବନ ନୂତନ ଦିଗରେ ଚାଲିଲା । କେଳୁଚରଣ ଆଉ ପଛକୁ ଚାହିଁଲେ ନାହିଁ । ନୂଆ କିଛି ଶିଖିବାର ସୁଯୋଗକୁ ଅପେକ୍ଷା କରି ସେ ଆଗେଇ ଚାଲିଲେ ।

•••

# ପ୍ରଥମ ପ୍ରେମ

'ଏହି ଅଭିନେତ୍ରୀମାନଙ୍କୁ ତୁମେ ଆଣିଲ କେଉଁଠୁ ?' ପଚାରିଲେ ଲିଙ୍ଗରାଜ ନନ୍ଦ । ଅଭିନେତ୍ରୀମାନଙ୍କୁ ଆଣିବାକୁ ଯାଇ ନିହାତି ସାଧାରଣ ଦିଶୁଥିବା ପିଲାଟିକୁ ଧରି ପୁରୀରୁ ଫେରିଥିବାରୁ ନନ୍ଦ ଖୁବ୍ ରାଗି ଯାଇଥିଲେ । ବାବି କହିଲେ, 'ପିଲାଟି ଭଲ ତାବ୍ଲା ବଜାଏ । ତାକୁ ପାଖରେ ରଖ ।' ମାସକ ପାଇଁ ନନ୍ଦଙ୍କ ପାଖରେ କେଳୁଚରଣ ରହିବାର ସ୍ଥିର ହେଲା । ପ୍ରଥମ ମାସରେ କେବଳ ତାଙ୍କର ରହିବା ଓ ଖାଇବାର ବ୍ୟବସ୍ଥା ସ୍ଥିର କରାଗଲା । ଦ୍ୱିତୀୟ ମାସଠାରୁ ତାଙ୍କୁ ପନ୍ଦର ଟଙ୍କା ଦରମା ଦିଆଗଲା ।

ଲିଙ୍ଗରାଜ ନନ୍ଦ ପାଖଆଖ ଗାଆଁରୁ କେତୋଟି ପୁଅ ଓ ଝିଅଙ୍କୁ ଏକାଠି କରି ପଙ୍କଜ ଚରଣ ଦାସଙ୍କ ଦାୟିତ୍ୱରେ ଦେଇଥାନ୍ତି । ସେତେବେଳେ ପଙ୍କଜ ଚରଣ ତରୁଣ; ବୟସ ପଚିଶିରୁ ତିରିଶି ମଧ୍ୟରେ । ପଙ୍କଜ ଚରଣ ସେମାନଙ୍କୁ ନାଚ ଶିଖାଉଥାନ୍ତି । ନାଚ କହିଲେ, ମୋଟାମୋଟି ବୁଝାଉଥାଏ କୌଣସି ସଂଗୀତର ସ୍ୱରରେ ନିର୍ଦ୍ଦିଷ୍ଟ ଛନ୍ଦରେ ପଦଚାଳନା । ପଙ୍କଜ ଚରଣ ଏପରି ନାଚ ଶିଖିଥାନ୍ତି ହଜୁରୀ ଥିଏଟର୍‌ରେ । ହଜୁରୀ ଥିଏଟର୍‌ର ମାଲିକ ଥାଆନ୍ତି ବଳଭଦ୍ର ହଜୁରୀ ଖୁଣ୍ଟିଆ । ଥିଏଟର୍‌ଟି ପୁରୀ ଲୋକନାଥ ମନ୍ଦିର ନିକଟରେ ଗୋଟିଏ ହଲ୍‌ରେ ଅବସ୍ଥିତ ଥାଏ । ଭିକାରୀ ଚରଣ ଦଳେଇ ନାମକ ଜଣେ ବ୍ୟକ୍ତି ଥାଆନ୍ତି ସେଠାରେ ନାଚ ଶିକ୍ଷକ ।



ଗୁରୁ ପଙ୍କଜ ଚରଣ ଦାସ

ହଜୁରୀ ଥିଏଟର୍ ବନ୍ଦ ହୋଇଯିବା ପରେ ପଙ୍କଜ ଚରଣ ପୁରୀର ବିଭିନ୍ନ ଜାଗା ଆଖଡ଼ା ସହିତ ସଂପୃକ୍ତ ହୋଇପଡ଼ିଲେ । ପିଲାଦିନେ ସେ ତାଙ୍କର ମାଉସୀ ରତ୍ନପ୍ରଭାଙ୍କ ଘରେ ମାହାରୀ ନାଚ ଦେଖିଥିଲେ । ଜାଗା ଆଖଡ଼ାମାନଙ୍କରେ ଓଡ଼ିଶୀ ସଂଗୀତ ଓ ବାଦ୍ୟ ଅଭ୍ୟାସ କରାଯାଉଥିଲା; ସେ ସଂପର୍କରେ ଆଲୋଚନା ମଧ୍ୟ ହେଉଥିଲା । ସାହିଯାତ୍ରା ପାଇଁ

ସେଠାରେ କଳାକାରମାନଙ୍କୁ ବନ୍ଧା ଯାଉଥିଲା । ସାହୀଯାତ୍ରାରେ ସଂଗୀତ, ନୃତ୍ୟ ଓ ସାମରିକ କ୍ରୀଡ଼ାର ପ୍ରଦର୍ଶନ କରାଯାଏ । ପଙ୍କଜ ଚରଣ ପଥର ଆଖଡ଼ାରେ କିଛି ବର୍ଷ ତାଲିମ ନେବାପରେ ଜଗୁ ମହାନ୍ତିଙ୍କ ତତ୍ତ୍ୱାବଧାନରେ ବିଭିନ୍ନ ନାଟ୍ୟ ଦଳରେ କାମ କଲେ । ବାରିପଦାର 'ନିଉ ଥିଏଟର୍ସ ଅଫ୍ ଓଡ଼ିଶା' ସେଥିମଧ୍ୟରେ ମୁଖ୍ୟ । ଏହାର ପରିଚାଳକ ଥାଆନ୍ତି ରାଧାରମଣ ରାୟ । ଏହିଠାରେ ପଙ୍କଜ ଚରଣ ଛଉ ନାଚର ସାମରିକ ଶୈଳୀ ସହିତ ପରିଚିତ ହେଲେ ଓ ଏଯାଏଁ ଶିଖିଥିବା ନାଚ ଶିଖାଇବା ଆରମ୍ଭ କଲେ ।

ପୁରୀକୁ ଫେରିଆସି ପଙ୍କଜ ଚରଣ ଲିଙ୍ଗରାଜ ନନ୍ଦଙ୍କ ରାସଦଳରେ ଯୋଗଦେଲେ । ଲିଙ୍ଗରାଜ ତ ସବୁବେଳେ ନୂତନ ପ୍ରତିଭାର ସନ୍ଧାନ କରୁଥିଲେ । ଲିଙ୍ଗରାଜଙ୍କ ସହିତ ଆକସ୍ମିକ ସାକ୍ଷାତ ପଙ୍କଜ ଚରଣଙ୍କ ଜୀବନରେ ଗୋଟିଏ ବିଶେଷ ଘଟଣା । ପ୍ରଥମେ ସେ ଅଭିନୟ ସହିତ ସଂପୃକ୍ତ ହେଲେ । ତାଙ୍କର ନୃତ୍ୟ ପ୍ରତିଭା ସଂପର୍କରେ ଜାଣିବା ପରେ ଲିଙ୍ଗରାଜ ତାଙ୍କୁ ପୁଅଝିଅମାନଙ୍କୁ ନାଚ ଶିଖାଇବା ଦାୟିତ୍ୱ ଦେଲେ । ନାଟକଟିଏ ଚାଲିଥିବା ସମୟରେ ପର୍ଦ୍ଦା ପଡ଼ିବା ଉଠିବାର ବିରତିରେ ପଙ୍କଜ ଚରଣ ସ୍ୱଳ୍ପ ସମୟର ନୃତ୍ୟ କାର୍ଯ୍ୟକ୍ରମ ପରିବେଷଣ କଲେ । ଉଦାହରଣ ସ୍ୱରୂପ, 'ମୂଲିଆ' ନାଟକ ଆରମ୍ଭ ହେବା ଆଗରୁ କେତେଜଣ ପୁଅ ଓ ଝିଅ ପଦଟିଏ ଗୀତ ଗାଇବା ଓ ଦେଶ ବନ୍ଦନା, ଅର୍ଥାତ୍ ଭୂମିକୁ ସ୍ପର୍ଶକରି ନମସ୍କାର କରିବା ଓ ତାହା ଉପରେ ଫୁଲର ଅର୍ଘ୍ୟ ଦେବା । ଆଉ ଗୋଟିଏ ନାଟକ 'ଜହର' ଅଭିନୀତ ହେବା ଆଗରୁ ଏହି ପୁଅଝିଅମାନେ ପର୍ଦ୍ଦା ଉପରକୁ ତିନୋଟି ଶର ମାରୁଥିଲେ । ପ୍ରଥମ ଶର ମାରିବାରେ 'ଜ' ଅକ୍ଷର, ଦ୍ୱିତୀୟ ଶର ମାରିବାରେ 'ହ' ଅକ୍ଷର ଓ ତୃତୀୟ ଶର ମାରିବାରେ 'ର' ଅକ୍ଷର ପର୍ଦ୍ଦା ଉପରୁ ତଳକୁ ଖସିଆସୁଥିଲା । ଏପରି ନୃତ୍ୟ କାର୍ଯ୍ୟକ୍ରମ ଥିଲା ଅତି ସଂକ୍ଷିପ୍ତ ଓ ସରଳ ।

ଅନ୍ନପୂର୍ଣ୍ଣା 'ଖ' ଦଳରେ ଯୋଗଦେବା ପରେ ପଙ୍କଜଙ୍କ ସହିତ କେଳୁଚରଣଙ୍କୁ କାର୍ଯ୍ୟ କରିବାର ସୁଯୋଗ ମିଳିଲା । ପଙ୍କଜ ନାଚ ଶିଖାଉଥିବା ବେଳେ କେଳୁଚରଣ ତାବ୍ଲା ବଜାଉଥିଲେ । ନାଚର ମୂଳ ଛଅଟି ପଦଚାଳନା ପଦ୍ଧତି କେଳୁଚରଣ ସହଜରେ ଶିଖିନେଲେ ଏବଂ ପଙ୍କଜ ଅନୁପସ୍ଥିତ ରହିଲେ କେଳୁଚରଣ ପିଲାମାନଙ୍କୁ ତାହା ଶିଖାଉଥିଲେ । ଏହି ସମୟରେ କେଳୁଚରଣଙ୍କର ନୃତ୍ୟ ପ୍ରତିଭା ଜଣାପଡ଼ିଲା ।

ଏହି ସମୟରେ ନାଟକ 'ବେନାମୀ' ମଞ୍ଚସ୍ଥ ହେଲା । ଏଥିରେ ପଙ୍କଜ ଅଭିନେତ୍ରୀ ଉମାଶଶୀଙ୍କ ସହିତ ଏକ ହାସ୍ୟୋଦ୍ଦୀପକ ଭୂମିକାରେ ଅଭିନୟ କରିଥିଲେ । ରାମଚନ୍ଦ୍ର ମିଶ୍ରଙ୍କ 'ଦେବୀ' ନାଟକର ରିହର୍ସାଲ୍ ମଧ୍ୟ ଚାଲିଥାଏ । ନାଟକର ନିର୍ଦ୍ଦେଶନା ଦେଉଥା'ନ୍ତି ବାବି । 'ଦେବୀ' ନାଟକ ଆରମ୍ଭ ପୂର୍ବରୁ ସଂକ୍ଷିପ୍ତ ନୃତ୍ୟ କାର୍ଯ୍ୟକ୍ରମଟିଏ ପ୍ରଦର୍ଶନ କରିବା

ସ୍ଥିର ହୋଇଥାଏ । ଏହି କାର୍ଯ୍ୟକ୍ରମଟି ଭସ୍ମାସୁରଙ୍କ ଉପରେ ମୋହିନୀଙ୍କର ବିଜୟର କାହାଣୀ ଉପରେ ଆଧାରିତ ହୋଇଥାଏ । ଏଥିପାଇଁ ଜଣେ ଅଭିନେତା ଓ ଦୁଇଜଣ ଅଭିନେତ୍ରୀଙ୍କର ଆବଶ୍ୟକତା ଥାଏ । ମୋହିନୀ ଭୂମିକା ପାଇଁ ଅଭିନେତ୍ରୀ ମନୋନୀତ ହୋଇ ନଥାନ୍ତି । ପଙ୍କଜ କେଳୁଚରଣଙ୍କୁ ମହାଦେବ ଭୂମିକାରେ ଅଭିନୟ କରିବାକୁ କହି ନିଜେ ଭସ୍ମାସୁର ଭୂମିକାଟି ଗ୍ରହଣ କରିଥା'ନ୍ତି । ବାରିପଦାର ରାଧାକୃଷ୍ଣ ଭଞ୍ଜ ଛଉନୃତ୍ୟ ଶୈଳୀରେ ଭସ୍ମାସୁର ଭୂମିକାରେ ଅଭିନୟ କରିବାକୁ ପ୍ରଥମେ ସ୍ଥିର ହୋଇଥିଲା । ଲିଙ୍ଗରାଜ ନନ୍ଦ ନିଜେ ପୁରୀ ଯାଇ ପୋଖତ ନୃତ୍ୟଶିଳ୍ପୀ ଲକ୍ଷ୍ମୀପ୍ରିୟାଙ୍କୁ ମୋହିନୀ ଭୂମିକା ପାଇଁ କଟକ ଆଣିଲେ । ଲକ୍ଷ୍ମୀପ୍ରିୟା ତ ମୂଳରୁ ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚ ସହିତ ସଂପୃକ୍ତ ଥିଲେ । ସେ ମୋହିନୀ ଭୂମିକା ପାଇଁ ମନୋନୀତ ହେଲେ । ସାତଦିନ ମଧ୍ୟରେ ପନ୍ଦର ମିନିଟ୍‌ର ଏହି ନୃତ୍ୟନାଟିକା ପରିଚାଳକଙ୍କ ଅନୁମୋଦନ ପାଇଁ ପ୍ରସ୍ତୁତ ହୋଇଗଲା ।

ରଙ୍ଗମଞ୍ଚର ପୃଷ୍ଠଭୂମିରେ ଥାଏ ଶିବଙ୍କର ବାସସ୍ଥଳୀ କୈଳାସ ପର୍ବତ । ସେଠାରେ ଧ୍ୟାନରତ ଗୋଟିଏ ଅସୁର । ମହାଦେବ ଅସୁରର ତପସ୍ୟାରେ ସନ୍ତୁଷ୍ଟ ହୋଇ ଉଭା ହୁଅନ୍ତି ଏବଂ ନୃତ୍ୟ କରୁଥିବା ଅବସ୍ଥାରେ କହନ୍ତି, ସେ ହେଉଛନ୍ତି ସମସ୍ତ ଜୀବଙ୍କର ସୃଷ୍ଟିକର୍ତ୍ତା, ରକ୍ଷାକର୍ତ୍ତା ଏବଂ ଧ୍ୱଂସକର୍ତ୍ତା । ସେ ଅସୁରକୁ ଯେ କୌଣସି ବରଦାନ ଦେବା ପାଇଁ ପ୍ରସ୍ତୁତ । ଅସୁର କହେ, ତାକୁ ଏପରି ଶକ୍ତି ଦିଅନ୍ତୁ, ଯେପରିକି ସେ ଯାହା ସ୍ପର୍ଶ କରିବ, ତାହା ଭସ୍ମୀଭୂତ ହୋଇଯିବ । ଶିବ ସେହି ବର ପ୍ରଦାନ କରନ୍ତି । ବରପ୍ରାପ୍ତି ପରେ ଅସୁର ତା'ର ଶକ୍ତି ପରୀକ୍ଷା ପାଇଁ ଶିବଙ୍କ ନିକଟକୁ ଅଗ୍ରସର ହୁଏ । ଅସହାୟ ଶିବ ନାରାୟଣଙ୍କୁ ଡାକନ୍ତି । ନାରାୟଣ ଛଦ୍ମବେଶରେ ସୁନ୍ଦରୀ ମୋହିନୀ ରୂପରେ ଆବିର୍ଭୂତ ହୁଅନ୍ତି । ଅସୁର ତାଙ୍କ ସୌନ୍ଦର୍ଯ୍ୟରେ ମୁଗ୍ଧ ହୁଏ ଏବଂ ତାଙ୍କୁ ନିଜର ସ୍ତ୍ରୀ କରିବା ପାଇଁ ଇଚ୍ଛା ପ୍ରକାଶ କରେ । ମୋହିନୀ ଅସୁରକୁ ତାଙ୍କ ସହିତ ନୃତ୍ୟ କରିବା ପାଇଁ ଆହ୍ୱାନ କରନ୍ତି । ନୃତ୍ୟ ସଂପର୍କରେ ଅଜ୍ଞ ହେଲେ ସୁଦ୍ଧା ଅସୁର ମୋହିନୀଙ୍କ ସହିତ ନୃତ୍ୟରେ ଯୋଗ ଦିଏ । ସେ ମୋହିନୀଙ୍କ ଅଙ୍ଗଚାଳନା କେବଳ ଅନୁକରଣ କରେ । ଶେଷରେ ସେ ନିଜ ମସ୍ତକରେ ହାତ ରଖିବା ମାତ୍ରେ ଭସ୍ମରେ ପରିଣତ ହୁଏ । ଏହି ସମୟରେ ସ୍ୱୟଂ ମହାଦେବ ଉଭା ହୁଅନ୍ତି ଏବଂ ମୋହିନୀଙ୍କ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ତାଙ୍କୁ ଆଲିଙ୍ଗନ କରିବାକୁ ଚାହାନ୍ତି । ମୋହିନୀ ବର୍ତ୍ତମାନ ନାରାୟଣ ରୂପ ଗ୍ରହଣ କରି ହସି ହସି କହନ୍ତି, ଯାହାସବୁ ଘଟିଗଲା, ତାହା କେବଳ ତାଙ୍କରି ମାୟା । ମହାଦେବ ନିଜ ଭୁଲ୍ ବୁଝି ଲଜ୍ଜିତ ହୁଅନ୍ତି ।

ଏହି ନୃତ୍ୟନାଟିକାରେ ଦୁଇଟି ଭାଗ ଥିଲା । ମହାଦେବଙ୍କ ନୃତ୍ୟ ଦଶଟି ମାତ୍ରାର ତାଳ ଉପରେ ଏବଂ ମୋହିନୀଙ୍କ ନୃତ୍ୟ ଷୋଳଟି ମାତ୍ରା ଉପରେ ଆଧାରିତ ଥିଲା । ଏହି ନୃତ୍ୟନାଟିକାର ପରିକଳ୍ପନା କରିଥିଲେ ପଙ୍କଜ ଚରଣ । ଏହା ଓଡ଼ିଶୀ ରୀତିରେ ପରିବେଷିତ

ହୋଇଥିଲା ବୋଲି କୁହାଯାଇ ପାରିବନାହିଁ । କିନ୍ତୁ ଓଡ଼ିଶୀ ନୃତ୍ୟର ଇତିହାସରେ ଏହା ଥିଲା ଖୁବ୍ ଗୁରୁତ୍ୱପୂର୍ଣ୍ଣ । 'ଚନ୍ଦାମୁଣ୍ଡିଆ' କେଳୁଚରଣ ଏତେ ଚମତ୍କାର ନାଚିପାରିବା ଦେଖି ସମସ୍ତେ ଅଭିଭୂତ ହୋଇଗଲେ (କେଳୁଚରଣଙ୍କୁ ବୟସ୍କମାନେ ଥଟ୍ଟାରେ ଚନ୍ଦାମୁଣ୍ଡିଆ ଡାକୁଥିଲେ) । କେଳୁଚରଣଙ୍କ ଦାଦା ବାବି ସେ ଚାକର ଭୂମିକାରେ ଅଭିନୟ କରିବା ଦିନୁ ତାଙ୍କୁ ଜଣେ ହାସ୍ୟୋଦ୍ଦୀପକ ଅଭିନେତା ଭାବରେ ଜାଣିଥିଲେ । ଭଲ ତାବ୍‌ଲା ବାଦକ ଭାବରେ ମଧ୍ୟ ଜାଣିଥିଲେ । ଯାତ୍ରା ଦଳର ନିର୍ଦ୍ଦେଶକ ପ୍ରିୟନାଥ ମିଶ୍ର ଅଭିନେତା ଅଭିନେତ୍ରୀମାନଙ୍କର ମେକପ୍ ବା ବେଶ ପୋଷାକ ପାଇଁ କେଳୁଚରଣଙ୍କୁ ପସନ୍ଦ କରୁଥିଲେ । କିନ୍ତୁ ସେ ଯେ ଏତେ ସୁନ୍ଦର ନାଚିପାରନ୍ତି, ତାହା ଜାଣିନଥିଲେ । ବାବି କେଳୁଚରଣଙ୍କୁ ଡାକି କହିଲେ, 'ତୁମେ ଅଭିନେତା ହେବା କଥା ଭୁଲିଯାଅ (ମନେହୁଏ କେଳୁଚରଣ ଏଯାଏଁ ଅଭିନେତା ଭାବରେ ବେଳେବେଳେ ସଂଳାପ କହିବାରେ ଅଟକି ଯାଉଥିଲେ । ପରେ ପଖଉଜ ବଜାଇବା ମାଧ୍ୟମରେ ସେହି ଦୋଷ ଜଣାପଡୁ ନଥିଲା) । ତୁମେ ଏଣିକି କେବଳ ନାଚିବାରେ ମନ ଦିଅ ।'

ନୃତ୍ୟନାଟିକାଟିର ସଫଳତା ପରେ ଲିଙ୍ଗରାଜ ନନ୍ଦ ଗୋଟିପୁଅ ନାଚ ଓସ୍ତାଦ୍ କୃଷ୍ଣଚନ୍ଦ୍ର ମହାପାତ୍ରଙ୍କୁ ଡକାଇଲେ । ମହାପାତ୍ର ଲକ୍ଷ୍ମୀପ୍ରିୟାଙ୍କୁ ଦୁଇଟି ଗୀତାଭିନୟ (ଗୀତ ଗାଇ ସେହି ଭାବକୁ ନୃତ୍ୟରେ ପ୍ରକାଶ କରିବା) ଶିଖାଇଥିଲେ । ଗୀତ ଦୁଇଟି ହେଲା– 'ଜାଣରେ ମୋ ରାଣ ପରମ ମିତ' ଏବଂ 'ନାହିଁକି କରିଦେଲ' । ଗୀତ ଦୁଇଟି ରଚନା କରିଥିଲେ କିଶୋର କବି ଶ୍ୟାମସୁନ୍ଦର ଦାସ ଏବଂ ସ୍ୱର ସଂଯୋଜନା କରିଥିଲେ ବାଳକୃଷ୍ଣ ଦାସ ଏବଂ ନିଜେ ଗୀତିକାର । ଏହା ୧୯୪୬ ମସିହାର ଘଟଣା । ଲିଙ୍ଗରାଜ ନନ୍ଦ କେବେ କଳ୍ପନା କରିନଥିଲେ ଯେ ଜଣେ ଗୋଟିପୁଅ ଓସ୍ତାଦ୍‌କୁ ଡାକି ନାଚ ଶିଖାଇବାର ପରିଣତି ହେବ ଏତେ ସୁଦୂରପ୍ରସାରୀ ।

ଗୋଟିପୁଅ ନାଚରେ କେଳୁଚରଣଙ୍କର ଯେଉଁ ଅନୁଭୂତି ଥିଲା ତାହା ସେ କୃଷ୍ଣଚନ୍ଦ୍ର କିମ୍ବା ଅନ୍ୟ କାହା ଆଗରେ ପ୍ରକାଶ କରିନଥିଲେ । ତାଙ୍କର ବାପା ଗୋଟିପୁଅ ନାଚ ସଂପର୍କରେ ଯେପରି ବିରକ୍ତି ପ୍ରକାଶ କରିଥିଲେ, ହୁଏତ ତାହା ସେ ମନେ ରଖିଥିଲେ । ସେ କେବଳ ଦୁଇଟି 'ଅଭିନୟ'ରେ ପଖଉଜ ବାଦନ କରିଥିଲେ । କୃଷ୍ଣଚନ୍ଦ୍ର କିନ୍ତୁ ସେଠାରେ ବହୁଦିନ ରହିଲେନାହିଁ । ସେ ଯାତ୍ରାଦଳ ଛାଡ଼ିବା ପରେ ଲକ୍ଷ୍ମୀପ୍ରିୟାଙ୍କ ସହିତ କେଳୁଚରଣଙ୍କୁ ନାଚର ରିହର୍ସାଲ୍ କରିବାକୁ ପଡ଼ିଲା । ପୂର୍ବର ଦୁଇଟି ଗୀତାଭିନୟ ସହିତ ସେ ଗୋଟିଏ ନୂଆ ଭାଗ ଯୋଗ କଲେ– ବାଦ୍ୟ ପଲ୍ଲବୀ । ଏହା ଏକତାଳି ଠେକା (ଚାରୋଟି ବୋଲ୍– ଧିନ୍‌ଧା, ତେନକା ଧିନ୍ ତା) ଉପରେ ଆଧାରିତ ଥିଲା । ଅଶ୍ୱିନୀ କୁମାର ଘୋଷଙ୍କ ଲିଖିତ 'ଅଭିଷେକ' ନାଟକ ଅଭିନୀତ ହେବା ସମୟରେ ଲକ୍ଷ୍ମୀପ୍ରିୟା ତାଙ୍କର ଦ୍ୱିତୀୟ ଗୀତାଭିନୟ

ପରିବେଷଣ କରିବାର ସୁଯୋଗ ପାଇଲେ । ନାଟକଟି ଥିଲା ପୁରୀର ରାଜା କପିଳେନ୍ଦ୍ର ଦେବଙ୍କ ସିଂହାସନ ଆରୋହଣ ସଂପର୍କରେ । ଗୀତାଭିନୟଟି ନାଟକ ଅଭିନୀତ ହେବା ପୂର୍ବରୁ ପରିବେଷିତ ହୋଇଥିଲା । କେଳୁଚରଣ ମର୍ଦ୍ଦଳ ବଜାଇଥିଲେ । ହରିବାବୁ ହାର୍ମୋନିୟମ ବଜାଇ ଗୀତ ଗାଇଥିଲେ । ଲକ୍ଷ୍ମୀପ୍ରିୟା ଦକ୍ଷିଣୀ ରୀତିରେ ଶାଢ଼ୀ ପିନ୍ଧିଥିଲେ । ଏହି ରୀତିରେ ଶାଢ଼ୀ ପିନ୍ଧିବାରେ କଚ୍ଛା ମରାଯାଏ ଏବଂ ଶାଢ଼ୀର ଅନ୍ୟ କାନିଟି ବ୍ଲାଉଜ୍‌ରେ ଲଖାଯାଇ ପଛକୁ ଝୁଲି ରହେ ।

ଦର୍ଶକମାନେ ଏହି ନୃତ୍ୟ ଦେଖି ମନ୍ତ୍ରମୁଗ୍ଧ ହେଲେ । ଏଭଳି ନୃତ୍ୟ କଳା ପରମ୍ପରାରେ ଉଜ୍ଜୀବିତ ଥିଲା ବୋଲି ସେମାନେ କଳ୍ପନା କରିନଥିଲେ । ମନ୍ଦିରମାନଙ୍କରେ ନୃତ୍ୟ ପ୍ରଦର୍ଶନ କରୁଥିବା ନର୍ତ୍ତକୀମାନେ ତ ଆଉ ପ୍ରାୟ ନଥିଲେ । କେବଳ ମଠ, ଧାର୍ମିକ ସମାବେଶ, ମେଳା ବା ଯାତ୍ରାରେ ପୁଅମାନଙ୍କ ଗୋଟିପୁଅ ନାଚ ସେମାନେ ଦେଖିଥିଲେ । ଲକ୍ଷ୍ମୀପ୍ରିୟା ଥିଲେ ସୁନ୍ଦରୀ ଓ ତରୁଣୀ । ତାଙ୍କର ଶରୀରର ଗଢ଼ଣ ଏବଂ ନୟନଭଙ୍ଗୀ ଆକର୍ଷଣୀୟ ଥିଲା । ମୂଳରୁ ସେ ଅଭିନୟ କଳା ସହିତ ପରିଚିତ ଥିଲେ, ଲୋକନୃତ୍ୟ ଓ ଆଦିବାସୀ ନୃତ୍ୟ ମଧ ଶିଖିଥିଲେ ।

'କ' ଦଳର ନାଚ ଓସ୍ତାଦ୍‌ମାନେ ମଧ ଆବଶ୍ୟକ ପଡିଲେ ନିର୍ଦ୍ଦେଶକ ଓ ଅଭିନେତାର ଦାୟିତ୍ୱ ତୁଲାଉଥିଲେ । ସେମାନେ ଥିଲେ ପିପିଲିର କାଶୀନାଥ ସାହୁ, ଗଞ୍ଜାମ ଗୁଡ଼ିଆଳିର ଲକ୍ଷ୍ମୀ ନାରାୟଣ ପାତ୍ର, କଟକର ନାଟ୍ୟକାର ଅଶ୍ୱିନୀ କୁମାର ଘୋଷଙ୍କ ଭାଇ କାର୍ତ୍ତିକ କୁମାର ଘୋଷ ପ୍ରମୁଖ । ସେମାନେ ବିଭିନ୍ନ ପ୍ରକାର ନୃତ୍ୟଶୈଳୀ ଶିଖିଥିଲେ ।

କାଶୀନାଥ ସାହୁ ଜଟଣୀର ଓଡ଼ିଶୀ ସଂଗୀତ ଓସ୍ତାଦ୍ ରାମଚନ୍ଦ୍ର ମାଣିଆଙ୍କଠାରୁ ଆଖଡ଼ା ନୃତ୍ୟ ଏବଂ ୧୯୧୮ରେ ପ୍ରତିଷ୍ଠିତ ରାଧାକୃଷ୍ଣ ଥିଏଟର୍‌ରେ କାର୍ଯ୍ୟରତ ବଳେଇ ବାନାର୍ଜୀଙ୍କଠାରୁ ଅଭିନୟ ଶିଖିଥିଲେ । ଏହା ଥିଲା ଓଡ଼ିଶାର ପ୍ରଥମ ପେଶାଦାରୀ ଥିଏଟର୍ । ଏହାର ମୁଖ୍ୟ କାର୍ଯ୍ୟାଳୟ ଥିଲା କଟକରେ । ଲକ୍ଷ୍ମୀ ନାରାୟଣ ପାତ୍ର ଗଂଜାମର ପ୍ରହ୍ଲାଦ ନାଟକରେ ତାଲିମ ନେଇଥିଲେ । ଏହି ନାଟକରେ ସଂଗୀତ, ନୃତ୍ୟ ଓ ଅଭିନୟର ମିଶ୍ରଣ ହୋଇଥାଏ । କାର୍ତ୍ତିକ କୁମାର ଘୋଷ ଆଲ୍‌ମୋରାରେ ଏକ ଛଅମାସିଆ ତାଲିମ କାର୍ଯ୍ୟକ୍ରମରେ ଯୋଗ ଦେଇଥିଲେ । ଏହିଠାରେ ଭାରତୀୟ ନୃତ୍ୟ ପରମ୍ପରାର ଉଦ୍ଧାରକ ଉଦୟ ଶଙ୍କର ୧୯୪୦ରେ ଅନୁଷ୍ଠାନଟିଏ ଖୋଲିଥିଲେ । ଏହି ଓସ୍ତାଦ୍‌ମାନଙ୍କ ତାଲିମ୍ ଅନ୍ନପୂର୍ଣ୍ଣା 'କ' ଦଳର ତରୁଣ ନୃତ୍ୟଶିକ୍ଷୀମାନଙ୍କୁ ବିଭିନ୍ନ ଭାବରେ ପ୍ରଭାବିତ କରିଥିଲା ।

ଚତୁର୍ଥ ଦଶକର ଆରମ୍ଭରୁ ପ୍ରଥମ ତରୁଣୀ ନୃତ୍ୟଶିକ୍ଷୀମାନେ 'କ' ଦଳ ସହିତ ସଂପୃକ୍ତ ଥିଲେ । ଅଧିକାଂଶ ପୁରୀରୁ ଆସିଥିଲେ; ଅନ୍ୟ କେତେଜଣଙ୍କୁ ପୁରୁଷ ନୃତ୍ୟଶିକ୍ଷୀମାନେ ସେମାନଙ୍କ ଗାଆଁରୁ ଆଣିଥିଲେ । ଲକ୍ଷ୍ମୀପ୍ରିୟାଙ୍କ ଜନ୍ମସ୍ଥାନ ଖୋର୍ଦ୍ଧା । କିନ୍ତୁ ସେ କମ୍ ବୟସରୁ ପୁରୀରେ ତାଙ୍କର ମା' ତୁଳସୀ ଦେବୀଙ୍କ ପାଖରେ ରହୁଥିଲେ ।

ନୃତ୍ୟଶିକ୍ଷୀମାନଙ୍କ ମଧ୍ୟରେ ସେ ଥିଲେ ସର୍ବ କନିଷ୍ଠ । ପ୍ରଥମ ନୃତ୍ୟ ଶିକ୍ଷୀମାନଙ୍କ ଦଳରେ ଥିଲେ ପୁରୀର ଜଣେ ଦେବଦାସୀଙ୍କ କନ୍ୟା ହୀରା ଏବଂ କୋଲ୍କାତାରୁ ପରିବାର ଛାଡ଼ି ଚାଲି ଆସିଥିବା ନିର୍ମଳା । ନିର୍ମଳା ମାତ୍ର ସାତ ବର୍ଷ ବୟସରେ ପୁରୀ ଆସି ନିଜ ମା'ଙ୍କ ପାଖରେ ରହୁଥିଲେ । ବିବାହିତା ନୃତ୍ୟ ଶିକ୍ଷୀମାନେ ଥିଲେ ରାଧାରାଣୀ, ହାରାମଣି, ବାଳାମଣୀ, ସର, ରତ୍ନା ଓ ବୁଧି । ସେମାନଙ୍କ ମଧ୍ୟରୁ କେହି କେହି ନିଜ ଗ୍ରାମରେ କୌଣସି ନା କୌଣସି ଲୋକ ନାଟକରେ ଅଭିନୟ କରିଥିଲେ; ଅନ୍ୟ କେହି କେହି ମୋହନସୁନ୍ଦର ଦେବ ଗୋସ୍ୱାମୀଙ୍କ ଚଳଚ୍ଚିତ୍ର 'ସୀତା ବିବାହ' ସହିତ ସଂପୃକ୍ତ ଥିଲେ । ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚରେ ଯୋଗଦାନ ପରେ ସେମାନେ ପରିଚାଳକ ବାଉରୀବନ୍ଧୁ ମହାନ୍ତିଙ୍କ ତତ୍ତ୍ୱାବଧାନରେ ରହିଲେ । ବାଉରୀବନ୍ଧୁ ସେମାନଙ୍କୁ ନିଜ ଝିଅ ପରି ଦେଖୁଥିଲେ । ସମୟ କ୍ରମେ ପୁରୁଷମାନଙ୍କ ପରିବର୍ତ୍ତେ ସେହି ଝିଅମାନେ ନାରୀ ଭୂମିକାରେ ଅଭିନୟ କଲେ ଏବଂ ପୋଖତ ଶିକ୍ଷୀ ବନିଗଲେ ।

ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚ 'କ'ର ପ୍ରଥମ ଦଶ ବର୍ଷ ନିଜର କୌଣସି ସ୍ଥାୟୀ ମଞ୍ଚ ନଥିଲା । ବିଭିନ୍ନ ଜିଲ୍ଲାରେ ଏମାନେ ଅସ୍ଥାୟୀ ମଞ୍ଚ ନିର୍ମାଣ କରି ନାଟକ ପ୍ରଦର୍ଶନ କରୁଥିଲେ । ବର୍ଷାଋତୁରେ କଟକରେ ଗୋଟିଏ ଭଡ଼ାଘରେ ନୂଆ ନାଟକର ରିହର୍ସାଲ୍ କରାଯାଉଥିଲା । ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚ 'ଖ' ଆରମ୍ଭ ହେବାପରେ 'କ' ଦଳ ସ୍ଥାୟୀ ଭାବରେ ପୁରୀ ବଡ଼ଦାଣ୍ଡରେ ପୋଲିସ୍ ଥାନା ସମ୍ମୁଖରେ ଏକ ତିନି ମହଲା କୋଠାଘରେ ମଞ୍ଚ ପ୍ରତିଷ୍ଠା କଲେ । ଉତ୍ତର ପାର୍ଶ୍ୱ ମଠର ମହନ୍ତ ପ୍ରଥମେ ପାଞ୍ଚବର୍ଷ ପାଇଁ କୋଠାଘରଟିକୁ ଭଡ଼ା ଦେଇଥିଲେ । କିନ୍ତୁ ପରେ ଏହା ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚ 'କ'ର ସ୍ଥାୟୀ କେନ୍ଦ୍ରରେ ପରିଣତ ହେଲା ।

ଲିଙ୍ଗରାଜ ନନ୍ଦ ଲକ୍ଷ୍ମୀପ୍ରିୟାଙ୍କୁ 'ଖ' ଦଳକୁ ଆଣିବା ସମୟରେ ତାଙ୍କର ବୟସ ଥିଲା ପ୍ରାୟ ସତର । ସେ 'ପି.ଡବ୍ଲ୍ୟୁ.ଡି.' ନାମକ ନାଟକରେ ମାଧବୀ ଭୂମିକାରେ ଅଭିନୟ କରିସାରିଥିଲେ । କେତେକ ସୋଲୋ ନୃତ୍ୟ ଓ ଗ୍ରୁପ୍ ନୃତ୍ୟରେ ମଧ୍ୟ ଭାଗ ନେଇସାରିଥିଲେ । ସର ଓ ହାରାମଣିଙ୍କ ସହିତ ସେ ଗୋଟିଏ ଗ୍ରୁପ୍ ନାଚରେ ଭାଗ ନେଇଥିଲେ । ମଣିପୁରୀ ନୃତ୍ୟ ଶୈଳୀରେ ଏହି ନାଚଟିର ପରିକଳ୍ପନା କରିଥିଲେ କାଶୀନାଥ ସାହୁ । ଏହି ନୃତ୍ୟଟି 'ମନର କଥା କହିବି କାହାକୁ ସଖୀରେ' ଗୀତ ଉପରେ ଆଧାରିତ ହୋଇଥିଲା । 'ନୀଳ ଯମୁନା କୂଳେ କାଳିଆ' ଗୀତ ଉପରେ ଆଧାରିତ ସୋଲୋ ନାଚ ମଧ୍ୟ ସେ ପ୍ରଦର୍ଶନ କରିଥିଲେ । ନାଚକଟିର ପରିକଳ୍ପନା କରିଥିଲେ ଲକ୍ଷ୍ମୀନାରାୟଣ ପାତ୍ର ।

'ଖ' ଦଳରେ ମାଧବୀଙ୍କ ନୃତ୍ୟ ପରିବେଷଣ ଜନସାଧାରଣଙ୍କର ବିଶେଷ ଦୃଷ୍ଟି ଆକର୍ଷଣ କଲା । ପୂର୍ବରୁ 'କ' ଦଳରେ ତ ତାଙ୍କର ନୃତ୍ୟ ପ୍ରତିଭା ସଂପର୍କରେ ସମସ୍ତେ ଅବହିତ ଥିଲେ । ନୃତ୍ୟ କୌଶଳରେ ସେ ଦର୍ଶକମାନଙ୍କୁ ଯଥାର୍ଥରେ ମନ୍ତ୍ରମୁଗ୍ଧ କରିଦେଲେ ।



ଗଣତନ୍ତ୍ର ଦିବସରେ ଓଡ଼ିଶାର ଲୋକନୃତ୍ୟ ଶିଳ୍ପୀଙ୍କ ସହିତ ଇନ୍ଦିରା ଗାନ୍ଧୀ

ତାଙ୍କ ନୃତ୍ୟରେ ଅନୁପ୍ରାଣିତ ହୋଇ ପ୍ରଥମ ଥର ପାଇଁ କେତୋଟି ଝିଅ ସାମାଜିକ କଟକଣା ସତ୍ତ୍ୱେ ଓଡ଼ିଶୀ ନୃତ୍ୟ ଶିଖିଲେ ।

୧୯୪୬ ମସିହାରେ ମାତ୍ର ଅଳ୍ପ କେତେମାସ ମଧ୍ୟରେ ତିନୋଟି ପେଶାଦାର ରଙ୍ଗମଞ୍ଚ ଅନ୍ନପୂର୍ଣ୍ଣା 'କ' ଓ 'ଖ' ତଥା କାଳୀଚରଣ ପଟ୍ଟନାୟକଙ୍କ ଓଡ଼ିଶା ଥିଏଟର୍ ନାରୀ ଶିଳ୍ପୀମାନଙ୍କ ଦ୍ୱାରା ଓଡ଼ିଶୀ ପରିବେଷଣ ପାଇଁ ସତେ ଯେପରି ପ୍ରତିଯୋଗିତା ଆରମ୍ଭ କରିଦେଲେ । ସେ ପର୍ଯ୍ୟନ୍ତ ଓଡ଼ିଶୀ ନୃତ୍ୟଶୈଳୀ ସଂପୂର୍ଣ୍ଣ ବିକଶିତ ହୋଇ ନଥାଏ; ଓଡ଼ିଶୀ ସଂଗୀତ ଉପରେ ବିଶେଷ ପ୍ରାଧାନ୍ୟ ଦିଆଯାଉଥାଏ । ସେହିବର୍ଷ ଜୁଲାଇ ମାସରେ କାଳୀଚରଣ ପଟ୍ଟନାୟକ ତାଙ୍କ ନିଜର ନାଟକ 'ଅଭିଯାନ' ମଞ୍ଚସ୍ଥ କଲେ । ଏହାର ନିର୍ଦ୍ଦେଶନା ଦେଇଥିଲେ ଅଦ୍ୱୈତ ଚରଣ ମହାନ୍ତି ଏବଂ ଦୁର୍ଲଭ ଚନ୍ଦ୍ର ସିଂହ । ଏଥିରେ ନାରୀ ନୃତ୍ୟଶିଳ୍ପୀ ସବ ରାଜା ପୁରୁଷୋତ୍ତମ ଦେବଙ୍କ ଦରବାରରେ ଗୋଟିଏ ମାହାରୀ ଗୀତ ଗାନ କରିବାର ଦୃଶ୍ୟ ଥିଲା ।

ଠିକ୍ ସେହି ସମୟରେ ଅନ୍ନପୂର୍ଣ୍ଣା 'କ' ଦଳ ମଞ୍ଚସ୍ଥ କଲେ ନାଟକ 'କବିସୂର୍ଯ୍ୟ' । ଏହା କବିସୂର୍ଯ୍ୟ ବଳଦେବ ରଥଙ୍କ ଜୀବନୀ ଉପରେ ଆଧାରିତ ଥିଲା । ଏଥିରେ ଆଠଗଡ଼ ରାଜାଙ୍କ ଦରବାରରେ ହାରାମଣି ଓଡ଼ିଶୀ ନୃତ୍ୟ ପରିବେଷଣ କରିଥିଲେ । 'କବିସୂର୍ଯ୍ୟ' ନାଟକଟି ଲେଖିଥିଲେ ରାମଚନ୍ଦ୍ର ମିଶ୍ର; ଏହାର ନିର୍ଦ୍ଦେଶନା ଦେଇଥିଲେ କାର୍ତ୍ତିକ କୁମାର ଘୋଷ । ହାରାମଣିଙ୍କୁ ନୃତ୍ୟଶିକ୍ଷା ଦେଇଥିଲେ ଗୋଟିପୁଅ ଓସ୍ତାଦ୍ ହରିହର ପଣ୍ଡା ।

'ଅଭିଷେକ' ନାଟକରେ ଲକ୍ଷ୍ମୀପ୍ରିୟାଙ୍କ ନୃତ୍ୟ ପରିବେଷଣ ସର ଓ ହାରାମଣିଙ୍କ ପୂର୍ବରୁ ବା ପରେ ହୋଇଥିଲା, ତାହା କହିବା ସହଜ ନୁହେଁ । କିନ୍ତୁ ନାରୀ ନୃତ୍ୟଶିଳ୍ପୀମାନେ ମଞ୍ଚ ଉପରେ ସୋଲୋ ଓଡ଼ିଶୀ ନୃତ୍ୟ ପରିବେଷଣ କରିବା ମୂଳରେ ଥିଲା ଲକ୍ଷ୍ମୀପ୍ରିୟାଙ୍କ ଉତ୍ସାହ ଓ ପ୍ରେରଣା । ତାଙ୍କରି ପାଇଁ ବହୁ ଝିଅ ଓଡ଼ିଶୀ ନୃତ୍ୟ ଶିଖିବାରେ ଆଗ୍ରହୀ ହୋଇଥିଲେ । ପୂର୍ବରୁ ଉଲ୍ଲେଖ କରାଯାଇଥିବା ଗୀତ ଦୁଇଟିକୁ ବହୁ ନୃତ୍ୟଶିଳ୍ପୀ ସେମାନଙ୍କ ନୃତ୍ୟର ଆଧାର ରୂପେ ଗ୍ରହଣ କରିଥିଲେ । କେଳୁଚରଣ ଓ ଲକ୍ଷ୍ମୀପ୍ରିୟା ନୃତ୍ୟ ବା ପଖଉଜ ବାଦନରେ ପରସ୍ପର ସହିତ ସହଯୋଗ କରିଥିଲେ ।

'ଅଭିଷେକ' ନାଟକରେ ସଫଳତା ପରେ ଲକ୍ଷ୍ମୀପ୍ରିୟା 'ଫେରିଆ' ନାଟକରେ ମୁଖ୍ୟ ନାୟିକା ଭୂମିକାରେ ଅଭିନୟ କଲେ । ଏହା ଥିଲା ଗୋପାଳ ଛୋଟରାୟଙ୍କ ଲିଖିତ ଏକ ସାମାଜିକ-ରାଜନୀତିକ ନାଟକ । ଏହାର ନିର୍ଦ୍ଦେଶନା ଦେଇଥିଲେ ସାମୁଏଲ ସାହୁ (ବାବି) । ଦେଶପ୍ରେମ ଥିଲା ଏହାର ବିଷୟବସ୍ତୁ । ସ୍ୱାଧୀନତାର ଅବ୍ୟବହିତ ପୂର୍ବରୁ ଗାଆଁକୁ ଫେରିଯିବା ପାଇଁ ମହାତ୍ମା ଗାନ୍ଧୀଙ୍କ ଆହ୍ୱାନ ଏ ନାଟକରେ ପ୍ରତିଫଳିତ ହୋଇଥିଲା । ୧୯୪୬ ଅଗଷ୍ଟ ୯ରୁ ଆରମ୍ଭ ହୋଇ ଏ ନାଟକ ଡିସେମ୍ବର ଯାଏଁ ଚାଲିଲା । 'ଖ' ଦଳର ଏହା ଥିଲା ସବୁଠାରୁ ସଫଳ ନାଟକମାନଙ୍କ ମଧ୍ୟରେ ଅନ୍ୟତମ ।

ଅନ୍ନପୂର୍ଣ୍ଣା 'ଖ'ଦଳର ପରବର୍ତ୍ତୀ ନାଟକଟି ଥିଲା ଅଦ୍ୱୈତ ଚରଣ ମହାନ୍ତିଙ୍କ ଲିଖିତ 'ସାଧବ ଝିଅ' । ନାଟକର ବିଷୟବସ୍ତୁ ସଂପର୍କରେ ଆଲୋଚନା କରିବା ପାଇଁ ନିର୍ଦ୍ଦେଶକ ଓ ଲେଖକ ମିଳିତ ହେଲେ । ଲିଙ୍ଗରାଜ ନନ୍ଦଙ୍କର ବିଶେଷ ଆଗ୍ରହ ଥିଲା ନାଟକ ମଧ୍ୟରେ ନୃତ୍ୟଟିଏ ସଂଯୋଜନା କରିବା । ନାଟକର କାହାଣୀଟି ଥିଲା ଲୋକକଥାର ତଅପୋଇ ଏବଂ ତାଙ୍କର ସାତଭାଇ ବାଣିଜ୍ୟ ଉଦ୍ଦେଶ୍ୟରେ ସମୁଦ୍ର ପାର ହୋଇ ଜାଭା ଓ ସୁମାତ୍ରା ଦ୍ୱୀପକୁ ଯାତ୍ରା କରିବା । ତଅପୋଇଙ୍କ ସାଧବ ଭାଇମାନେ ଏହି ଦ୍ୱୀପର ଅଧିବାସୀମାନଙ୍କୁ ଆକର୍ଷିତ କରିବା ପାଇଁ ପୌରାଣିକ ବିଷୟବସ୍ତୁ ଉପରେ ଆଧାରିତ ନୃତ୍ୟଟିଏ ପରିବେଷଣ କରିବେ ଏବଂ ହିନ୍ଦୁ ଦେବଦେବୀ ଅଙ୍କିତ ପଟଚିତ୍ର ପ୍ରଦର୍ଶନ କରିବେ ବୋଲି ସ୍ଥିର ହେଲା । ନାଟକର ନିର୍ଦ୍ଦେଶକ ଦୁର୍ଲଭ ଚନ୍ଦ୍ର ସିଂହ ପ୍ରସ୍ତାବ ଦେଲେ- ଜୟଦେବଙ୍କ 'ଗୀତଗୋବିନ୍ଦ'ର ଦଶାବତାର ନୃତ୍ୟଟି ଆଧାର ହେବ । ୧୯୪୩ରେ ଅଭିନୀତ କାଳୀଚରଣ ପଟ୍ଟନାୟକଙ୍କ 'ଜୟଦେବ' ନାଟକରେ ଦୁର୍ଲଭ ଦଶାବତାର ସଂଗୀତଟି ଗାନ କରିଥିଲେ । ସ୍ଥିର ହେଲା, ଗୀତଟି ଦଶ ମାତ୍ରା ବିଶିଷ୍ଟ ତାଳରେ ଶୁଦ୍ଧ କଲ୍ୟାଣ ରାଗରେ ନୃତ୍ୟ ସହିତ ଗାନ କରାଯିବ ।

ଓଡ଼ିଶୀ ନୃତ୍ୟର ଉଦ୍ଭବ ଓ ବିକାଶ ଭଳି ଐତିହାସିକ ଘଟଣା ବହୁ ବ୍ୟକ୍ତିଙ୍କ ସାମୂହିକ ଉଦ୍ୟମର ପରିଣତି । ଏଥିପାଇଁ କୌଣସି ନିର୍ଦ୍ଦିଷ୍ଟ ବ୍ୟକ୍ତିର ଅବଦାନ ଚିହ୍ନଟ କରିବା କଠିନ । କେବଳ ସେ ସମୟର ପରିସ୍ଥିତି ଏବଂ ବାତାବରଣ ସଂପର୍କରେ କିଛି କୁହାଯାଇପାରେ ।

ଦୁର୍ଲଭ ଚନ୍ଦ୍ର କେବଳ ମଞ୍ଚ ନିର୍ଦ୍ଦେଶକ ନଥିଲେ, ସେ ମଧ ଥିଲେ ମୃଦଙ୍ଗ ଓ ତାବ୍‌ଲା ବାଦକ, ଗାୟକ ତଥା ଅଭିନେତା । ପଙ୍କଜ ଚରଣ ଦାସ ଥିଲେ ନାଚ ଓସ୍ତାଦ୍ । କେଳୁଚରଣ ଥିଲେ ନୃତ୍ୟଶିଳ୍ପୀ ତଥା ତାବ୍‌ଲା ବାଦକ । ହରିହର ରାଉତ ଥିଲେ ତାବ୍‌ଲା ବାଦକ । ମଧୁ ପଲେଇ ଗୀତ ଓସ୍ତାଦ୍ । ଲିଙ୍ଗରାଜ ନନ୍ଦ ଏବଂ ଅଦ୍ୱୈତ୍ ଚରଣ ମହାନ୍ତି ଥିଲେ ସଂଯୋଜକ ତଥା ଉପଦେଷ୍ଟା । ଏ ସମସ୍ତଙ୍କର ଅବଦାନ ଥିଲା ଓଡ଼ିଶୀ ନୃତ୍ୟର ଉଦ୍ଭବ ଓ ବିକାଶରେ ।

କାଳୀଚରଣ ପଟ୍ଟନାୟକଙ୍କ ନାଟ୍ୟଦଳ ଛାଡ଼ିବାରେ ଦୁର୍ଲଭ ଚନ୍ଦ୍ର ଥିଲେ ଶେଷ ଅଭିନେତା । ମାତ୍ର ଏଗାର ବର୍ଷ ବୟସରୁ ସେ ଦୀର୍ଘ ଉଣେଇଶି ବର୍ଷ କାଳୀଚରଣଙ୍କ ଅଧୀନରେ କାର୍ଯ୍ୟ କରିଥିଲେ ଏବଂ ତାଙ୍କ ପୁଅ ଭଳି ଥିଲେ । ପ୍ରଥମ ଆଠବର୍ଷ ସେ କାଳୀଚରଣଙ୍କ ରାସଲୀଳାରେ ଅଭିନୟ କରିଥିଲେ– ପ୍ରଥମେ ପୁରୀରେ, ତା'ପରେ କଟକରେ । ପରେ ଓଡ଼ିଶା ଥିଏଟର୍ ସହିତ ମଧ ସେ ସଂପୃକ୍ତ ରହିଲେ । ଅନ୍ୟମାନଙ୍କଠାରୁ ଶୁଣି ଓ ଦେଖି ନୂଆ ନୂଆ କଥା ଶିଖିବା ପାଇଁ ଦୁର୍ଲଭ ଚନ୍ଦ୍ରଙ୍କର ଆଗ୍ରହକୁ କାଳୀଚରଣ ପସନ୍ଦ କରୁଥିଲେ । କଟକରେ କାଳୀଚରଣଙ୍କ ଘରେ ସବୁବେଳେ ଗାୟକ, କବି, ନାଟ୍ୟକାରମାନଙ୍କ ସମାବେଶ ହେଉଥିଲା; ନାଟକ ତଥା ସଂଗୀତର ଆଲୋଚନା ଏବଂ ପରିବେଷଣ ମଧ୍ୟ ହେଉଥିଲା ।

ତରୁଣ ଦୁର୍ଲଭଙ୍କର ସ୍ମରଣ ଶକ୍ତି ପ୍ରଖର ଥିଲା । ବିଭିନ୍ନ ଛନ୍ଦ, ତାଳ, ଗୀତ, ନୃତ୍ୟର ପଦଚାଳନା ସେ ଅକ୍ଳେଶରେ ଶିଖି ନେଉଥିଲେ ଏବଂ ନିଜ କଳ୍ପନା ଶକ୍ତି ବଳରେ ନୂତନ ଭାବରେ ପ୍ରକାଶ କରିପାରୁଥିଲେ । କାଳୀଚରଣଙ୍କ ଘରେ ସଂଧ୍ୟା ଆଳତି ସମୟରେ ହେଉଥିବା ଖୋଳ ବାଦନ ସେ ଶିଖିନେଲେ । ଏହାପରେ ତାବ୍‌ଲା ଓ ଧ୍ରୁପଦ ପଖଉଜ ବଜାଇବା ତାଙ୍କ ପାଇଁ ସହଜ ହେଲା । ଅନ୍ୟ ତାବ୍‌ଲା ବାଦକ ହରିହର ରାଉତ ତାଙ୍କଠାରୁ ତାବ୍‌ଲା ବଜାଇବା ଶିଖିଥିଲେ । କାଳୀଚରଣଙ୍କଠାରୁ ସେ ଶିଖିଥିଲେ ନୃତ୍ୟ କଳାର ଶାସ୍ତ୍ରୀୟତା । ରିଆଜ୍ ଅପେକ୍ଷା ଅନ୍ୟମାନଙ୍କୁ ଅନୁକରଣ କରି ସେ ନୃତ୍ୟକଳା ଶିଖିଥିଲେ । କିନ୍ତୁ ନୃତ୍ୟଶିଳ୍ପୀ ଭାବରେ ସେ ବିଶେଷ ଉନ୍ନତି କରିପାରି ନଥିଲେ । କାରଣ ଅଳ୍ପ ବୟସରୁ ର୍‌ହ୍ୟୁମାଟିଜ୍‌ମ୍ ଦ୍ୱାରା ଆକ୍ରାନ୍ତ ହୋଇପଡ଼ିବାରୁ ତାଙ୍କର ଆଣ୍ଠୁଗଣ୍ଠି ଦୁର୍ବଳ ହୋଇଥିଲା । ଥରେ ଏହି ରୋଗରେ ଆକ୍ରାନ୍ତ ହେବାପରେ ମାତ୍ର ଅଣତିରିଶି ବର୍ଷ ବୟସରେ ସେ ଏବଂ ତାଙ୍କର ଅଭିନେତ୍ରୀ–ନୃତ୍ୟଶିଳ୍ପୀ ପତ୍ନୀ ଲକ୍ଷ୍ମୀପ୍ରିୟା କାଳୀଚରଣଙ୍କ ଓଡ଼ିଶା ଥିଏଟର ଛାଡ଼ି ଅନ୍ନପୂର୍ଣ୍ଣା 'ଖ' ଦଳରେ ଯୋଗଦେଲେ ।

'ଦଶାବତାର' ନୃତ୍ୟରେ ଦୁର୍ଲଭଙ୍କ ଅବଦାନ ଥିଲା ସୁଦୂରପ୍ରସାରୀ । ଏହି ନୃତ୍ୟର ଛନ୍ଦ ତଥା ବୋଲ୍ ସେ ସଂରଚନା କରିଥିଲେ ୧୯୪୭ ମସିହାରେ । ବର୍ତ୍ତମାନ ମଧ ତାହାହିଁ ମୋଟାମୋଟି ଓଡ଼ିଶୀ ନୃତ୍ୟଶିଳ୍ପୀମାନଙ୍କ ଦ୍ୱାରା ଅନୁସୃତ ହେଉଅଛି । ପ୍ରଥମେ ଦୁର୍ଲଭ ଧ୍ରୁପଦ ରୀତିରେ ନୃତ୍ୟ ପରିବେଷଣ କରୁଥିଲେ; ବର୍ତ୍ତମାନ କେଳୁଚରଣଙ୍କ ଓଡ଼ିଶୀ 'ବାଣୀ'



ଦଶାବତାର ଅଭିନୟରେ କେଳୁଚରଣ ଓ ଲକ୍ଷ୍ମୀପ୍ରିୟା

ଜନପ୍ରିୟ ହୋଇଛି । ଉଦାହରଣ ସ୍ୱରୂପ, ପ୍ରଥମେ ଥିଲା–

ଧା ତେଟେ ଧାଗେ କୁଧା ତେଟେ, ତା ତେଟେ ତାଗେ କୁଦା ତେଟେ,
ଧେରେଧେରେ କିଟିଟାକ ଧେଇ ଧେଇ ତାକ, ଧୁମା କିଟା ଧୁମ୍ କିଟା ତାକ୍,
ତାକ ଧୁମ୍ ଧୁମ୍ କିଟା ତାକ...
ଏବଂ ପରେ ହେଲା–

ତା ଇତି ନାକଡ଼ତାକ ଧିନା କେଟେ, ତା ଇତି ନାକଡ଼ତାକ ଧିନା କେଟେ, ଧେଇ ତେରେ କେଟେତାକ ଧେଇ ଧେଇ ତା, ତାଦିତ୍‌ନାମ୍ ତା ତାଦିତ୍‌ନାମ୍, ତାଦିତ୍‌ନାମ୍ ଟା ତାଦିତ୍‌ନାମ୍...

ଏବଂ ବୁଦ୍ଧ ଅବତାର ସଂପର୍କରେ ପ୍ରଥମେ ପଦବିନ୍ୟାସ ଥିଲା–

କ୍ଡ଼ାକ୍ ଧୁମାକେଟେ ଦ୍‌ଧାକ୍ ତାକ୍‌ତାକ୍ ଧୁମାକିଟା ଦ୍‌ଧାକ୍ ଧୁମାକିଟ ତାକ୍‌ଧୁମା କିଟାତାକ୍ ଧୁମାକିଟା

ପରେ ହେଲା–

ତାମ୍ ଦାଧିଗେନେ ଧେଇ ତାମ୍ ଦାଧିଗେନେ,

ଧେଇ ତିଂଗିନେ ଧେଇ ତିଂଗିନେ ଧେଇ ତିଂଗିନେ ।

ଗୋଟିଏ ଅବତାରରୁ ଅନ୍ୟ ଅବତାରର ପାର୍ଥକ୍ୟ ମୁଦ୍ରା ବା ହସ୍ତଚାଳନା ଦ୍ୱାରା ଦର୍ଶାଇବା ଆବଶ୍ୟକ ଥିଲା । ନୃତ୍ୟ ସଂରଚନା କରୁଥିବା ଶିକ୍ଷୀମାନେ ନାଟ୍ୟଶାସ୍ତ୍ର ବା ଅଭିନୟ ଦର୍ପଣ ସହିତ ପରିଚିତ ନଥିଲେ । ଦୁର୍ଲଭ ପ୍ରସ୍ତାବ ଦେଲେ ଯେ ପ୍ରଜେସ୍ ବାନାର୍ଜୀଙ୍କ 'ଡ୍ୟାନ୍ସେସ୍ ଅଫ୍ ଇଣ୍ଡିଆ' ଗ୍ରନ୍ଥଟି ମଗାଯାଉ । ଏଥିରେ ବିଭିନ୍ନ ମୁଦ୍ରାର ଚିତ୍ର ଓ ବର୍ଣ୍ଣନା ଅଛି । ଡଃ ଏ.ସି. ମହାନ୍ତିଙ୍କ ସହଯୋଗରେ ବହିଟି କଲିକତାରୁ ଅଣାଗଲା । ପ୍ରଥମ ଥର ପାଇଁ ଏକ ଲିଖିତ ପାଠ୍ୟର ସହାୟତାରେ ଓଡ଼ିଶାରେ ନୃତ୍ୟଟିଏ ସଂରଚିତ ହେଲା ।

ଦୁର୍ଲଭ ଚନ୍ଦ୍ର ନୃତ୍ୟଟିର ଛନ୍ଦ ବିନ୍ୟାସ କଲେ ହରିହର ରାଉତ ଏବଂ କେଳୁଚରଣଙ୍କ ସହିତ । ସେ ମଧ୍ୟ ଠିକ୍ ମୁଦ୍ରା ନିର୍ଣ୍ଣୟରେ ସାହାଯ୍ୟ କଲେ । ପଙ୍କଜବାବୁ ନୃତ୍ୟଟିର କୋରିଓଗ୍ରାଫି (ଦୃଶ୍ୟ ରୂପ) ପ୍ରସ୍ତୁତ କଲେ । ସଂସ୍କୃତ ଶ୍ଳୋକର ଅର୍ଥ ବୁଝିବାରେ ତାଙ୍କୁ ସହାୟତା ଦେଲେ ଲିଙ୍ଗରାଜ ନନ୍ଦ ଏବଂ ଅଦ୍ୱୈତ ଚରଣ ମହାନ୍ତି । ନୃତ୍ୟଶିଳ୍ପୀ ଦ୍ୱୟ ଥିଲେ କେଳୁଚରଣ ଏବଂ ଲକ୍ଷ୍ମୀପ୍ରିୟା । କେଳୁଚରଣଙ୍କ ଭୂମିକା ଥିଲା ମୁଖ୍ୟ । ସେ ପଙ୍କଜ ଚରଣ ଏବଂ ଦୁର୍ଲଭଙ୍କ ନିର୍ଦ୍ଦେଶନାକୁ ନୃତ୍ୟରେ ରୂପାୟିତ କରିଥିଲେ । ଲକ୍ଷ୍ମୀପ୍ରିୟାଙ୍କୁ ମଧ୍ୟ ସେ ଆବଶ୍ୟକୀୟ ପରାମର୍ଶ ଦେଇଥିଲେ । ତାଙ୍କ ନିଜର ଅନ୍ତର୍ଦୃଷ୍ଟି ଓ ସୃଜନଶୀଳତା ଏହି ନୃତ୍ୟରେ ପ୍ରକଟିତ ହୋଇଥିଲା ।

ଆଜି ପର୍ଯ୍ୟନ୍ତ ସେହି ନୃତ୍ୟ ସଂରଚନା ପ୍ରାୟ ଅପରିବର୍ତ୍ତିତ ରହିଛି । ଦଶାବତାର 'ଅଭିନୟ'ରେ ହସ୍ତର ମୁଦ୍ରା ତଥା ମୁଖର ଭଙ୍ଗୀ ଭିନ୍ନ ଭିନ୍ନ ଅବତାରରେ ପରିବର୍ତ୍ତିତ ହେଉଥାଏ । ଏହିପରି ଛନ୍ଦାୟିତ ରୀତିରେ ପ୍ରତି ଅବତାରର ଚରିତ୍ରକୁ ପ୍ରକଟ କରାଯାଏ । ନୃତ୍ୟଶିଳ୍ପୀମାନେ ମିଳିତ ଭାବରେ ନୃତ୍ୟ ପରିବେଷଣ କରୁଥିଲେ ମଧ୍ୟ ଅଭିନୟରେ ଏକାକୀ କେଳୁଚରଣ ସଂଗୀତର ନୃତ୍ୟ ରୂପ ପ୍ରଦର୍ଶନ କରନ୍ତି । ଲକ୍ଷ୍ମୀପ୍ରିୟା ଅଞ୍ଜଳି ହସ୍ତରେ ଭକ୍ତ ଭାବରେ ତାଙ୍କ ନିକଟରେ ଉପସ୍ଥିତ ରହନ୍ତି ।

ଏହି ନୃତ୍ୟ ପାଇଁ ଲକ୍ଷ୍ମୀପ୍ରିୟା ପରିଧାନ କରିଥାନ୍ତି ଗୋଟିଏ କାଞ୍ଚଳା (ଭେଲଭେଟ୍ ବ୍ଲାଉଜ୍) । ତାହା ଉପରେ ପଡ଼ିଥାଏ 'ଭି' ଆକାରରେ ଗୋଟିଏ ଉତ୍ତରୀୟ । ଉତ୍ତରୀୟର ଦୁଇ କାନି ପୃଷ୍ଠଦେଶରେ ପଡ଼ିଥାଏ । କେଳୁଚରଣ ତାଙ୍କ ଧୋତି ଓ ଲକ୍ଷ୍ମୀପ୍ରିୟା ତାଙ୍କ ଶାଢ଼ୀ ଗୋଟିପୁଅମାନଙ୍କ ଭଳି 'ଫେରି କଚ୍ଛା' ରୀତିରେ ପିନ୍ଧିଥାନ୍ତି । ଉଭୟେ ମୋତିମାଳ ଓ ମୁକୁଟ ପରିଧାନ କରିଥାନ୍ତି ।

ଏହି ନୃତ୍ୟର ସଫଳତା ଓଡ଼ିଶୀ ନୃତ୍ୟର ଉଜ୍ଜ୍ୱଳ ଭବିଷ୍ୟତ ସୂଚାଇଦେଲା । ଏକଥା ମଧ୍ୟ ସ୍ପଷ୍ଟ ହେଲା ଯେ, ସେଯାଏଁ ଏହି ନୃତ୍ୟର ମୂଳଭିତ୍ତି ଦୃଢ଼ ନଥିଲା । ଏହି ସମୟରେ ଆନ୍ଧ୍ରପ୍ରଦେଶରୁ ଦୟାଲ୍ ଶରଣଙ୍କ ନୃତ୍ୟ ଦଳ କଟକ ଆସିଲେ । ଓଡ଼ିଶାରେ ନୃତ୍ୟଶିଳ୍ପର ବିକାଶ ତଥା କେଳୁଚରଣଙ୍କ ନୃତ୍ୟ ଜୀବନର ଗତି ନିର୍ଦ୍ଧାରଣ କରିବାରେ ଏ ଘଟଣାଟି ଥିଲା ବିଶେଷ ଗୁରୁତ୍ୱପୂର୍ଣ୍ଣ ।

ଦୟାଲ୍ ଶରଣ ଥିଲେ ଜଣେ ତେଲୁଗୁ । ଉତ୍ତର ଭାରତର କଥକ ଏବଂ ଦକ୍ଷିଣ ଭାରତର ଭାରତନାଟ୍ୟମ୍ ଭଳି ବିଭିନ୍ନ ଭାରତୀୟ ନୃତ୍ୟରେ ସେ ତାଲିମ୍ ନେଇଥିଲେ । ଚତୁର୍ଥ ଦଶକର ପ୍ରଥମ ଭାଗରେ ଆଲ୍‌ମୋରାଠାରେ ଉଦୟ ଶଙ୍କରଙ୍କ ପ୍ରତିଷ୍ଠିତ ଭାରତୀୟ ସାଂସ୍କୃତିକ କେନ୍ଦ୍ର (ଇଣ୍ଡିଆ କଲ୍‌ଚରାଲ୍ ସେଣ୍ଟର୍)ରେ ସେ ଯୋଗ ଦେଇଥିଲେ । ଭାରତୀୟ ନୃତ୍ୟ ପରମ୍ପରା ପୁନରୁଦ୍ଧାର କରିବାରେ ସେ ଥିଲେ ଅଗ୍ରଣୀ । ଏଠାରେ ଦୟାଲ୍ ଆଉ ଦୁଇଟି ନୃତ୍ୟରୀତି ସହିତ ପରିଚିତ ହେଲେ– ଉତ୍ତରପୂର୍ବ ଭାରତର ମଣିପୁରୀ ଏବଂ ଦକ୍ଷିଣର କଥାକଳି । ସେ ମଧ୍ୟ ପରିଚିତ ହେଲେ ନୃତ୍ୟ ଶିକ୍ଷାରେ ଉଦୟ ଶଙ୍କରଙ୍କ ସୃଜନଶୀଳତା ତଥା ନୂତନ ଦୃଷ୍ଟିଭଙ୍ଗୀ ସହିତ । ଦୁଃଖର ବିଷୟ, ୧୯୪୪ରେ ଯକ୍ଷ୍ମା ରୋଗରେ ପୀଡ଼ିତ ହୋଇ ତାଙ୍କୁ ଆଲ୍‌ମୋରା ଛାଡ଼ିବାକୁ ପଡ଼ିଲା । ବ୍ୟାଧିରୁ ଆରୋଗ୍ୟ ହେବାପରେ ସେ ତାଙ୍କ ନିଜର ନୃତ୍ୟଦଳଟିଏ ଗଢ଼ିଲେ । ବିଭିନ୍ନ ରାଜ୍ୟକୁ ଯାଇ ସେ ରଙ୍ଗମଞ୍ଚ ଭଡ଼ା ନେଇ ଟିକେଟ୍ ବିକ୍ରି କରି ନୃତ୍ୟ ପ୍ରଦର୍ଶନ କଲେ ।

ବିଭିନ୍ନ ରାଜ୍ୟ ଭ୍ରମଣ ସମୟରେ ଛଅ ବା ସାତଜଣ ନୃତ୍ୟଶିଳ୍ପୀଙ୍କ ସହିତ ଦୟାଲ୍ କଟକ ଆସିଲେ । ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚଟି ଭଡ଼ା ନେଇ ତିନୋଟି ସନ୍ଧ୍ୟାରେ ସେ ନୃତ୍ୟ ପରିବେଷଣ କଲେ । ପ୍ରଥମ ଦୁଇଦିନ ଟିକେଟ୍ ଏତେ କମ୍ ବିକ୍ରି ହୋଇଥିଲା ଯେ ରଙ୍ଗମଞ୍ଚର ଭଡ଼ା ମଧ୍ୟ ଉଠିବ ନାହିଁ ବୋଲି ତାଙ୍କର ମନେହେଲା । ଏହା ମଧ୍ୟରେ ସେ କେଳୁଚରଣ ଓ ଲକ୍ଷ୍ମୀପ୍ରିୟାଙ୍କ ନୃତ୍ୟ ରିହର୍ସାଲ୍ ଦେଖିସାରିଥିଲେ । ସେଥିରେ ମୁଗ୍ଧ ହୋଇ ସେ ଲିଙ୍ଗରାଜ ନନ୍ଦଙ୍କୁ ପ୍ରସ୍ତାବ ଦେଲେ, ଅନ୍ନପୂର୍ଣ୍ଣା ଦଳ ସହିତ ମିଳିତ ଭାବରେ କାର୍ଯ୍ୟକ୍ରମ କରିବା ପାଇଁ । ତୃତୀୟ ଦିନ ଅନ୍ନପୂର୍ଣ୍ଣା ଦଳ ପ୍ରଥମେ 'ଦଶାବତାର' ନୃତ୍ୟ ଓ ପରେ 'ନାହିଁକି କରିଦେଲ' ଏବଂ 'ମୋହିନୀ ଭସ୍ମାସୁର' ନୃତ୍ୟ ପରିବେଷଣ କଲେ । ମଧ୍ୟ ବିରତି ପରେ ଦୟାଲ୍‌ଙ୍କ ନୃତ୍ୟଦଳ ତାଙ୍କ ନୃତ୍ୟ ପରିବେଷଣ କଲେ । ନିଜେ ଦୟାଲ୍ ଦୁଇଟି ସୋଲୋ ନୃତ୍ୟ ପ୍ରଦର୍ଶନ

କଲେ– 'ବ୍ୟାଧ' ଓ 'ସୂର୍ଯ୍ୟ' । ପ୍ରଥମ ଦୁଇ ସନ୍ଧ୍ୟା ତୁଳନାରେ ତୃତୀୟ ସନ୍ଧ୍ୟାରେ ଓଡ଼ିଆ ଦର୍ଶକଙ୍କ ସଂଖ୍ୟା ଥିଲା ଖୁବ୍ ଅଧିକ । ସେମାନେ କାର୍ଯ୍ୟକ୍ରମର ପ୍ରଥମ ଭାଗ ଅର୍ଥାତ୍ 'ଦଶାବତାର' ନୃତ୍ୟକୁ ଖୁବ୍ ପସନ୍ଦ କରି ଘନଘନ କରତାଳି ଦେଲେ । ଏତେ ସଂଖ୍ୟକ ଦର୍ଶକଙ୍କ ଉପସ୍ଥିତି ସତ୍ତ୍ୱେ ଦୟାଲ୍ ରଙ୍ଗମଞ୍ଚର ଭଡ଼ା ମଧ୍ୟ ଉଠାଇ ପାରିଲେ ନାହିଁ ।

ଏହାପରେ ଦୟାଲ୍ ଲିଙ୍ଗରାଜ ନନ୍ଦଙ୍କୁ କହିଲେ– ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚ ପାଇଁ ଗୋଟିଏ ନୃତ୍ୟର ନିର୍ଦ୍ଦେଶନା ଦେଇ ସେ ତାଙ୍କ ଋଣ ପରିଶୋଧ କରିବାକୁ ଚାହାନ୍ତି । ତରୁଣ କେଳୁଚରଣଙ୍କ ପ୍ରତିଭା ସଂପର୍କରେ ସେ ଅବହିତ ଥିଲେ ଏବଂ ସୁଯୋଗ ପାଇଲେ ତାଙ୍କୁ ନୃତ୍ୟଶିକ୍ଷା ଦେବେ ବୋଲି ଭାବୁଥିଲେ । ଲିଙ୍ଗରାଜ ଦୟାଲ୍‌ଙ୍କ ପ୍ରସ୍ତାବଟି ଗ୍ରହଣ କଲେ, କିନ୍ତୁ କହିଲେ, କେଳୁଚରଣଙ୍କ ପରିବର୍ତ୍ତେ ପଙ୍କଜ ଚରଣଙ୍କୁ ସେ ନୃତ୍ୟଶିକ୍ଷା ଦିଅନ୍ତୁ । ଏହି ନୃତ୍ୟ 'ରାଧିକା' ନାଟକର ପ୍ରାରମ୍ଭରେ ପ୍ରଦର୍ଶିତ ହେବ । ନାଟକଟି ରଚନା କରିଥିଲେ ଅଦ୍ୱୈତ ଚରଣ ମହାନ୍ତି ଏବଂ ଏହାର ନିର୍ଦ୍ଦେଶନା ଦେଇଥିଲେ ଦୁର୍ଲଭ ଚନ୍ଦ୍ର ସିଂହ ।

ଦୁର୍ଲଭ ଚନ୍ଦ୍ର ଚାହୁଁଥିଲେ କେଳୁଚରଣ ଦୟାଲ୍‌ଙ୍କଠାରୁ ନୃତ୍ୟଶୈଳୀ ଶିକ୍ଷା କରନ୍ତୁ । ସେ ଦୟାଲ୍‌ଙ୍କ ନୃତ୍ୟଶୈଳୀର ବିବିଧତା ତଥା ତାଙ୍କ ଦଳର କୋରିଓଗ୍ରାଫିରେ ମୁଗ୍ଧ ହୋଇଥିଲେ । ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚ ତୁଳନାରେ ଦୟାଲ୍‌ଙ୍କ ନୃତ୍ୟଦଳର ଦୃଶ୍ୟସଜ୍ଜା ଥିଲା ଅଧିକ ମାର୍ଜିତ । ଅନ୍ନପୂର୍ଣ୍ଣା 'ଖ' ଦଳରେ ତଥାପି କୋରିଓଗ୍ରାଫି ଅପେକ୍ଷା ପଦ ଓ ହସ୍ତଚାଳନା ଉପରେ ଅଧିକ ଦୃଷ୍ଟି ଦିଆଯାଉଥିଲା । ଦୁର୍ଲଭ ଚାହୁଁଥିଲେ– ଦୟାଲ୍ କେଳୁଚରଣଙ୍କୁ ନୃତ୍ୟ ସଂରଚନା ବା କମ୍ପୋଜିସନ୍ ଶିଖାଇ ଦିଅନ୍ତୁ । ତାହାହେଲେ ସେ ନିଜେ ନୂତନ ଗୀତରେ ନୂତନ ନୃତ୍ୟ ସଂରଚନା କରିପାରିବେ । ଲିଙ୍ଗରାଜଙ୍କ ଇଚ୍ଛା ଅନୁଯାୟୀ ଦୟାଲ୍ ପଙ୍କଜ ଚରଣଙ୍କୁ ନୃତ୍ୟ ଶିଖାଇବା ଆରମ୍ଭ କଲେ । ଏଥିରେ କିନ୍ତୁ ବିଶେଷ ଅଗ୍ରଗତି ହେଲାନାହିଁ । ଦିନେ ପଙ୍କଜ କେଳୁଚରଣଙ୍କୁ ଡାକି କହିଲେ– 'କେଳୁ, ତୁ ଶିଖ୍ । ମୋର ଅଣ୍ଟାଭଙ୍ଗା ହେଉ ନାହିଁ ।'

ଏହି ନୃତ୍ୟଶିକ୍ଷା ସମୟ ଥିଲା କେଳୁଚରଣଙ୍କ ଜୀବନର ଏକ ନିବିଡ଼ ତଥା ନୂତନ ଅନୁଭୂତି । ଏହି ଅନୁଭୂତି ତାଙ୍କୁ ଯଥାର୍ଥରେ ଜଣେ ନୃତ୍ୟଶିଳ୍ପୀର ମାନ୍ୟତା ଆଣିଦେଲା । ତାଙ୍କର ଆତ୍ମବିଶ୍ୱାସ ବଢ଼ିଲା । ସେ ମନେକଲେ, ଯେକୌଣସି ବିଷୟବସ୍ତୁକୁ ଆଧାର କରି ସେ ନୂତନ ନୃତ୍ୟଶୈଳୀ ସୃଷ୍ଟି କରିପାରିବେ । ଦୟାଲ୍‌ଙ୍କ ସଂସ୍ପର୍ଶରେ ଆସି ଗୁରୁ କେଳୁଚରଣଙ୍କର ଆବିର୍ଭାବ ହେଲା ବୋଲି କୁହାଯାଇପାରେ । ଏଥିରେ ଉଦୟ ଶଙ୍କରଙ୍କର କିଛି ପରୋକ୍ଷ ଭୂମିକା ଥିଲା । ଏହି ଭୂମିକା ଉଦୟ ଶଙ୍କରଙ୍କ ଶିଷ୍ୟ ଦୟାଲ୍‌ଙ୍କ ମାଧ୍ୟମରେ କେଳୁଚରଣଙ୍କ ପ୍ରତିଭାକୁ ଅଧିକ ସୃଜନଶୀଳ କରିଥିଲା । ନୃତ୍ୟ ଜଗତରେ ଏହା ଏକ ସାଧାରଣ ଘଟଣା ନଥିଲା ।

କେଳୁଚରଣଙ୍କ ଭାଷାରେ– 'ଦୟାଲ୍ ଶରଣ ମୋତେ ପଥ ଦେଖାଇଦେଲେ ।

ମୋର ଅଙ୍ଗ-ପ୍ରତ୍ୟଙ୍ଗର କ୍ରିୟା ଏବଂ ଏହାର ଚାଳନା ସଂପର୍କରେ ସେ ମୋତେ ସଚେତନ କରାଇଦେଲେ । ବିଭିନ୍ନ ହସ୍ତଚାଳନା ବା ମୁଦ୍ରାର ବ୍ୟବହାର ଏବଂ ଏହାଦ୍ୱାରା ବିଭିନ୍ନ କ୍ରିୟାର ପ୍ରକାଶ ବା ବିନିଯୋଗ ସଂପର୍କରେ ସେ ମୋତେ ସଚେତନ କରିଦେଲେ । ମୁଁ ଯେ ଆଗରୁ ମୁଦ୍ରା ବ୍ୟବହାର କରୁନଥିଲି ତାହା ନୁହେଁ, କିନ୍ତୁ ସେ ସଂପର୍କରେ ସଚେତନ ନଥିଲି । ଦୈନନ୍ଦିନ ଜୀବନରେ ବିଭିନ୍ନ କାର୍ଯ୍ୟରେ ହସ୍ତଚାଳନାଠାରୁ ଆରମ୍ଭକରି ମୁଦ୍ରାର ବିକାଶ ପର୍ଯ୍ୟନ୍ତ- ସବୁକିଛି ସେ ମୋତେ ବୁଝାଇଦେଲେ । ପାଣି ପିଉଥିବା ସମୟରେ, ଖାଦ୍ୟ ଖାଉଥିବା ସମୟରେ କିମ୍ବା ବସ୍ତୁଟିଏ ଧରିଥିବା ସମୟରେ ହସ୍ତର ଚାଳନାକୁ ଲକ୍ଷ୍ୟ କରିବା ପାଇଁ ସେ ମୋତେ ପରାମର୍ଶ ଦେଲେ । ପରେ ଏହି ହସ୍ତଚାଳନାର ଶାସ୍ତ୍ରୀୟ ନାମ ମୋତେ ଶିଖାଇଦେଲେ । ସେ କହିଲେ, ଗ୍ରନ୍ଥମାନଙ୍କରେ କେତୋଟି ମୁଦ୍ରାର ବିବରଣୀ ଦିଆଯାଇଥିଲେ ମଧ୍ୟ ଦୈନନ୍ଦିନ କାର୍ଯ୍ୟକଳାପରୁ ନୂତନ ନୂତନ ମୁଦ୍ରା ସୃଷ୍ଟି କରିବା ସମ୍ଭବ । ପଦଚାଳନାର ବିବିଧତା ବଳରେ ସଂକ୍ଷିପ୍ତ ନୃତ୍ୟମାନ ସଂରଚନା କରିବା ସମ୍ଭବ ବୋଲି ସେ ମୋତେ ଶିଖାଇଦେଲେ । ମୋ ସମ୍ମୁଖରେ ସୃଜନଶୀଳତାର ଦ୍ୱାର ଉନ୍ମୁକ୍ତ ହୋଇଗଲା । ଏହାପରେ ମୁଁ ଏକ ନୂତନ କ୍ଷେତ୍ରରେ ପ୍ରବେଶ କଲି, ଆଉ ପଛକୁ ଫେରି ଚାହିଁନାହିଁ ।'

କେଳୁଚରଣ ଥିଲେ ଜଣେ ଅଧ୍ୟବସାୟୀ, ମନୋଯୋଗୀ ଛାତ୍ର । ଅନ୍ନପୂର୍ଣ୍ଣା ଦଳରେ ତାଙ୍କ ଭଳି ଆଉ କାହାର ଧୈର୍ଯ୍ୟ ବା ଶିଖିବାର ମନୋବୃତ୍ତି ନଥିଲା । ଖୁବ୍ ସକାଳୁ ଉଠିପଡ଼ି ତାଙ୍କୁ ଶିଖାଯାଉଥିବା ଅଙ୍ଗଚାଳନାର ସେ ଅଭ୍ୟାସ କରୁଥିଲେ । ଅଧିକ ଶିଖିବାର ସୁଯୋଗ ସେ କେବେ ହାତଛଡ଼ା କରୁନଥିଲେ । ଟଙ୍କା ପଠାଇ ଘରୁ ଗୁଆଘିଅ ଆଣି ମୁହଁରେ ମାଲିସ କରୁଥିଲେ- ମୁହଁର ମାଂସପେଶୀ ଅଧିକ ମସୃଣ ହେଲେ ଦୟାଲ୍ ଶିଖାଇଥିବା କଠିନ ଭଙ୍ଗୀମାନ ପ୍ରକାଶ କରିପାରିବେ ବୋଲି । ମୁହଁର ବିଭିନ୍ନ ଅଂଶ ବିଭିନ୍ନ ଭାବରେ ଚାଳନା କରି ବିରୋଧ ଭାବମାନ ମଧ୍ୟ ପ୍ରକାଶ କରିବାକୁ ସେ ଶିଖିଥିଲେ । ଯେପରି- ମୁଖର ଗୋଟିଏ ଭାଗରେ କାନ୍ଦ ଓ ଅନ୍ୟ ଭାଗରେ ହସ ଫୁଟାଇ ପାରିବା, କ୍ରମାନ୍ୱୟରେ ଭ୍ରୂଲତା ଚାଳନା କରିବା, କେବଳ ଚକ୍ଷୁ ମାଧ୍ୟମରେ ସମସ୍ତ ଭାବ ପ୍ରକାଶ କରିବା । ପରବର୍ତ୍ତୀ ଜୀବନରେ ଅଭିନୟର ସାର୍ବଜନୀନତା ଓ ସାବଳୀଳତା ପାଇଁ ସେ ଯେଉଁ ଶିକ୍ଷାଟି ଅର୍ଜନ କରିଥିଲେ, ତାହାର ଅନ୍ୟତମ କାରଣ ଥିଲା ଏହି ସମୟରେ ତାଙ୍କର ମୁଖଭଙ୍ଗୀ ଚାଳନା କରିବାର ଅଭ୍ୟାସ । ଏହି ଶିକ୍ଷା ଫଳରେ ସେ ପୃଷ୍ଠଭାଗ ଓ ହସ୍ତଚାଳନାର କୌଶଳରେ ମଧ୍ୟ ନିପୁଣତା ଲାଭ କରିଥିଲେ ।

କେବଳ ଦୟାଲ୍‌ଙ୍କ ମାଧ୍ୟମରେ ହିଁ କେଳୁଚରଣ ପରୋକ୍ଷରେ ଉଦୟ ଶଙ୍କରଙ୍କ ନୃତ୍ୟଶୈଳୀର ବିବିଧତା ଶିକ୍ଷା କରିଥିଲେ । ପଞ୍ଚମ ଦଶକର ପ୍ରଥମ ଭାଗରେ କଟକର ପ୍ରଭାତ ସିନେମା ହଲ୍‌ରେ ଉଦୟ ଶଙ୍କରଙ୍କ 'କଳ୍ପନା' ଚଳଚ୍ଚିତ୍ର ପ୍ରଦର୍ଶିତ ହୋଇଥିଲା ।

କେଳୁଚରଣ ଏହାକୁ ପ୍ରାୟ ଚାଳିଶି ଥର ଦେଖିଥିଲେ । ଏହି ଦୁଇ ମହାନ୍ ଗୁରୁ ସପ୍ତମ ଦଶକର ପ୍ରଥମ ଭାଗରେ ଥରେ ମାତ୍ର ପରସ୍ପରକୁ ଭେଟିଥିଲେ । ଦିଲ୍ଲୀରେ ଉଦୟ ଶଙ୍କରଙ୍କର ଶଙ୍କର ସ୍କୋପ୍ ପ୍ରଦର୍ଶିତ ହେଉଥାଏ ।[୧] କେଳୁଚରଣ ପର୍ଦା ପଛକୁ ଯାଇ ଉଦୟ ଶଙ୍କରଙ୍କୁ ଭେଟିଲେ । ଉଦୟ ଶଙ୍କର ସେତେବେଳକୁ ବୃଦ୍ଧ । କେଳୁଚରଣଙ୍କ ପାଇଁ ଏହା ଥିଲା ଏକ ଆବେଗମୟ ସାକ୍ଷାତ । ବହୁ ବର୍ଷ ତଳେ, ପଞ୍ଚମ ଦଶକର ମଧ୍ୟଭାଗରେ ଉଦୟ ଶଙ୍କର କଲିକତାରେ ଅନୁଷ୍ଠିତ ଏକ ନୃତ୍ୟ କାର୍ଯ୍ୟକ୍ରମକୁ ନିମନ୍ତ୍ରିତ ହୋଇଥିଲେ । ନୃତ୍ୟ ପରିବେଷଣ କରିଥିଲେ କେଳୁଚରଣଙ୍କ ଛାତ୍ରୀ ମୀନାକ୍ଷୀ ନନ୍ଦ । ନୃତ୍ୟଟି କେଳୁଚରଣଙ୍କ ଦ୍ୱାରା ପୂର୍ବରୁ ପ୍ରଦର୍ଶିତ ହୋଇଥିଲା । ହଠାତ୍ କଲିକତାରେ ଧର୍ମଘଟ ହୋଇଯିବାରୁ ଉଦୟ ଶଙ୍କର ନୃତ୍ୟ କାର୍ଯ୍ୟକ୍ରମକୁ ଆସିପାରିଲେ ନାହିଁ । ତେଣୁ ଏହି ଦୁଇ ମହାନ୍ ଶିଳ୍ପୀଙ୍କର ସାକ୍ଷାତ୍ ହୋଇପାରିଲା ନାହିଁ ।

ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚରେ ଦୟାଲ୍ ରାଧାକୃଷ୍ଣ ନୃତ୍ୟ ପରିବେଷଣ କଲେ । ଏହାର ପରବର୍ତ୍ତୀ ଦୁଇ ବର୍ଷ ସେ କେବେ କେବେ କଟକ ଆସି ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚ ସହିତ ସଂପର୍କ ରଖିଲେ । ପ୍ରତିଥର ସେ ତାଙ୍କର ଛାତ୍ର କେଳୁଚରଣଙ୍କୁ କିଛି ନା କିଛି ନୂତନ ନୃତ୍ୟକୌଶଳ ଶିଖାଉଥିଲେ । କେଳୁଚରଣ ଦୟାଲ୍‌ଙ୍କ ଅନୁପସ୍ଥିତିରେ ମଧ୍ୟ ସେ ଶିଖାଇଥିବା କୌଶଳସବୁ ଅଭ୍ୟାସ କରି ଅଧିକରୁ ଅଧିକ ସଫଳ ହେବାପାଇଁ ଉଦ୍ୟମ ଜାରି ରଖିଥିଲେ । ଏହା ଫଳରେ ପ୍ରିୟନାଥ ମିଶ୍ରଙ୍କ ଲିଖିତ 'ଆଲୋକ' ନାଟକରେ ନୃତ୍ୟ ପରିବେଷଣ ପାଇଁ ଲିଙ୍ଗରାଜ ନନ୍ଦ କେଳୁଚରଣଙ୍କୁ ସଂପୂର୍ଣ୍ଣ ଦାୟିତ୍ୱ ଦେଲେ । ଏହି ନାଟକରେ ଲକ୍ଷ୍ମୀପ୍ରିୟା ମଣିପୁରୀ, ଓଡ଼ିଶୀ ଓ କଥକ ରୀତିରେ କେଳୁଚରଣଙ୍କ ଦ୍ୱାରା ସଂରଚିତ ନୃତ୍ୟ ପରିବେଷଣ କଲେ । ଏହି ନୃତ୍ୟ ସଂରଚନା ଦୟାଲ୍ ଶରଣଙ୍କ ତାଲିମ୍ ଉପରେ ଆଧାରିତ ଥିଲା । ଏଥିରେ ବିଭିନ୍ନ ପରମ୍ପରାର ସମନ୍ୱୟ ଘଟିଥିଲା । ପ୍ରତିଥର ଭଳି ଏଥର ମଧ୍ୟ କେଳୁଚରଣ ନୃତ୍ୟ ସହିତ ତାବ୍‌ଲା ଓ ପଖଉଜ ବାଦନ କରିଥିଲେ ।

ଏହି ନୃତ୍ୟ ପରିବେଷଣ ମାଧ୍ୟମରେ କେଳୁଚରଣ ଓ ଲକ୍ଷ୍ମୀପ୍ରିୟାଙ୍କ ସଂପର୍କ ବଢ଼ିଉଠିଲା । ପରସ୍ପର ସହଯୋଗରେ ବିଭିନ୍ନ କାର୍ଯ୍ୟକ୍ରମ ପରିଚାଳନା କରିବାରେ ସେମାନଙ୍କ ସଂପର୍କ ଅଧିକରୁ ଅଧିକ ନିବିଡ଼ ହେଲା । ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚ 'କ'ରେ ଲକ୍ଷ୍ମୀପ୍ରିୟା ଅଭିନୟ କରିବା ଦିନୁ କେଳୁଚରଣ ତାଙ୍କ ସୌନ୍ଦର୍ଯ୍ୟ ଓ ପ୍ରତିଭାରେ ମୁଗ୍ଧ ହୋଇଥିଲେ । ମାତ୍ର ସାତ ବର୍ଷ ବୟସରୁ ଲକ୍ଷ୍ମୀପ୍ରିୟା ବାଉରୀବନ୍ଧୁ ମହାନ୍ତିଙ୍କ ଦ୍ୱାରା ମନୋନୀତ ହୋଇ ନୃତ୍ୟ ଓ ଅଭିନୟରେ ତାଲିମ୍ ନେଇଥିଲେ । ତାଙ୍କର ମା' ମଧ୍ୟ ଏହି ରଙ୍ଗମଞ୍ଚରେ କାର୍ଯ୍ୟ

---

୧) ଉଦୟ ଶଙ୍କରଙ୍କ ଦ୍ୱାରା ପ୍ରସ୍ତୁତ ଏକ ଭେରାଇଟି ସୋ । ଷଷ୍ଠ ଦଶକର ଶେଷ ଭାଗରେ ଏହା ଉଦୟ ଶଙ୍କରଙ୍କ ଦ୍ୱାରା ପ୍ରସ୍ତୁତ ହୋଇ ଏକଶତ ବାର ପ୍ରଦର୍ଶିତ ହୋଇଥିଲା ।



ବିବାହ ପରେ କେଳୁଚରଣ ଓ ଲକ୍ଷ୍ମୀପ୍ରିୟା

କରିଥିଲେ । ବାଉରୀବନ୍ଧୁ ଲକ୍ଷ୍ମୀପ୍ରିୟାଙ୍କୁ ଝିଅ ପରି ଦେଖୁଥିଲେ । ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚ ପରିସରରେ ଲକ୍ଷ୍ମୀପ୍ରିୟାଙ୍କ ରହିବା ପାଇଁ ବ୍ୟବସ୍ଥା କରାଯାଇଥିଲା । ଏହା ୧୯୩୮ ମସିହାର କଥା । ସେତେବେଳକୁ ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚ ପ୍ରାୟ ଦୁଇବର୍ଷ କାର୍ଯ୍ୟ କରିସାରିଥାଏ । ଏହାପରେ ଲିଙ୍ଗରାଜ ନନ୍ଦ ଲକ୍ଷ୍ମୀପ୍ରିୟାଙ୍କୁ ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚ 'ଖ'ରେ ଯୋଗଦେବା ପାଇଁ କଟକ ଆଣିଲେ । ସେହିଦିନୁ କେଳୁଚରଣ ତାଙ୍କର ନୃତ୍ୟ ସହଯୋଗୀ ତଥା ବଂଧୁ ଭାବରେ ରହିଲେ । ଲକ୍ଷ୍ମୀପ୍ରିୟାଙ୍କ ପାରିବାରିକ ସ୍ଥିତି ଭଲ ନଥିଲା । କେଳୁଚରଣଙ୍କ ଉପରେ ତାଙ୍କର ଯଥେଷ୍ଟ ଆସ୍ଥା ଓ ବିଶ୍ୱାସ ଥିଲା । ନିଜ କଳା ପ୍ରତି କେଳୁଚରଣଙ୍କ ନିଷ୍ଠା ଲକ୍ଷ୍ମୀପ୍ରିୟାଙ୍କୁ ତାଙ୍କ ପ୍ରତି ଆକୃଷ୍ଟ କରିଥିଲା ।

କେଳୁଚରଣ ଆଜୀବନ ଲକ୍ଷ୍ମୀପ୍ରିୟାଙ୍କ ପ୍ରତି ସଂପୂର୍ଣ୍ଣ ଅନୁରକ୍ତ ହୋଇ ରହିଛନ୍ତି । ପଚାଶ ବର୍ଷ ପରେ ମଧ୍ୟ ଲକ୍ଷ୍ମୀପ୍ରିୟା କେଳୁଚରଣଙ୍କ ପାଇଁ ମୁଖ୍ୟ ପ୍ରେରଣା । ସୌନ୍ଦର୍ଯ୍ୟ, ଛନ୍ଦ ତଥା ସଂଗୀତ ଜ୍ଞାନ, ଲାଳିତ୍ୟ ତଥା ପ୍ରତିଭା– ସବୁକିଛି କେଳୁଚରଣ ତାଙ୍କଠାରେ ଦେଖିଛନ୍ତି ।

କେଳୁଚରଣ ତାଙ୍କ ପ୍ରତି ଆକୃଷ୍ଟ ହୋଇଥିଲେ ମଧ୍ୟ ତାଙ୍କୁ ପ୍ରଥମେ ପ୍ରେମ ନିବେଦନ କରି ନଥିଲେ । ସେ ତାଙ୍କ ପ୍ରେମ ପ୍ରତ୍ୟାଖ୍ୟାନ କଲେ ତାଙ୍କ ସମ୍ମାନରେ ବାଧା ଲାଗିବ ବୋଲି ସେ ଭାବୁଥିଲେ । ପ୍ରଥମେ ଲକ୍ଷ୍ମୀପ୍ରିୟା ହିଁ ଆଗେଇ ଆସିଲେ । ରୋମାଣ୍ଟିକ୍ ରୀତିରେ ସେ କେଳୁଚରଣଙ୍କ ନିକଟକୁ ଗୋଟିଏ ଲାଲ୍ ଗୋଲାପ ଫୁଲ ପଠାଇଦେଲେ । ଏହାପରେ


ପଞ୍ଚମ ଦଶକର ଶେଷ ଭାଗରେ କେଳୁଚରଣ

ତାଙ୍କର ସଂପର୍କ ଅଧିକ ନିବିଡ଼ ହେଲା । ଅନେକେ ଅବଶ୍ୟ ଏହା ଜାଣି ନଥିଲେ ।

କଟକଚଣ୍ଡୀ ମନ୍ଦିରରୁ ପ୍ରସାଦ ଆଣି ରଙ୍ଗମଞ୍ଚ ଉପରେ ସେମାନେ ବିବାହ କଲେ । ଫୁଲମାଳ ବିନିମୟ ଏବଂ ଲକ୍ଷ୍ମୀପ୍ରିୟାଙ୍କ କପାଳରେ ସିନ୍ଦୂର ଲଗାଇବା, ଏଇଥିରେ ହିଁ ବିବାହ ସଂପନ୍ନ ହେଲା । ସାରା ଜୀବନ ଲକ୍ଷ୍ମୀପ୍ରିୟାଙ୍କ ଦାୟିତ୍ୱ ନେବେ ବୋଲି କେଳୁଚରଣ ଲକ୍ଷ୍ମୀପ୍ରିୟାଙ୍କ ମା'ଙ୍କୁ ପ୍ରତିଶ୍ରୁତି ଦେଲେ । ପ୍ରାୟ ଦୁଇବର୍ଷ ପରେ ପୁରୀ ଲୋକନାଥ ମନ୍ଦିରରେ ଆଉ ଥରେ ସେମାନଙ୍କ ବିବାହ ସଂପନ୍ନ ହୋଇଥିଲା । କେଳୁଚରଣ ଆଜୀବନ ତାଙ୍କର ନୃତ୍ୟ ସଂରଚନାରେ ଲକ୍ଷ୍ମୀପ୍ରିୟାଙ୍କୁ କର୍ମସଂଗିନୀ ଭାବରେ ଗ୍ରହଣ କରିଆସିଛନ୍ତି । ଲକ୍ଷ୍ମୀପ୍ରିୟା ସବୁ ସମୟରେ ତାଙ୍କର ସୃଷ୍ଟିଶୀଳ ଜୀବନର ପ୍ରେରଣା ହୋଇ ରହିଆସିଛନ୍ତି ।

ଏହି ବିବାହ ବନ୍ଧନରେ ଲିଙ୍ଗରାଜ ନନ୍ଦ ବିଶେଷ ଖୁସି ହୋଇନଥିଲେ । ସେ ଭାବିଲେ, ଦିନେ ନା ଦିନେ ଏହି ଦମ୍ପତି ତାଙ୍କ ଯାତ୍ରାଦଳ ଛାଡ଼ି ନିଜର ଦଳଟିଏ ଗଢ଼ିବେ । ଆଶ୍ଚର୍ଯ୍ୟର କଥା, ଲକ୍ଷ୍ମୀପ୍ରିୟାଙ୍କର ମା' ମଧ ଝିଅର ଏପରି ବିବାହ ନିଷ୍ପତ୍ତିକୁ ଗ୍ରହଣ କରିନଥିଲେ । ସେ ଥିଲେ ଖୁବ୍ ଏକଜିଦିଆ । ତରୁଣୀ ବୟସରେ ନିଜେ ଅଭିନେତ୍ରୀ ଥିଲେ ମଧ ପରେ ସେ ବୈଷ୍ଣବ ଧର୍ମର ନୀତି ଗ୍ରହଣ କରି ମାତାଜୀ ହୋଇଥିଲେ । ଝିଅ ଜ୍ୱାଇଁଙ୍କ ସହିତ ରହୁଥିଲେ ସୁଦ୍ଧା ସେ ସେମାନଙ୍କ ରୋଷେଇ ଘରେ ରନ୍ଧାଖାଦ୍ୟ ଖାଉ ନଥିଲେ । ନିଜେ ଅଲଗା ରୋଷେଇ କରୁଥିଲେ । ହୁଏତ ସେ ଚାହୁଁଥିଲେ–ଉଚ୍ଚ ଜାତିରେ ଅନ୍ୟ କୌଣସି ବୃତ୍ତି କରୁଥିବା ଯୁବକ ସହିତ ତାଙ୍କ ଝିଅର ବିବାହ କରିବାପାଇଁ । ଦୁଃଖର କଥା, ପ୍ରାୟ ଦୁଇବର୍ଷ ପରେ ତାଙ୍କର ମୃତ୍ୟୁ ହେଲା । କେଳୁଚରଣଙ୍କ ଜୀବନର ଉନ୍ନତି ସେ ଦେଖିପାରି ନଥିଲେ ।

କିଛି ମାସ ପରେ ଲକ୍ଷ୍ମୀପ୍ରିୟା ଗର୍ଭବତୀ ହେଲେ । ଲିଙ୍ଗରାଜ ନନ୍ଦ ଭାବିଲେ, କେଳୁଚରଣ କେତେ ମାସ ନିଜ ଗାଆଁକୁ ଚାଲିଗଲେ ଭଲ । ହୁଏତ ସେ ଭାବୁଥିଲେ କେଳୁଚରଣ ଓ ଲକ୍ଷ୍ମୀପ୍ରିୟାଙ୍କ ବନ୍ଧନ ବେଶୀ ଦିନ ତିଷ୍ଠି ରହିବ ନାହିଁ । ସେ କେଳୁଚରଣଙ୍କୁ ରଘୁରାଜପୁର ପଠାଇଦେଲେ । କେଳୁଚରଣ ଫେରିବା ବେଳକୁ ଲକ୍ଷ୍ମୀପ୍ରିୟା ଆଉ ନୃତ୍ୟ କରିବା ଅବସ୍ଥାରେ ନଥିଲେ । ଅନ୍ନପୂର୍ଣ୍ଣା 'କ' ରଙ୍ଗମଞ୍ଚ ହତାରେ ରହିବା ପାଇଁ ସେ ମା'ଙ୍କ ସହିତ ପୁରୀ ଚାଲିଗଲେ । କେଳୁଚରଣ ତାଙ୍କ ଅଭିନୟ କାର୍ଯ୍ୟକ୍ରମରେ ସମ୍ବଲପୁର ଯାଇଥିବା ସମୟରେ ତାଙ୍କର ପ୍ରଥମ ଝିଅ ଚାରୁ ଜନ୍ମ ହେଲା । ଟେଲିଗ୍ରାମ୍‌ରେ ସେ

ସମ୍ବାଦ ପାଇ ପୁରୀ ଫେରିଲେ । ଝିଅ ଜନ୍ମ ହେବାର ଏକୋଇଶି ଦିନ ମଧ୍ୟରେ ଲକ୍ଷ୍ମୀପ୍ରିୟା ପୁଣି ନାଚିବା ଆରମ୍ଭ କରିଦେଲେ । ରାଜ୍ୟପାଳଙ୍କ ପୁରୀ ଆଗମନ ଅବସରରେ ଆୟୋଜିତ ନୃତ୍ୟ କାର୍ଯ୍ୟକ୍ରମରେ ସେ ଭାଗ ନେଲେ । ଏଥିରେ କେଳୁଚରଣଙ୍କ ସଂପର୍କୀୟ ଭାଇ ବନମାଳୀ ମହାରଣା ମର୍ଦ୍ଦଳ ବାଦନ କରିଥିଲେ ।

ମା' ଓ ଝିଅଙ୍କ ସହିତ ଲକ୍ଷ୍ମୀପ୍ରିୟା ଅନ୍ନପୂର୍ଣ୍ଣା 'ଖ' ଦଳକୁ ଫେରିବା ପରେ 'ନରଦେବତା' ନାଟକର ନୃତ୍ୟ ପରିବେଷଣର ଦାୟିତ୍ୱ କେଳୁଚରଣଙ୍କୁ ଦିଆଗଲା । ଏହି ନାଟକର ନିର୍ଦ୍ଦେଶନା ଦେଇଥିଲେ ଦୁର୍ଲଭ ଚନ୍ଦ୍ର ସିଂହ । ଏଥିରେ ଦୁଇଟି ସୋଲୋ ନୃତ୍ୟ ପରିବେଷିତ ହେବାର ଥିଲା– ଗୋଟିଏ ରାଜାଙ୍କ ଦରବାରରେ, ଅନ୍ୟଟି ଉର୍ବଶୀଙ୍କ ଦ୍ୱାରା ଅର୍ଜ୍ଜୁନଙ୍କ ତପସ୍ୟା ଭଙ୍ଗ କରିବା ଉଦ୍ଦେଶ୍ୟରେ । ନୃତ୍ୟ ପରିବେଷଣ କରିଥିଲେ ହେମଲତା ଏବଂ ଦୁର୍ଲଭଙ୍କ ସ୍ତ୍ରୀ (ତାଙ୍କର ନାମ ମଧ୍ୟ ଲକ୍ଷ୍ମୀପ୍ରିୟା) । ଦୁର୍ଲଭଙ୍କ ସ୍ତ୍ରୀ 'ନାହିଁକି କରିଦେଲ' ସଂଗୀତ ସହିତ ନୃତ୍ୟ ପରିବେଷଣ କରିବା ଶିଖିଥିଲେ କେଳୁଚରଣଙ୍କଠାରୁ । ସେତେବେଳକୁ ସେ ଦୁଇଟି ସନ୍ତାନର ଜନନୀ । ତଥାପି ନାଚିବାରେ ଭୁଲ୍ କରିବାରୁ ଥରେ କେଳୁଚରଣ ଗ୍ରୀନ୍ ରୁମ୍‌ରେ ତାଙ୍କୁ ଥାପଡ଼ଟିଏ ଦେଇଥିଲେ ଓ ସେ କାନ୍ଦି ପକାଇଥିଲେ । ଲକ୍ଷ୍ମୀପ୍ରିୟା (ଦୁର୍ଲଭଙ୍କ ସ୍ତ୍ରୀ) ଏବେବି ତାହା ମନେ ରଖିଛନ୍ତି । ଏହି ନାଟକରେ କେଳୁଚରଣ ତାଙ୍କର ଛାତ୍ରୀ ଲକ୍ଷ୍ମୀପ୍ରିୟା, ମଣିମାଳା ଓ ହେମଲତାଙ୍କ ସହିତ ରାଜାଙ୍କ ଦରବାରରେ ଏକ ହାସ୍ୟୋଦ୍ଦୀପକ ଭୂମିକାରେ ଅଭିନୟ କରିଥିଲେ ।

କୌଣସି କାରଣରୁ ଲିଙ୍ଗରାଜ ନନ୍ଦ ଏବଂ କେଳୁଚରଣ – ଲକ୍ଷ୍ମୀପ୍ରିୟାଙ୍କ ମଧ୍ୟରେ ସଂପର୍କ ତିକ୍ତ ହୋଇଉଠିଲା । ଲିଙ୍ଗରାଜ ନନ୍ଦ ଭାବିଲେ ସେମାନେ ତାଙ୍କ ସହ ବେଶୀଦିନ ରହିବେ ନାହିଁ । ସେ ତେଣୁ ସେମାନଙ୍କଠାରୁ କ୍ରମଶଃ ଦୂରେଇଗଲେ । ପ୍ରଥମେ ଲକ୍ଷ୍ମୀପ୍ରିୟା ଅନ୍ନପୂର୍ଣ୍ଣା 'ଖ' ରଙ୍ଗମଞ୍ଚ ଛାଡ଼ି ମା' ଓ ଝିଅଙ୍କ ସହିତ ପୁରୀ ଚାଲିଗଲେ । କେଳୁଚରଣ ତଥାପି ତାଙ୍କ ଛାତ୍ରୀମାନଙ୍କୁ ନୃତ୍ୟ ଶିଖାଉଥାନ୍ତି ଓ ମନେ ମନେ ଅନ୍ନପୂର୍ଣ୍ଣା 'ଖ' ରଙ୍ଗମଞ୍ଚ ଛାଡ଼ିବା ପାଇଁ ପ୍ରସ୍ତୁତ ହେଉଥାନ୍ତି । କିଛିମାସ ପରେ ପିପିଲିରେ ଅଭିନୟ କାର୍ଯ୍ୟକ୍ରମ ସାରି ଟ୍ରକ୍‌ରେ ଜିନିଷପତ୍ର ଲଦୁଥିବା ସମୟରେ କେଳୁଚରଣ ଟେଲିଗ୍ରାମ୍‌ରେ ସମ୍ବାଦ ପାଇଲେ– ତାଙ୍କ ଶାଶୁଙ୍କର ମୃତ୍ୟୁ ହୋଇଯାଇଛି ।

ସେହିଦିନ ରାତିରେ କେଳୁଚରଣ ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚ 'ଖ' ଛାଡ଼ିଲେ । ତିନିଦିନର ଯାତ୍ରା ପରେ ସେ କେଉଁଝରଠାରେ ଲକ୍ଷ୍ମୀପ୍ରିୟା ଓ ତାଙ୍କ ଝିଅ ସହିତ ମିଳିତ ହେଲେ । ସେତେବେଳେ ଲକ୍ଷ୍ମୀପ୍ରିୟା ଅନ୍ନପୂର୍ଣ୍ଣା 'କ' ଦଳର ଅନ୍ୟମାନଙ୍କ ସହିତ ସେହିଠାରେ ଥିଲେ । କେଳୁଚରଣ ତାଙ୍କ ସ୍ତ୍ରୀ ଓ ଝିଅ ସହିତ ପୁରୀ ଫେରିଲେ । ପୁରୀରେ ହିଁ ପ୍ରଭୁ ଲୋକନାଥଙ୍କ ଆଶୀର୍ବାଦ ଭିକ୍ଷା ପରେ ସେମାନଙ୍କର ଦାମ୍ପତ୍ୟ ଜୀବନ ଯଥାର୍ଥରେ ଆରମ୍ଭ ହେଲା । ଲୋକନାଥ ମନ୍ଦିରରୁ ଫେରିବା ବାଟରେ ଲକ୍ଷ୍ମୀପ୍ରିୟା ବଡ଼ଦାଣ୍ଡରୁ ଶିବଙ୍କର ହସ ହସ

ମୂର୍ତ୍ତିଟିଏ କିଣିଲେ । ଏହାର ଦଶବର୍ଷ ପରେ କଟକରେ ସେମାନେ ସ୍ଥାୟୀ ଭାବରେ ନିଜ ଗୃହ ନିର୍ମାଣ କରି ପୂଜା ଘରେ ଏହି ମୂର୍ତ୍ତିଟିକୁ ରଖିଲେ । ବର୍ଷ ବର୍ଷ ଧରି ତାଙ୍କ ଘରେ ଛୋଟ ମନ୍ଦିରଟିଏରେ ଜଗନ୍ନାଥଙ୍କ ମୂର୍ତ୍ତି ପୂଜିତ ହେଉଥିଲେ । କିନ୍ତୁ ଶିବ ହିଁ ଥିଲେ ତାଙ୍କର ସଂକଳ୍ପ ଓ ସଂଗ୍ରାମର ପ୍ରେରଣା । ତାଙ୍କର ପ୍ରଥମ ନୃତ୍ୟ କାର୍ଯ୍ୟକ୍ରମ ସେ ଶିବଙ୍କୁ ଉତ୍ସର୍ଗ କରିଥିଲେ । ଶିବ ଥିଲେ ତାଙ୍କର ପ୍ରିୟ ଦେବତା ।

ପୁରୀରେ ପାଞ୍ଚ ଛଅ ମାସ ରହିବା ମଧ୍ୟରେ କେଳୁଚରଣ ଅନ୍ନପୂର୍ଣ୍ଣା 'କ' ଦଳଦ୍ୱାରା ଅଭିନୀତ 'ଉପେନ୍ଦ୍ର ଭଞ୍ଜ' ନାଟକର ନୃତ୍ୟ ସଂଯୋଜନା କରିଥିଲେ । ନାଟକଟିର ବିଷୟବସ୍ତୁ ଏହିପରି :

'ଅଷ୍ଟାଦଶ ଶତାବ୍ଦୀର ପ୍ରସିଦ୍ଧ ଓଡ଼ିଆ କବି ଉପେନ୍ଦ୍ର ଭଞ୍ଜଙ୍କର ପତ୍ନୀ ସର୍ପାଘାତରେ ମୃତ୍ୟୁବରଣ କରନ୍ତି । କବି ଏଥିରେ ବିଚଳିତ ହୋଇ ଗୃହ ତ୍ୟାଗ କରି ଏଣେତେଣେ ବୁଲିବା ଅବସ୍ଥାରେ ଗୋଟିଏ କାଳୀ ମନ୍ଦିର ସମ୍ମୁଖରେ ବସି ରାମାୟଣ ଉପରେ ଆଧାରିତ ତାଙ୍କର 'ବୈଦେହୀଶ ବିଳାସ' କାବ୍ୟ ରଚନା କରନ୍ତି । ସେ ଏହି କାବ୍ୟଟି ଗାନ କରୁଥିବା ସମୟରେ ଲାବଣ୍ୟବତୀ ନାମରେ ଜଣେ ଦେବଦାସୀ ତାଙ୍କ ସମ୍ମୁଖରେ ଉପସ୍ଥିତ ହୋଇ ନୃତ୍ୟ ପରିବେଷଣ କରନ୍ତି ।'

ପୁରୀ ମନ୍ଦିରର ଜଣେ ବୃଦ୍ଧା ମାହାରୀ ଆଶା ଦେବୀଙ୍କଠାରୁ ଏହି ନୃତ୍ୟ ପରିବେଷଣ ଶୈଳୀ ଲକ୍ଷ୍ମୀପ୍ରିୟା ଶିକ୍ଷା କରନ୍ତି ଏବଂ କେଳୁଚରଣଙ୍କ ସମ୍ମୁଖରେ ପ୍ରଦର୍ଶନ କରନ୍ତି । ଏହି ନୃତ୍ୟ ଚାରୋଟି ଭାଗରେ ବିଭକ୍ତ । ପରବର୍ତ୍ତୀ ସମୟରେ ଓଡ଼ିଶୀ ନାମରେ ପରିଚିତ ନୃତ୍ୟର ପ୍ରଥମ ଅଂଶଟି ଏହି ନୃତ୍ୟ ଉପରେ ଆଧାରିତ ହୋଇଥିଲା ବୋଲି କୁହାଯାଇପାରେ । ମଙ୍ଗଳାଚରଣ, ପୁଷ୍ପାଞ୍ଜଳି, ଭୂମି ପ୍ରଣାମ ତଥା ଦୁଇଟି ବୋଲ୍ (ଅଗାଧୁ ମହାରଣାଙ୍କ ଗୋଟିପୁଅ ନୃତ୍ୟରୁ ଆହୃତ ତାରିକିଟା ଧି... ଏବଂ 'ନରଦେବତା' ନାଟକରେ କେଳୁଚରଣଙ୍କ ସଂରଚିତ ଥେଇ ଥେଇ...) ଥିଲା ଏହି ନୃତ୍ୟର ଅଂଶବିଶେଷ । ତିନିଥର ପ୍ରଣାମ– ପ୍ରଥମେ ମସ୍ତକ ଉପରେ, ପରେ ମୁଖ ସମ୍ମୁଖରେ ଏବଂ ଶେଷରେ ବକ୍ଷ ସମ୍ମୁଖରେ ଥିଲା ଏହାର ଅଂଶବିଶେଷ ।[୧]

ଉପେନ୍ଦ୍ର ଭଞ୍ଜ ଲାବଣ୍ୟବତୀଙ୍କ ନୃତ୍ୟରେ ମୁଗ୍ଧ ହୋଇଥିଲେ ଏବଂ ତାଙ୍କରି ଭିତରେ ତାଙ୍କ ସ୍ତ୍ରୀ କଳାବତୀଙ୍କ ଉପସ୍ଥିତି ଅନୁଭବ କଲେ । ଏହାପରେ ସେ ରଚନା କଲେ ତାଙ୍କର ପ୍ରସିଦ୍ଧ ସଂଗୀତ 'କାନ୍ତ ବିନା ଦିବା ରଜନୀ ସଜନୀ' । ଲକ୍ଷ୍ମୀପ୍ରିୟା ଦେବଦାସୀ ଭୂମିକାରେ ଅଭିନୟ କରୁଥିବା ସମୟରେ ଏହି ସଂଗୀତକୁ ନୃତ୍ୟରେ ରୂପାୟିତ କଲେ । ଏହି ନୃତ୍ୟ

---

୧. ଅଷ୍ଟାଦଶ ଶତାବ୍ଦୀରେ ଲାବଣ୍ୟ ମାହାରୀଙ୍କ ଲିଖିତ ଗ୍ରନ୍ଥ 'ଦେବଦାସୀ ନୃତ୍ୟ କାରିକା'ରେ ତ୍ରିବିଧ ନମସ୍କାର ବା ପ୍ରଣିପାତ ସଂପର୍କରେ ଉଲ୍ଲେଖ ଅଛି । ପ୍ରଥମେ ଅନ୍ତରରେ, ଦ୍ୱିତୀୟରେ ମସ୍ତକରେ ଏବଂ ଶେଷରେ ମଙ୍ଗଳାଚରଣ ସମୟରେ ଠାକୁରଙ୍କ ସମ୍ମୁଖରେ ପ୍ରଣିପାତ କରାଯାଏ ।

ନିର୍ଦ୍ଦେଶନା ଦେବା ସମୟରେ କେଳୁଚରଣ ଉଭୟ ଗୋଟିପୁଅ ଓ ମାହାରୀ ନୃତ୍ୟଶୈଳୀରୁ ପ୍ରେରଣା ଲାଭ କରିଥିଲେ । ଜଗନ୍ନାଥଙ୍କ ଆଳତି ସମୟରେ ମାହାରୀଙ୍କ ଦ୍ୱାରା ପରିବେଷିତ 'ଭଉଁରୀ' ବା 'ଚକ୍ର ମଣ୍ଡଳୀ' ନୃତ୍ୟଶୈଳୀ ଏଥିରେ ସେ ସଂଲଗ୍ନ କରିଥିଲେ ।

ଏହାର ସଂଗୀତ ରଚନା କରିଥିଲେ ହରି ପଣ୍ଡା । ଲକ୍ଷ୍ମୀପ୍ରିୟା ମାହାରୀଙ୍କ ପରି ପୋଷାକ ପିନ୍ଧିଥିଲେ: ଭେଲ୍‌ଭେଟ୍ କାଞ୍ଚଲା, ଅଣ୍ଟା ଚାରିପାଖେ ବେଢ଼ରଣ ଏବଂ ଅଣ୍ଟା ତଳକୁ ଶାଢ଼ୀ ।

ନୃତ୍ୟଟି ମଞ୍ଚସ୍ଥ ହେବା ଦିନ ଆଶା ଦେବୀଙ୍କ ଉପଦେଶ ନମାନି କେଳୁଚରଣ ଓ ଲକ୍ଷ୍ମୀପ୍ରିୟା ଆମିଷ ଭକ୍ଷଣ କରିଥିଲେ । ମଙ୍ଗଳାଚରଣ ପରିବେଷଣ ପରେ ପରେ ଲକ୍ଷ୍ମୀପ୍ରିୟା ଗ୍ରୀନ୍‌ରୁମ୍‌ରେ ହାଲିଆ ହୋଇ ବସିପଡ଼ିଲେ । ଅଭିନୟ ପରିବେଷଣ କରିବା ମଧ୍ୟରେ ତାଙ୍କୁ ଡାଇରିଆ ହେଲା ଓ ସେ ମଞ୍ଚ ଉପରେ ଅଚେତ୍ ହୋଇଗଲେ । ଅଭିନୟ ବନ୍ଦ ହୋଇଗଲା । ତିନିଦିନ ପରେ ଲକ୍ଷ୍ମୀପ୍ରିୟା ସୁସ୍ଥ ହେବା ପରେ ପୁଣି ଅଭିନୟ ଆରମ୍ଭ ହେଲା । ଏହା ପରଠାରୁ ବହୁ ବର୍ଷଯାଏଁ ମଞ୍ଚରେ ନୃତ୍ୟ ପରିବେଷଣ କରିବାର ଥିଲେ କେଳୁଚରଣ କେବେହେଲେ ଆମିଷ ଭକ୍ଷଣ କରି ନଥିଲେ ।

●●●

# ଜୀବନର ଏକମାତ୍ର ଲକ୍ଷ୍ୟ : ଓଡ଼ିଶୀ ନୃତ୍ୟ

୧୯୪୯ ମସିହାରୁ କେଳୁଚରଣ କଟକରେ ଘରୋଇ ଟ୍ୟୁସନ୍ ଜରିଆରେ ଝିଅମାନଙ୍କୁ ନାଚ ଶିଖାଇବାକୁ ଲାଗିଲେ । ସେ ଯାଏଁ ଝିଅମାନଙ୍କୁ ନାଚ ଶିଖାଇବା ଶିକ୍ଷା ବ୍ୟବସ୍ଥାର ଅଂଶବିଶେଷ ହୋଇ ନଥିଲା । ତଥାପି ଅନେକ ମଧ୍ୟବିତ୍ତ, ଉଚ୍ଚ ମଧ୍ୟବିତ୍ତ ବର୍ଗର ଅଭିଭାବକ ଝିଅମାନଙ୍କୁ ନାଚ ଶିଖାଇବାକୁ ଅସମ୍ମାନଜନକ ମନେକରୁଥିଲେ । ସାମାଜିକ ପ୍ରତିବନ୍ଧକକୁ ଏଡ଼ାଇ ଅଳ୍ପ କେତେଜଣ ଅଭିଭାବକ ସେମାନଙ୍କ ଝିଅମାନଙ୍କୁ ନାଚ ଶିଖାଇବା ଆରମ୍ଭ କଲେ ।

କେତେଜଣ ଝିଅ ଲକ୍ଷ୍ମୀପ୍ରିୟାଙ୍କ ନାଚକୁ ଖୁବ୍ ପସନ୍ଦ କରୁଥିଲେ । ମିନତି (ପରେ ମିନତି ମିଶ୍ର) ପିଲାଦିନେ କିପରି ଲକ୍ଷ୍ମୀପ୍ରିୟାଙ୍କ ଘରକୁ ଯାଉଥିଲେ, ତାହା ଏବେ ବି ମନେରଖିଛନ୍ତି । ମିନତିଙ୍କ ଘର କଟକ ଅନ୍ନପୂର୍ଣ୍ଣା ଥିଏଟର୍ ସାମ୍ନାରେ । ଲକ୍ଷ୍ମୀପ୍ରିୟାଙ୍କ ନାଚ 'ନାହିଁକି କରିଦେଲ' ଦେଖିବା ପାଇଁ ସେ ଠିକ୍ ସମୟରେ ତାଙ୍କ ଘରେ ପହଞ୍ଚି ଯାଉଥିଲେ ଏବଂ ବାପା- ମା' ଏହା ଜାଣିବା ଆଗରୁ ଘରକୁ ଫେରି ଆସୁଥିଲେ । ସଂଯୁକ୍ତାଙ୍କର ମା' ଅନ୍ନପୂର୍ଣ୍ଣା ଥିଏଟର୍‌ରେ ଗୋଟିଏ ବି ନାଚ ଦେଖିବାକୁ ଭୁଲୁ ନଥିଲେ । ତାଙ୍କର ପାଞ୍ଚ ବର୍ଷର ଝିଅକୁ ନାଚ ଶିଖାଇବାକୁ ସେ କେଳୁଚରଣଙ୍କୁ ଅନୁରୋଧ କରିଥିଲେ । ସଂଯୁକ୍ତାଙ୍କ ପିତା ଅଭିରାମ ମିଶ୍ର ବୃତ୍ତିରେ ଥିଲେ ଇଲେକ୍‌ଟ୍ରିକାଲ୍ ଇଞ୍ଜିନିୟର । ଝିଅର ନାଚ ଶିଖିବା ପ୍ରଥମେ ପ୍ରଥମେ ସେ ନାପସନ୍ଦ କରୁଥିଲେ । କିନ୍ତୁ ନାଚ ପାଇଁ ତାଙ୍କ ସ୍ତ୍ରୀ ଓ ଝିଅଙ୍କର ପ୍ରଗାଢ଼ ଆଗ୍ରହ ଦେଖି ସେ ଝିଅ ଚେନ୍ନାଇ ଯାଇ ରୁକ୍ମିଣୀ ଦେବୀ ଅରୁଣ୍ଡାଲେଙ୍କଠାରୁ ଭାରତନାଟ୍ୟମ୍ ଶିଖିବା ପାଇଁ ଅନୁମତି ଦେଇଥିଲେ ।

କୁଙ୍କୁମ ଦାସଙ୍କ ମା' ଥିଲେ ଯାଜପୁରର ଏକ ଜମିଦାର ପରିବାରର କନ୍ୟା । ତାଙ୍କ ପିତାଙ୍କ ଗୃହ ପ୍ରାଙ୍ଗଣରେ ଶିଳ୍ପୀମାନେ ଆସି ନୃତ୍ୟ ପରିବେଷଣ କରିବା ସେ ବହୁବାର ଦେଖିଥିଲେ । ପୁରୀର ଗୋଟିପୁଅ ନାଚ, ଦକ୍ଷିଣ ଓଡ଼ିଶାର ଦଣ୍ଡନାଚ ଏବଂ ପଶ୍ଚିମ ଓଡ଼ିଶାର ବିଭିନ୍ନ ଲୋକ ନାଚ ସହିତ ସେ ପରିଚିତ ଥିଲେ । ପର୍ଦ୍ଦା ଆଢୁଆଳରେ ରହି ଏ ସମସ୍ତ ନାଚ ସେ ଦେଖୁଥିଲେ ମଧ୍ୟ ତାଙ୍କର ସ୍ୱପ୍ନ ଥିଲା – ସେ ନିଜେ ଏହି ନାଚ ଓ ଗୀତ ଶିଖିବେ । କମ୍ ବୟସରେ ତାଙ୍କର ବିବାହ ହେବା ପରେ ସେ କଟକ ଆସିଲେ ଏବଂ ଅନ୍ନପୂର୍ଣ୍ଣା ଥିଏଟର୍‌ରେ ଲକ୍ଷ୍ମୀପ୍ରିୟାଙ୍କ ନାଚ ଦେଖିଲେ । ତାଙ୍କର ପ୍ରଥମ ଝିଅ ବନ୍ଦନା (ଡାକ ନାମ – ମୀରା) ଥିଲେ କେଳୁଚରଣଙ୍କର ପ୍ରଥମ ଶିଷ୍ୟାମାନଙ୍କ ମଧ୍ୟରେ ଅନ୍ୟତମ । ସେ ତାଙ୍କ

ନିଜ ଘରେ ନାଚ ଶିଖୁଥିଲେ । ତାଙ୍କର ଦ୍ୱିତୀୟ ଝିଅ କୁଙ୍କୁମ କିଛି ବର୍ଷ ପରେ ନାଚ ଶିଖିବାରେ ତାଲିମ୍ ନେଲେ ।

ଜୟନ୍ତୀଙ୍କ ପିତା ସତୀଶ୍ ଚନ୍ଦ୍ର ଘୋଷ୍ ଥିଲେ କଟକରେ ଜଣେ ଶିକ୍ଷାବିତ୍ । ତାଙ୍କ ତୃତୀୟ ଝିଅର ନୃତ୍ୟ ଶିକ୍ଷାର ସେ ହିଁ ଥିଲେ ପ୍ରେରଣା । ତାଙ୍କ ସହକର୍ମୀମାନେ ତାଙ୍କୁ ଚେତାଇ ଥିଲେ – ଝିଅ ନାଚ ଶିଖିଲେ ତା' ପାଇଁ ପରେ ବରଟିଏ ପାଇବା ସମ୍ଭବ ହେବନାହିଁ । ସେ ଉତ୍ତର ଦେଇଥିଲେ, 'ବର୍ତ୍ତମାନ ପାଇଁ ଝିଅ ନାଚ ଶିଖୁ । ତା'ର ବାହାଘର କଥା ପରେ ଭାବିବା ।'

ମୀନାକ୍ଷୀ ନନ୍ଦଙ୍କ ପରିବାରରେ ସଙ୍ଗୀତର ବିଶେଷ ଆଦର ଥିଲା । ବ୍ରିଟିଶ୍ ଶାସନ ସମୟରେ ତାଙ୍କର ପିତା ଥିଲେ ଆଇନ୍ ବିଭାଗର ସେକ୍ରେଟାରୀ । ସେ ଥିଲେ ଜଣେ ସୌଖୀନ୍ ସୀତାର ବାଦକ । ତାଙ୍କର ବଡ଼ ଭାଇ ପଣ୍ଡିତ ଜ୍ଞାନପ୍ରକାଶଙ୍କଠାରୁ ତାବ୍‌ଲା ବାଦନ ଶିଖିଥିଲେ । ତାଙ୍କର ବଡ଼ ଭଉଣୀ ଲଘୁ ସଂଗୀତ ଗାଉଥିଲେ । ନାଚ ପ୍ରତି ମୀନାକ୍ଷୀଙ୍କ ଆଗ୍ରହ ପିଲାଦିନୁ ଜଣା ପଡ଼ିଥିଲା । ମାତ୍ର ତିନି ବର୍ଷ ବୟସ ହେବା ବେଳକୁ ସେ ଅନାୟାସରେ ତାଙ୍କ ମଝିଆଁ ଭଉଣୀଙ୍କଠାରୁ ଲୋକନାଚର ପାଦଚାଳନା ଶିଖିପାରିଥିଲେ । କେଳୁଚରଣ ତାଙ୍କୁ ନାଚ ଶିଖାଇବା ପାଇଁ ତାଙ୍କ ଘରକୁ ଆସିଲା ବେଳକୁ ମୀନାକ୍ଷୀଙ୍କୁ ହୋଇଥିଲା ମାତ୍ର ଚାରି ବର୍ଷ । ମାତ୍ର ପାଞ୍ଚ ବର୍ଷ ବୟସରେ ସେ ମଞ୍ଚ ଉପରକୁ ଆସିଥିଲେ । ଛୋଟ କଣ୍ଢେଇଟିଏ ଶିବଙ୍କ ବେଶରେ ସଜ୍ଜିତ ହୋଇଥିବା ପରି ସେ ଦିଶୁଥିଲେ । ଅଣ୍ଟା ଚାରି ପାଖେ ବାଘ ଚମଡ଼ା, ଛାତି ଉପରେ ମାଳି, ମୁଣ୍ଡ ଉପରେ ଅର୍ଦ୍ଧ ଚନ୍ଦ୍ର ।

କୁଙ୍କୁମଙ୍କ ପିତା ତାଙ୍କ ଝିଅକୁ ନାଚ ଶିଖାଇବା ପାଇଁ କେଳୁଚରଣଙ୍କୁ ନିଜ ଘରକୁ ନିମନ୍ତ୍ରଣ କଲେ । ସେତେବେଳେ କୁଙ୍କୁମଙ୍କର ବୟସ ମାତ୍ର ଅଢ଼େଇ ବର୍ଷ । ନାଚ ଶିଖାଇବା ପରେ କେଳୁଚରଣ କୁଙ୍କୁମଙ୍କୁ ସାଇକେଲ୍‌ରେ ଟିକେ ବୁଲାଇ ଆଣୁଥିଲେ । ମାତ୍ର ଗୋଟିଏ ବର୍ଷ ପରେ ୧୯୫୫ରେ କୁଙ୍କୁମ କୁମାର ଉତ୍ସବ ସମିତି କାର୍ଯ୍ୟକ୍ରମରେ ମଞ୍ଚ ଉପରେ ନୃତ୍ୟ ପରିବେଷଣ କଲେ । ସଂଗୀତ ଓ ନୃତ୍ୟ ନିର୍ଦ୍ଦେଶକ ସୁରେନ୍ ମହାନ୍ତି ତାଙ୍କ ସହିତ ମଞ୍ଚ ଉପରକୁ ଆସି ତାଙ୍କୁ ଦର୍ଶକମାନଙ୍କ ସହିତ ପରିଚିତ କରାଇଦେଲେ । ସେଦିନ ନୃତ୍ୟ ପାଇଁ ତାଙ୍କର ପରିଧେୟ ଥିଲା ଲାଲ୍ ରଙ୍ଗର ମଖମଲି ପୋଷାକ, ସେଥିରେ ଥିଲା କୁମ୍ଭପକା ଜରିର ଧଡ଼ି । ରୂପେଲି କାଗଜରେ ତିଆରି ଅଳଙ୍କାର ସେ ପିନ୍ଧିଥିଲେ । କେଳୁଚରଣ ଝିଅଟିର ମଥା ଓ ଗାଲରେ ଚିତ୍ର ଆଙ୍କି ଦେଇଥିଲେ । ମାତ୍ର ପାଞ୍ଚ ମିନିଟ୍‌ର ଏହି ନୃତ୍ୟ ଖୁବ୍ ସଫଳ ହୋଇଥିଲା ।

ସାଧନାଙ୍କ ପିତା ପୋଲିସ୍ ଅଫିସର ରାଜଗୋବିନ୍ଦ ବୋଷ୍ ଓ ମାତା ଉଭୟେ ସାଂସ୍କୃତିକ କାର୍ଯ୍ୟକ୍ରମରେ ବିଶେଷ ଆଗ୍ରହୀ ଥିଲେ । ଅନ୍ନପୂର୍ଣ୍ଣା 'ଖ' ଦଳ ପାଇଁ ସେମାନେ ବିଭିନ୍ନ ପୋଷାକ ଏବଂ ପର୍ଦ୍ଦା ଦାନ କରିଥିବା ସାଧନା ମନେ ରଖିଛନ୍ତି । ରେଡ଼ିଓରେ

ଗୀତ ବୋଲା ହେଲେ ସାଧନା ଆନନ୍ଦରେ ନାଚି ଉଠିବା ତାଙ୍କର ପିତା ଲକ୍ଷ୍ୟ କରିଥିଲେ । ଗୁଜରାଟରୁ ଆସି କଟକରେ ଓଡ଼ିଆ ବଜାରରେ ସ୍ଥାୟୀ ଭାବରେ ବସବାସ କରୁଥିବା ବାବୁଲାଲ୍ ଦୋଷୀ ନୂଆ ଆରମ୍ଭ କରିଥିବା ତାଙ୍କ ନାଚ ସ୍କୁଲ୍‌ରେ ସାଧନାଙ୍କ ନାମ ଲେଖାଇବା ପାଇଁ ବୋଷ୍‌ଙ୍କୁ ଅନୁରୋଧ କଲେ । ବୋଷ୍ ସଙ୍ଗେ ସଙ୍ଗେ ଏଥିରେ ରାଜି ହୋଇଗଲେ । ୧୯୫୨ ଅଗଷ୍ଟ ୧୦ ତାରିଖରେ 'କଳା ବିକାଶ କେନ୍ଦ୍ର' ନାମରେ ନୃତ୍ୟ ବିଦ୍ୟାଳୟଟିଏ ଓଡ଼ିଆ ବଜାରରେ ଆରମ୍ଭ ହେଲା । ଏଥିପାଇଁ ଗୌର ଘୋଷ୍‌ଙ୍କ ଘରଟି ଭଡ଼ାରେ ନିଆଯାଇଥିଲା । ଏହି କେନ୍ଦ୍ରରେ ପ୍ରଥମ ତିନି ଜଣ ଛାତ୍ରୀ ଥିଲେ – ସାଧନା, ତାଙ୍କର ସଂପର୍କୀୟା ଭଉଣୀ ବାସନ୍ତୀ ବୋଷ୍ ଏବଂ ଗୌର ଘୋଷ୍‌ଙ୍କ ନିଜ ଭଉଣୀ । ଏଥିରେ ପ୍ରଥମ ନାଚ ଶିକ୍ଷକ ଭାବେ ମାସିକ ପନ୍ଦର ଟଙ୍କା ବେତନରେ ମାୟାଧର ରାଉତଙ୍କୁ ନିଯୁକ୍ତ କରାଗଲା । ସେ ଅନ୍ନପୂର୍ଣ୍ଣା 'ଖ' ଦଳରେ ଆଗରୁ ନାୟକ ଭୂମିକାରେ ଅଭିନୟ କରୁଥିଲେ ଏବଂ ଗୋଟିପୁଅ ପରଂପରାରେ ନାଚ ଶିଖିଥିଲେ । ଛାତ୍ରୀମାନଙ୍କଠାରୁ ମାସିକ ଏକ ଟଙ୍କା ଲେଖାଏଁ ନିଆଯାଉଥିଲା । ପ୍ରଥମ ଦଶ ବର୍ଷ ଏହି କେନ୍ଦ୍ରରେ ବିଭିନ୍ନ ଶୈଳୀରେ ନୃତ୍ୟ ଶିଖାଯାଉଥିଲା । ଓଡ଼ିଶୀ ସହିତ ଭାରତନାଟ୍ୟମ୍, ମଣିପୁରୀ, କଥକ ଓ କେତେକ ଲୋକନୃତ୍ୟ (ବିଶେଷତଃ ସର୍ପ ଓ ମୟୂର ନୃତ୍ୟ)[୧] ଶିଖାଯାଉଥିଲା ।

ଏହା ମଧ୍ୟରେ କେଳୁଚରଣ ଓ ଲକ୍ଷ୍ମୀପ୍ରିୟା ଅନ୍ନପୂର୍ଣ୍ଣା 'କ' ଦଳ ଛାଡ଼ି କଟକରେ ବସା ଘରେ ରହୁଥିଲେ । ନାଚ ଓ ଅଭିନୟ ପାଇଁ ଲକ୍ଷ୍ମୀପ୍ରିୟାଙ୍କର ବିଶେଷ ଆଦର ଥିଲା । ପ୍ରାୟ ଦଶବର୍ଷ ଧରି – ପଞ୍ଚମ ଦଶକର ପ୍ରଥମ ଭାଗରେ ସେ କେତେକ ସୌଖିନ ରଙ୍ଗମଞ୍ଚ ଓ ଓଡ଼ିଆ ଚଳଚ୍ଚିତ୍ର ସହିତ ସଂପୃକ୍ତ ଥିଲେ । କିନ୍ତୁ ସ୍ୱାସ୍ଥ୍ୟଗତ କାରଣରୁ ପରେ ସେ ଆଉ ନାଚିପାରିଲେ ନାହିଁ । ଝିଅର ଜନ୍ମ ପରେ ପରେ ଖୁବ୍ କମ୍ ବୟସରୁ ନାଚ ଆରମ୍ଭ କରିଥିବାରୁ ହୁଏତ ତାଙ୍କର ସ୍ୱାସ୍ଥ୍ୟ ଭାଙ୍ଗି ପଡ଼ିଲା ।

ଅନ୍ନପୂର୍ଣ୍ଣା 'କ' ଓ 'ଖ' ଦଳର କେତେଜଣ ଅଭିନେତା ପରେ ସେଥିରୁ ବାହାରିଯାଇ ଆଉ ଦୁଇଟି ଦଳ ଆରମ୍ଭ କଲେ – ରୂପଶ୍ରୀ ଓ ଜନତା । ଏଥିରେ କେତେଜଣ ଇଞ୍ଜିନିୟର ଓ ଓକିଲ ମଧ୍ୟ ଯୋଗ ଦେଲେ । ରୂପଶ୍ରୀ ଥିଏଟର୍ ପ୍ରଥମେ ଖୋର୍ଦ୍ଧାରେ ଆରମ୍ଭ ହେଲା; ପରେ କଟକକୁ ଉଠି ଆସିଲା । କଟକର କଲେଜ୍ ଛକଠାରେ ଗୋଟିଏ ଗୋଦାମ ଘରେ ଏହାର ରିହର୍ସାଲ୍ ହେଉଥିଲା । ରୂପଶ୍ରୀ ଥିଏଟର୍ ଆରମ୍ଭ ହେବାର ପ୍ରାୟ ବର୍ଷେ ପରେ ଜନତା ଥିଏଟର୍ କାର୍ଯ୍ୟ ଆରମ୍ଭ କଲା । କାଳୀଚରଣ ପଟ୍ଟନାୟକଙ୍କ ଓଡ଼ିଶା ଥିଏଟର୍‌ର ପୁରୁଣା ପ୍ରାଙ୍ଗଣରେ, ବାଙ୍କା ବଜାରରେ ଏହା କାର୍ଯ୍ୟ କରିବାକୁ ଲାଗିଲା ।

---

୧) ଏହି କାର୍ଯ୍ୟକ୍ରମ ସଂପର୍କରେ କୋଲ୍‌କାତାର ଆନନ୍ଦ ବଜାର ପତ୍ରିକା (୧୭ ଜୁନ୍, ୧୯୫୪)ରେ ସମ୍ବାଦ ପ୍ରକାଶିତ ହୋଇଥିଲା ।

କେଳୁଚରଣ ଏ ସମସ୍ତ ଥିଏଟର୍ ଦଳ ସହିତ ସଂପୃକ୍ତ ହୋଇପଡ଼ିଲେ । କାରଣ ଏହାଦ୍ୱାରା ଲକ୍ଷ୍ମୀପ୍ରିୟାଙ୍କୁ ଅଭିନୟ କରିବାକୁ ଅଧିକ ସୁଯୋଗ ମିଳିଲା । କ୍ରମଶଃ ନାଚ ପ୍ରତି ତାଙ୍କର ଆଗ୍ରହ ବଢ଼ିବାରେ ଲାଗିଲା । ଅଧିକରୁ ଅଧିକ ଛାତ୍ରୀଙ୍କୁ ନାଚ ଶିଖାଇବାର ଅନୁଭୂତି ତାଙ୍କୁ ଓଡ଼ିଆ ନାଚରେ ଏକ ନିର୍ଦ୍ଦିଷ୍ଟ ପଦ୍ଧତି ସୃଷ୍ଟି କରିବାରେ ସାହାଯ୍ୟ କଲା । ଏଯାବତ୍ ହୁଏତ ସେପରି ପଦ୍ଧତି ସଂପର୍କରେ କାହାରି ସ୍ପଷ୍ଟ ଧାରଣା ନଥିଲା ।

ସେତେବେଳେ କଟକ ଓ ପୁରୀ ସଂସ୍କୃତିର ମୁଖ୍ୟ କେନ୍ଦ୍ର ଥିଲା । ଚତୁର୍ଥ ଦଶକ ସମୟରୁ ଉତ୍କଳ ସମାଜ ଆନୁକୂଲ୍ୟରେ ରାଜ୍ୟସ୍ତରୀୟ ନୃତ୍ୟ ପ୍ରତିଯୋଗିତା ଆରମ୍ଭ ହେଲା । ୧୯୪୩ରୁ ଜାତୀୟ ସଂଗୀତ ଅନୁଷ୍ଠାନ (ନ୍ୟାସନାଲ୍ ମ୍ୟୁଜିକ୍ ଆସୋସିଏସନ୍) କଟକରେ ଶାସ୍ତ୍ରୀୟ ସଂଗୀତ ଶିକ୍ଷା ଆରମ୍ଭ କଲେ । ଏଥିରେ ପ୍ରଥମ କେତେ ବର୍ଷ ଗୁରୁ କୁନ୍ଦର ଆଦିନାରାୟଣଙ୍କ ତତ୍ତ୍ୱାବଧାନରେ ହିନ୍ଦୁସ୍ତାନୀ ଶାସ୍ତ୍ରୀୟ ସଂଗୀତ ଶିକ୍ଷା ଦିଆଗଲା । ପଞ୍ଚମ ଦଶକ ଆରମ୍ଭ ବେଳକୁ ନୃତ୍ୟ ଶିକ୍ଷା ଆରମ୍ଭ ହେଲା । ଦେବପ୍ରସାଦ ଦାସ ଓଡ଼ିଶୀ ଏବଂ ଚିନ୍ମୟ ଲାହିଡ଼ୀ କଥକ ଦାୟିତ୍ୱରେ ରହିଲେ ।

୧୯୪୮ରେ କଟକରେ ଅଲ୍ ଇଣ୍ଡିଆ ରେଡ଼ିଓ ସ୍ଥାପିତ ହେଲା । ଏହାର ମୁଖ୍ୟ ଭାବରେ ଅବସ୍ଥାପିତ ହେଲେ ପି.ଭି. କ୍ରିଷ୍ଣମୂର୍ତ୍ତି । ସେ ଥିଲେ ଜଣେ ଦୂରଦୃଷ୍ଟିସଂପନ୍ନ ଦକ୍ଷିଣ ଭାରତୀୟ । ଓଡ଼ିଶାର ସଂଗୀତଜ୍ଞ, ଲେଖକ ଓ ନୃତ୍ୟ ଶିଳ୍ପୀମାନଙ୍କୁ ସେ ଯଥେଷ୍ଟ ଉତ୍ସାହ ଦେଲେ । ଓଡ଼ିଶାର ସଂଗୀତ କ୍ଷେତ୍ରରେ ତିନି ଜଣ ପ୍ରତିଭାବାନ କଳାକାରଙ୍କୁ ସେ ଏକତ୍ର କଲେ । ଏମାନଙ୍କର କର୍ମଧାରା ଓ ଦୃଷ୍ଟିଭଙ୍ଗୀର ଭିନ୍ନତା ସମ୍ମିଳିତ ଭାବେ ଓଡ଼ିଶାର ସଂଗୀତ କ୍ଷେତ୍ରରେ ଏକ ବିପ୍ଳବ ସୃଷ୍ଟି କଲା । ଏମାନଙ୍କ ମଧ୍ୟରୁ ପୁରୀ ଜିଲ୍ଲାର ବାଳକୃଷ୍ଣ ଦାଶ, ଶ୍ୟାମସୁନ୍ଦର କର ଏବଂ ନୃସିଂହନାଥ ଖୁଣ୍ଟିଆଙ୍କଠାରୁ ପାରମ୍ପରିକ ଓଡ଼ିଶୀ ଏବଂ କଲିକତାର ବଡ଼େ ଗୁଲାମ ଅଲ୍ଲୀ ଖାଁଙ୍କଠାରୁ ହିନ୍ଦୁସ୍ତାନୀ ସଂଗୀତ ଶିକ୍ଷା କରିଥିଲେ । ଗଞ୍ଜାମର ଭୁବନେଶ୍ୱର ମିଶ୍ର କର୍ଣ୍ଣାଟକୀ ଓ ହିନ୍ଦୁସ୍ତାନୀ ଶାସ୍ତ୍ରୀୟ ସଂଗୀତରେ ତାଲିମ୍ ନେଇଥିଲେ । ହରିପ୍ରସାଦ ଚୌରସିଆ ଆସିଥିଲେ ଉତ୍ତର ପ୍ରଦେଶରୁ । ସଂଳାପ ଲେଖକ ତଥା ଅସାଧାରଣ ପ୍ରତିଭାସଂପନ୍ନ ସୁରେନ୍ଦ୍ର ମହାନ୍ତି ସେତେବେଳେ ଅଲ୍ ଇଣ୍ଡିଆ ରେଡ଼ିଓରେ କାର୍ଯ୍ୟ କରୁଥିଲେ । ତାଙ୍କ ସାହାଯ୍ୟରେ କ୍ରିଷ୍ଣମୂର୍ତ୍ତି ନାଟକ ଓ ଗୀତିନାଟ୍ୟ କ୍ଷେତ୍ରରେ ଯଥେଷ୍ଟ ନୂତନତା ପ୍ରବର୍ତ୍ତନ କରିପାରିଲେ ।

ମଜାର କଥା ହେଉଛି, ଓଡ଼ିଶାର ସାଂସ୍କୃତିକ ଜାଗରଣରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ ଗୁଜରାଟର ଜଣେ ବ୍ୟକ୍ତି । ଚତୁର୍ଥ ଦଶକର ମଧ୍ୟ ଭାଗରେ ଜୟପ୍ରକାଶ ନାରାୟଣ ସମାଜବାଦର ବାର୍ତ୍ତା ପ୍ରଚାର କରିବା ପାଇଁ ତାଙ୍କର ଶିଷ୍ୟ ବାବୁଲାଲ୍ ଦୋଷୀଙ୍କୁ ଓଡ଼ିଶା ପଠାଇଥିଲେ । ଓଡ଼ିଶାରେ ପହଞ୍ଚି ବାବୁଲାଲ୍ ଓଡ଼ିଶାର କଳାକୃତିରେ ଏତେ ମୁଗ୍ଧ ହେଲେ ଯେ ତାଙ୍କ ରାଜନୀତିକ ଉଦ୍ଦେଶ୍ୟ ସଂପୂର୍ଣ୍ଣ ଭୁଲି ଗଲେ । ଏପରିକି,



ବାବୁଲାଲ୍ ଦୋଶୀ ଓ କେଳୁଚରଣଙ୍କ ସହିତ କଳା ବିକାଶ କେନ୍ଦ୍ରର ନୃତ୍ୟଶିକ୍ଷୀଗଣ

ସଂପର୍କୀୟମାନଙ୍କ ସହିତ ଚଳାଉଥିବା ତାଙ୍କର ଅଳଙ୍କାର ବ୍ୟବସାୟ ମଧ୍ୟ ଛାଡ଼ିଦେଲେ । ବର୍ତ୍ତମାନ ତାଙ୍କର ଏକମାତ୍ର ଲକ୍ଷ୍ୟ ହେଲା ଓଡ଼ିଶୀ ନୃତ୍ୟର ବିକାଶ ଓ ପ୍ରସାର । ତାଙ୍କର ଅସାଧାରଣ ଇଚ୍ଛାଶକ୍ତି ବଳରେ ସେ ବହୁ ପ୍ରତିଭାବାନ୍ ଶିଳ୍ପୀ, ବିଦ୍ୱାନ୍ ଏବଂ ରାଜନୀତିଜ୍ଞଙ୍କୁ ଏକତ୍ର କରି ନିଜ ଲକ୍ଷ୍ୟ ସାଧନ କରିପାରିଲେ । ପ୍ରଥମ କେତେ ବର୍ଷ ତାଙ୍କର ପ୍ରଧାନ କାର୍ଯ୍ୟ ହେଲା କଳା ବିକାଶ କେନ୍ଦ୍ରରେ ଗୃହ ନିର୍ମାଣ ପାଇଁ ଅର୍ଥ ସଂଗ୍ରହ କରିବା । ସେଥିପାଇଁ ସେ ବହୁ ତ୍ୟାଗ ବରଣ କରିଥିଲେ । ୧୯୫୭ରେ ତତ୍କାଳୀନ ମୁଖ୍ୟମନ୍ତ୍ରୀ ହରେକୃଷ୍ଣ ମହତାବଙ୍କଠାରୁ ସେ ଜମି ଖଣ୍ଡିଏ ପାଇଲେ ଏବଂ କାଳୀଚରଣ ପଟ୍ଟନାୟକଙ୍କ ସାହାଯ୍ୟ ନେଇ ଅର୍ଥ ସଂଗ୍ରହ କରିବାରେ ଲାଗିପଡ଼ିଲେ । ୧୯୫୮ ଅଗଷ୍ଟ ମାସରେ କଳାବିକାଶ କେନ୍ଦ୍ରର ଭିତ୍ତି ସ୍ଥାପନ କରାଗଲା । ୧୯୫୯ ଡିସେମ୍ବର ବେଳକୁ ଏହାର ପ୍ରଥମ ମହଲା କାର୍ଯ୍ୟ ଶେଷ ହେଲା । ଏହା ପୂର୍ବରୁ ଓଡ଼ିଆ ବଜାରର ଗଙ୍ଗା ମନ୍ଦିରରେ ଏବଂ ବାଙ୍କା ବଜାରରେ ଭଡ଼ା ଘରମାନଙ୍କରେ କ୍ଲାସ୍‌ମାନ ହେଉଥିଲା ।

ଗଙ୍ଗା ମନ୍ଦିରରେ ଭଡ଼ା ନିଆଯାଇଥିବା ଚାରୋଟି ବଖରାରେ କ୍ଲାସ୍ ହେଉଥିବା ବେଳେ ବାବୁଲାଲ୍ କେଳୁଚରଣଙ୍କୁ କେନ୍ଦ୍ରରେ ଯୋଗଦାନ କରିବାପାଇଁ ଅନୁରୋଧ କଲେ । କେଳୁଚରଣ ଯୋଗଦାନ କରିବା ପରେ ବାବୁଲାଲ୍ ସ୍ୱୀକାର କଲେ, କେନ୍ଦ୍ରରେ ନୃତ୍ୟ ଶିକ୍ଷାର

ମାନରେ ଉନ୍ନତି ଘଟିଲା ।[୧] ୧୯୫୩ ରୁ ୧୯୬୫ ଯାଏଁ କେଳୁଚରଣ ଏଠାରେ ନିୟମିତ ନାଚ ଶିଖାଇଥିଲେ । ସେ ଏହାକୁ ଓଡ଼ିଶୀ ନୃତ୍ୟ ଶିକ୍ଷାର ଏକ ମୁଖ୍ୟ କେନ୍ଦ୍ରରେ ପରିଣତ କଲେ ।

ଦୁଇ ତିନୋଟି ଘର ବଦଳାଇବା ପରେ କେଳୁଚରଣ ସୂତାହାଟ ନିକଟରେ ଗୋଟିଏ ଗଳିରେ ଆସି ରହିଲେ । ବାବୁଲାଲ୍ ଦୋଷୀ ଅଳ୍ପ ଦୂରରେ ଓଡ଼ିଆ ବଜାରରେ ରହୁଥା'ନ୍ତି । କେଳୁଚରଣଙ୍କର ଦୁଇ ବଖୁରିଆ ଘରେ ସେ, ତାଙ୍କ ସ୍ତ୍ରୀ ଓ ଝିଅଙ୍କ ବ୍ୟତୀତ କେନ୍ଦ୍ରର ଅନ୍ୟତମ ନାଚ ଶିକ୍ଷକ ମାୟାଧର ରାଉତ ମଧ୍ୟ ରହୁଥା'ନ୍ତି । ମାୟାଧରଙ୍କ ମାଧ୍ୟମରେ ବାବୁଲାଲ୍‌ଙ୍କ ସହିତ କେଳୁଚରଣଙ୍କ ସଂପର୍କ ବଢ଼ିଲା । କେଳୁଚରଣ ଟ୍ୟୁସନ୍ କରୁଥିବା ଝିଅମାନେ ମଧ୍ୟ କେନ୍ଦ୍ରରେ ଯୋଗ ଦେଲେ । ସେମାନଙ୍କ ମଧ୍ୟରେ ଥିଲେ, ଚମ୍ପକ, ଜୟନ୍ତୀ, ଆଭା, କୃଷ୍ଣପ୍ରିୟା, ବନପ୍ରିୟା, ସୁଷମା, ପ୍ରତିମା, ମୀରା, କାଦମ୍ବରୀ, ପ୍ରତିଭା, ମୀନାକ୍ଷୀ, ସଂଯୁକ୍ତା ଓ ଅନ୍ୟମାନେ । ଦିନକୁ ଦିନ ଛାତ୍ରୀଙ୍କ ସଂଖ୍ୟା ବଢ଼ିବାକୁ ଲାଗିଲା । ଭଡ଼ା ନିଆଯାଇଥିବା ଘରେ ନାଚ ଶିଖାଇବା ପାଇଁ ଜାଗା ହେଲା ନାହିଁ । ରାଣୀହାଟରେ କେନ୍ଦ୍ର ପାଇଁ ନିଆଯାଇଥିବା ଆଉ ଗୋଟିଏ ଘର ମଧ୍ୟ ଛୋଟ ପଡ଼ିବାରୁ ସେଠାରେ ନାଚ ଶିଖାଇବା ସମ୍ଭବ ହେଲାନାହିଁ ।

୧୯୫୪ରେ ଅନ୍ନପୂର୍ଣ୍ଣା 'ଖ' ଦଳ ଛାଡ଼ି ରଘୁନାଥ ଦତ୍ତ ସହକାରୀ ନାଚ ଶିକ୍ଷକ ଭାବରେ କେନ୍ଦ୍ରରେ ଯୋଗ ଦେଲେ । ସେହି ବର୍ଷ କାଳୀଚରଣ ପଟ୍ଟନାୟକ ଓ କେନ୍ଦ୍ରର ନାଚ ଶିକ୍ଷକମାନେ ଗୋଟିଏ ଚାରି ବର୍ଷିଆ ନାଚ ସିଲାବସ୍ ବା କାର୍ଯ୍ୟକ୍ରମ ପ୍ରବର୍ତ୍ତନ କଲେ । ବର୍ତ୍ତମାନ କାଳୀଚରଣ ପଟ୍ଟନାୟକ ତାଙ୍କର ସମସ୍ତ ଶକ୍ତି ନାଚର ବିକାଶ ପାଇଁ ଖଟାଉଥା'ନ୍ତି । କେନ୍ଦ୍ରରେ ଯୋଗ ଦେଇଥିବା ଦୁଇଜଣ ଗବେଷକ ନୀଳମାଧବ ବୋଷ୍ ଏବଂ ଦୟାନିଧି ଦାସ ମଧ୍ୟ ତାଙ୍କ ସହିତ ସହଯୋଗ କରୁଥା'ନ୍ତି ।

ସେ ସମୟରେ କେଳୁଚରଣ ବେଶ୍ ପରିଶ୍ରମ କରୁଥା'ନ୍ତି । ତାଙ୍କୁ ନାଚ ଶିଖାଇବାରେ ସାହାଯ୍ୟ କରୁଥା'ନ୍ତି ତାଙ୍କର ସଂପର୍କୀୟ ଭାଇ ରଘୁରାଜପୁରର ବନମାଳୀ । ପୁରୀ ଅନ୍ନପୂର୍ଣ୍ଣା 'କ' ଦଳରେ କାମ କରୁଥିବା ବେଳେ ବନମାଳୀ ମର୍ଦ୍ଦଳ ବଜାଇବା ଶିଖିଯାଇଥା'ନ୍ତି । ଟ୍ୟୁସନ୍ କରିବା ପାଇଁ କେଳୁଚରଣ ଓ ବନମାଳୀ ଖଣ୍ଡିଏ ପୁରୁଣା ସାଇକେଲ୍‌ରେ କଟକ ଓ ଚୌଦ୍ୱାରରେ ବେଶ୍ କିଛି ବାଟ ଘୁରୁଥା'ନ୍ତି । ମାସରେ ଥରେ କେଳୁଚରଣଙ୍କୁ ଟ୍ରେନ୍ ଯୋଗେ କଟକରୁ ଅନୁଗୁଳ ଯିବାକୁ ହେଉଥାଏ । ଅନୁଗୁଳରେ ସାତ ଆଠ ଦିନ ରହି ବିଭିନ୍ନ ଘରେ ଟ୍ୟୁସନ୍ କରୁଥା'ନ୍ତି । ସପ୍ତାହରେ ତିନି ଦିନ ବସ୍ ଯୋଗେ କଟକରୁ ଭୁବନେଶ୍ୱର ଆସି ଭୁବନେଶ୍ୱରର କଳାକେନ୍ଦ୍ରରେ ନାଚ ଶିଖାଉଥା'ନ୍ତି । ଏହି

୧) ବାବୁଲାଲ୍ ଦୋଷୀଙ୍କ 'ମୋ କଥା, କଳାବିକାଶ କେନ୍ଦ୍ର କଥା' (୧୯୭୭) ଦେଖନ୍ତୁ ।


ଲୋକନୃତ୍ୟରେ କେଳୁଚରଣ, ଲକ୍ଷ୍ମୀପ୍ରିୟା ଓ ଜୟନ୍ତୀ ଘୋଷ୍

କେନ୍ଦ୍ର ୧୯୫୫ ଅଗଷ୍ଟରେ ନୂଆ ରାଜଧାନୀଠାରେ ସ୍ଥାପନ କରିଥା'ନ୍ତି ଅନ୍ନଦା ଚରଣ ଦାସ ।

ସେତେବେଳେ ଟ୍ୟୁସନ୍ କରି କେଳୁଚରଣ ମାସକୁ ପ୍ରାୟ ନଅଶହ ଟଙ୍କା ରୋଜଗାର କରୁଥା'ନ୍ତି । ଖାଇବାକୁ ବା ଶୋଇବାକୁ ଯଥେଷ୍ଟ ସମୟ ନଥାଏ । ସବୁବେଳେ ଏଣେ ତେଣେ ଘୁରିବାକୁ ପଡୁଥାଏ । ଟ୍ୟୁସନ୍ ସରିବା ପରେ ସଞ୍ଜବେଳେ ଯଦି ରିହର୍ସାଲ୍ କରିବାର ନଥାଏ, ତେବେ କୌଣସି ସିନେମା ହଲ୍‌ରେ ସେକେଣ୍ଡ୍ ସୋ' ଦେଖି ଅଧରାତିରେ ଘରକୁ ଫେରୁଥା'ନ୍ତି । ପାହାନ୍ତାଯାଏଁ ସେ ଶୋଇପାରନ୍ତି ନାହିଁ । କେହି ଜଣେ ତାଙ୍କ ମୁଣ୍ଡ ଚିପିଦେଲା ପରେ ତାଙ୍କୁ ନିଦ ଲାଗେ । ସକାଳ ଆଠଟାରେ ଉଠି ସର୍ବତ୍ ଗ୍ଲାସେ ପିଅନ୍ତି । ତାଳି ପକା ଧୋତି ଓ କୁର୍ତ୍ତା ପିନ୍ଧି ତା' ପରେ ବାହାରି ଯା'ନ୍ତି ଟ୍ୟୁସନ୍ ଓ ରିହର୍ସାଲ୍ ପାଇଁ ।

ଟ୍ୟୁସନ୍ କରିବା, କଳା ବିକାଶ କେନ୍ଦ୍ରରେ ନାଚ ଶିଖାଇବା, ଅନ୍ନପୂର୍ଣ୍ଣା 'ଖ' ଦଳ ସହିତ କାର୍ଯ୍ୟ କରିବା ସାଙ୍ଗକୁ କେବେ କିପରି ନୃତ୍ୟ ପ୍ରଦର୍ଶନ କରିବା ପାଇଁ କୌଣସି କୌଣସି ଅନୁଷ୍ଠାନରୁ କେଳୁଚରଣ ନିମନ୍ତ୍ରଣ ପାଉଥିଲେ । ସେ ନିଜେ ନାଚିବା ପ୍ରାୟ ବନ୍ଦ କରିଦେଇଥିଲେ । ନିଜ ଛାତ୍ରୀମାନଙ୍କୁ ନାଚ ଦେଖାଇବା ପାଇଁ ଅଧିକ ସୁଯୋଗ ଦେଉଥିଲେ । ପଞ୍ଚମ ଦଶକର ଆରମ୍ଭରୁ ମଞ୍ଚ ଉପରେ ଆଉ ତାଙ୍କୁ ବିଶେଷ ଦେଖିବାକୁ ମିଳୁ ନଥିଲା; କେବେ କେବେ ଲକ୍ଷ୍ମୀପ୍ରିୟା, ଜୟନ୍ତୀ ବା କୃଷ୍ଣପ୍ରିୟାଙ୍କ ସହିତ କେଳା-କେଳୁଣୀ ବା ଦଣ୍ଡନାଚ ପ୍ରଦର୍ଶନ କରୁଥିଲେ । କୌଣସି ଛାତ୍ରୀଙ୍କ ସହିତ ଦଶାବତାର ମଧ୍ୟ ପରିବେଷଣ କରୁଥିଲେ । ତେବେ ଛାତ୍ରଛାତ୍ରୀମାନଙ୍କ ପ୍ରତିଭାର ବିକାଶ ତାଙ୍କର ମୁଖ୍ୟ ଲକ୍ଷ୍ୟ ଥିଲା । ସେମାନଙ୍କର ରିହର୍ସାଲ୍ ତତ୍ତ୍ୱାବଧାନ କରୁଥିଲେ, ସେମାନଙ୍କ ପୋଷାକର ଡ଼ିଜାଇନ୍ ସ୍ଥିର

କରୁଥିଲେ, ମର୍ଦ୍ଦଳ ବଜାଉଥିଲେ, ଆବଶ୍ୟକ ପଡ଼ିଲେ ନିଜେ ଗୀତ ମଧ୍ୟ ବୋଲୁଥିଲେ । ନଅ ଦଶ ବର୍ଷର ଛୋଟ ଛୋଟ ଝିଅମାନେ ମଞ୍ଚ ଉପରେ ସେମାନଙ୍କ ନୃତ୍ୟ ପ୍ରଦର୍ଶନ କରିବାର ସୁଯୋଗ ପାଉଥିଲେ । ପୁରୀ ଓ କଟକରେ ଅନୁଷ୍ଠିତ ବିଭିନ୍ନ ପ୍ରତିଯୋଗିତା କିମ୍ୱା କଲେଜ୍ ବା ଅନ୍ୟ ଅନୁଷ୍ଠାନର ବାର୍ଷିକ ଉତ୍ସବରେ ସେମାନଙ୍କୁ ଏହି ସୁଯୋଗ ମିଳୁଥିଲା । ପ୍ରତି ଅଗଷ୍ଟ ମାସରେ କଳା ବିକାଶ କେନ୍ଦ୍ରରେ ବାର୍ଷିକ ଗୀତିନାଟ୍ୟ ପରିବେଷଣ କରାଯାଉଥିଲା । ୧୯୫୨ ଅକ୍ଟୋବର-ନଭେମ୍ବର ମାସଠାରୁ କଟକରେ କୁମାର ଉତ୍ସବ ଅନୁଷ୍ଠିତ ହୋଇ ଗୀତିନାଟ୍ୟ ପ୍ରଦର୍ଶନ ଆରମ୍ଭ ହେଲା ।

ବୟସ କମ୍ ହୋଇଥିଲେ ମଧ୍ୟ କେଳୁଚରଣଙ୍କ ଛାତ୍ରୀମାନେ ନୃତ୍ୟରେ ଖୁବ୍ ପାରଦର୍ଶିତା ଦେଖାଇ ପାରିଲେ । 'ଚିଲ୍ଡ୍ରେନ୍ସ୍ ଲିଟ୍ଲ୍ ଥିଏଟର୍'ର ବାର୍ଷିକ ଉତ୍ସବରେ ଭାରତର ସବୁ ରାଜ୍ୟର ପିଲାମାନଙ୍କ ମଧ୍ୟରେ ସଂଯୁକ୍ତାଙ୍କ 'ନାହିଁକି କରିଦେଲ' ଓଡ଼ିଶୀ ନାଚ ସର୍ବଶ୍ରେଷ୍ଠ ବିବେଚିତ ହେଲା । ଏହି ଉତ୍ସବ ୧୯୫୩ ମେ'ରେ କୋଲ୍‌କାତାର ଇମ୍ପେରିଆଲ୍ ଥିଏଟର୍‌ଠାରେ ଅନୁଷ୍ଠିତ ହୋଇଥିଲା । ୧୯୫୪ ଅଗଷ୍ଟ ମାସରେ ନାରୀ ସେବା ସଂଘରେ ଅନୁଷ୍ଠିତ କଳା ବିକାଶ କେନ୍ଦ୍ରର ଦ୍ୱିତୀୟ ବାର୍ଷିକ ଉତ୍ସବରେ ରୁକ୍ମିଣୀ ଦେବୀ ମୀନାକ୍ଷୀଙ୍କ ଦ୍ୱାରା ପରିବେଷିତ 'ଶିବ-ନଟରାଜ' ନୃତ୍ୟର ପ୍ରଶଂସା କରିଥିଲେ ।[୧] ଏହି ନୃତ୍ୟ କେଳୁଚରଣ ପୂର୍ବରୁ ପରିବେଷଣ କରିଥିବା 'ଦେବୀ-ଭସ୍ମାସୁର' ନୃତ୍ୟ ଉପରେ ଆଧାରିତ ଥିଲା । ୧୯୫୫ରେ ପୁରୀରେ ଅନୁଷ୍ଠିତ ଏକ ନୃତ୍ୟ ପ୍ରତିଯୋଗିତାରେ ଜୟନ୍ତୀ ତାଙ୍କ 'ଦଶାବତାର' ନୃତ୍ୟ ପାଇଁ ପ୍ରଥମ ପୁରସ୍କାର ପାଇଲେ । କେଳୁଚରଣ ଓ ଲକ୍ଷ୍ମୀପ୍ରିୟା ଏହି ନୃତ୍ୟ ଅନ୍ନପୂର୍ଣ୍ଣା ଥିଏଟର୍‌ରେ ପରିବେଷଣ କରୁଥିଲେ । ୧୯୫୪ ଏପ୍ରିଲ୍‌ରେ କଟକରେ ଅନୁଷ୍ଠିତ ନିଖିଳ ଉତ୍କଳ ସଂଗୀତ ସମ୍ମିଳନୀର ନୃତ୍ୟ ଓ ସଂଗୀତ ପ୍ରତିଯୋଗିତାରେ ସାଧନା ବୋଷ୍ ଓଡ଼ିଶୀ, ମଣିପୁରୀ ଓ ଭାରତନାଟ୍ୟମ୍‌ରେ ବାର ବର୍ଷରୁ କମ୍ ଛାତ୍ରୀମାନଙ୍କ ମଧ୍ୟରେ ପ୍ରଥମ ହେଲେ । ୧୯୫୪ ମାର୍ଚ୍ଚ ମାସରେ ଉତ୍କଳ ସଂଗୀତ ସମାଜ ଦ୍ୱାରା କଟକଠାରେ ଆୟୋଜିତ ଓଡ଼ିଶା ସଂଗୀତ ସମ୍ମିଳନୀର ପ୍ରତିଯୋଗିତାରେ ମୀନାକ୍ଷୀ ପୁରସ୍କୃତ ହେଲେ ।[୨] ୧୯୫୪ ଫେବୃୟାରୀରେ କଲିକତାର ଇଣ୍ଡିଆନ୍ ଆସୋସିଏସନ୍ ହଲ୍‌ରେ ଅନୁଷ୍ଠିତ ବସନ୍ତ ଉତ୍ସବରେ କଳା ବିକାଶ କେନ୍ଦ୍ର ଭାଗ ନେଇଥିଲା । ଏଥିରେ 'ଦଶାବତାର' ନୃତ୍ୟ ପାଇଁ ସାଧନା ସ୍ୱର୍ଣ୍ଣ ପଦକ ଲାଭ କରିଥିଲେ । ଏଥିରେ କ୍ଷୁଦ୍ର ଗୀତିନାଟ୍ୟ 'ପୌଷ-ଉତ୍ସବ' ମଧ୍ୟ ପରିବେଷିତ ହୋଇଥିଲା ।

---

୧. ଅମୃତ ବଜାର ପତ୍ରିକା, ୨୬ ଅଗଷ୍ଟ ୧୯୫୪ ।

୨. ଦ ଷ୍ଟେଟ୍‌ସ୍‌ମ୍ୟାନ୍, ୧ ଏପ୍ରିଲ୍ ୧୯୫୪ ।

ଏଭଳି ପ୍ରତିଯୋଗିତାମାନ ଅନୁଷ୍ଠିତ ହେଉଥିବା ସମୟରେ କୋଲ୍‌କାତାର ବନବିହାରୀ ମାଇତି ନାମକ ଜଣେ ନାଚ ଶିକ୍ଷକଙ୍କର ଗୋଟିଏ ମନ୍ତବ୍ୟ କେଳୁଚରଣଙ୍କ ଉପରେ ଖୁବ୍ ପ୍ରଭାବ ପକାଇଥିଲା । ମାଇତି କଟକରେ ବେଶ୍ କେତେ ବର୍ଷ ହେଲା 'ବାଂଲା ନାଚ' ନାମରେ ଏକ ନୃତ୍ୟ ଶୈଳୀ ଶିଖାଉଥିଲେ । ସେ ଥିଲେ ଉଦୟଶଙ୍କରଙ୍କର ଅନୁଗାମୀ । ଅନ୍ନପୂର୍ଣ୍ଣା 'ଖ' ଦଳରେ ପ୍ରଥମେ ସେ କେଳୁଚରଣ ଓ ଲକ୍ଷ୍ମୀପ୍ରିୟାଙ୍କୁ ଭେଟି ଶିବଙ୍କ ଉପରେ ଆଧାରିତ ଗୋଟିଏ ନୃତ୍ୟ ଶିଖାଇଥିଲେ । ଏହାର କିଛି ବର୍ଷ ପରେ କଟକର ବୀଣାପାଣି ସ୍କୁଲ୍‌ରେ ଅନୁଷ୍ଠିତ ଏକ ପ୍ରତିଯୋଗିତାରେ ମାଇତିଙ୍କର କେତେକ ଛାତ୍ରୀ ଭାଗ ନେଇଥିଲେ । ଏଥିରେ ସଂଯୁକ୍ତା ପ୍ରଥମ ପୁରସ୍କାର ପାଇଲେ, ମାଇତିଙ୍କର କୌଣସି ଛାତ୍ରୀ ପୁରସ୍କୃତ ହୋଇ ନଥିଲେ । ଏଥିରେ ବିଚଳିତ ହୋଇ ମାଇତି କେଳୁଚରଣଙ୍କୁ ବିରକ୍ତିରେ କହିଲେ, 'ଓଡ଼ିଶୀ ? ଓଡ଼ିଶୀ ପୁଣି କ'ଣ ? ମୁଁ ତ କେବେ ଏ ନାଚ ବିଷୟରେ କିଛି ଶୁଣିନାହିଁ ।'

ବନବିହାରୀ ମାଇତିଙ୍କ ମନ୍ତବ୍ୟ କେଳୁଚରଣଙ୍କୁ ଖୁବ୍ ବାଧିଲା । ସେହିଦିନ ସେ ଦୃଢ଼ ନିଷ୍ପତ୍ତି ନେଲେ, 'ଆଜିଠାରୁ ମୁଁ ଓଡ଼ିଶୀ ନୃତ୍ୟ କ'ଣ, ତାହା ପ୍ରମାଣ କରି ଦେଖାଇବି ।' ଏହା ପରଠାରୁ ସେ ମନପ୍ରାଣ ଦେଇ ତାଙ୍କ ସିଦ୍ଧାନ୍ତ କାର୍ଯ୍ୟକାରୀ କରିଆସିଛନ୍ତି ।

କଳା ବିକାଶ କେନ୍ଦ୍ର ପ୍ରତି ତାଙ୍କର ସଂପୂର୍ଣ୍ଣ ଆନୁଗତ୍ୟ ଥିଲା । କୋଲ୍‌କାତାର 'ଚିଲ୍ଡ୍ରେନ୍‌ସ୍ ଲିଟ୍‌ଲ୍ ଥିଏଟର୍'ରେ ସଂଯୁକ୍ତାଙ୍କ ସଫଳତା ପରେ କେଳୁଚରଣଙ୍କ ଛାତ୍ରୀମାନେ ପ୍ରାୟ ପ୍ରତିବର୍ଷ ସେମାନଙ୍କ କୃତିତ୍ୱ ପ୍ରମାଣିତ କରିଥିଲେ । ମୀନାକ୍ଷୀ କ୍ରମାଗତ ତିନିବର୍ଷ 'ଶିବ ତାଣ୍ଡବ ନୃତ୍ୟ' ପରିବେଷଣ କରି ଯଥେଷ୍ଟ ଜନପ୍ରିୟତା ଲାଭ କରିଥିଲେ । ଏହି ନୃତ୍ୟର ପ୍ରଥମ ଭାଗ ଥିଲା ଜଟିଳ ବନ୍ଧ ମୁଦ୍ରା । କିନ୍ତୁ ତାଣ୍ଡବ ଭାଗରେ ବିଭିନ୍ନ ରଂଗର ଆଲୋକ ତଥା ବାରୁଦର ଧୂଆଁ ଦର୍ଶକମାନଙ୍କୁ ଅଧିକ ମୋହିତ କରୁଥିଲା । ଚିଲ୍ଡ୍ରେନ୍‌ସ୍ ଲିଟିଲ୍ ଥିଏଟର୍‌ର ନିର୍ଦ୍ଦେଶକ ସମର ଚାଟାର୍ଜୀ କେଳୁଚରଣଙ୍କୁ ତାଙ୍କ ଅନୁଷ୍ଠାନକୁ ନେବାକୁ ବହୁବାର ଉଦ୍ୟମ କରିଥିଲେ । କଳା ବିକାଶ କେନ୍ଦ୍ର ଅପେକ୍ଷା ଯଥେଷ୍ଟ ଅଧିକ ଦରମା ଦେବାପାଇଁ ମଧ୍ୟ ସେ ପ୍ରସ୍ତୁତ ଥିଲେ । କେଳୁଚରଣ କିନ୍ତୁ ଚାଟାର୍ଜୀଙ୍କ ପ୍ରସ୍ତାବ ଗ୍ରହଣ କରି ନଥିଲେ । କେଳୁଚରଣ କେନ୍ଦ୍ରରେ ପ୍ରଥମେ ମାସିକ କୋଡ଼ିଏ ଟଙ୍କା ବେତନ ପାଉଥିଲେ । ପରେ ଏହା ପଇଁତିରିଶି ଟଙ୍କା, ସତୁରି ଟଙ୍କା, ଶହେ ପଚାଶ ଟଙ୍କା ଓ ଶେଷରେ ଦୁଇ ଶହ ପଚାଶ ଟଙ୍କା ହୋଇଥିଲା ।

କେଳୁଚରଣ ମଧ୍ୟ ଇନ୍ଦ୍ରାଣୀ ରହମାନ୍‌ଙ୍କୁ ନୃତ୍ୟ ଶିଖାଇବା ପାଇଁ ସମ୍ମତ ହୋଇ ନଥିଲେ । ସେତେବେଳକୁ ଇନ୍ଦ୍ରାଣୀ ରହମାନ୍ ଭାରତନାଟ୍ୟମ୍ ନୃତ୍ୟଶିଳ୍ପୀ ଭାବରେ ସୁଖ୍ୟାତି ଅର୍ଜନ କରିସାରିଥା'ନ୍ତି । ସେ ମେ' ୧୯୫୭ରେ ପୁରୀରେ କେଳୁଚରଣଙ୍କୁ ଭେଟିଲେ । ସେତେବେଳେ କେଳୁଚରଣ କାଳୀଚରଣ ପଟ୍ଟନାୟକଙ୍କ ଦ୍ୱାରା ଲିଖିତ ଗୀତିନାଟ୍ୟ 'ପଞ୍ଚ

ପୁଷ୍ପ'ର ରିହର୍ସାଲ୍ କରୁଥା'ନ୍ତି । ଉତ୍କଳ ନୃତ୍ୟ ସଂଗୀତ ସମ୍ମିଳନୀରେ ଗୀତିନାଟ୍ୟଟି ପରିବେଷିତ ହେବାର ଥାଏ ।

ଇନ୍ଦ୍ରାଣୀ ପ୍ରଥମେ ଚତୁର୍ଥ ଦଶକରେ ତାଙ୍କର ମା' ରାଗିଣୀ ଦେବୀଙ୍କଠାରୁ ଓଡ଼ିଶାର ଦେବଦାସୀ ନୃତ୍ୟ ସଂପର୍କରେ ଶୁଣିଥିଲେ । କିନ୍ତୁ ସେ ସଂପର୍କରେ ବିଶେଷ କିଛି ଜାଣି ନ ଥିଲେ । ୧୯୫୪ ନଭେମ୍ବରରେ ଦିଲ୍ଲୀରେ ଅନୁଷ୍ଠିତ ଅନ୍ତର୍ବିଶ୍ୱବିଦ୍ୟାଳୟ ଯୁବ ଉତ୍ସବରେ ଦୁଇଜଣ ବିଶ୍ୱବିଦ୍ୟାଳୟ ଛାତ୍ର-ଛାତ୍ରୀ ପ୍ରିୟମ୍ବଦା ମହାନ୍ତି ଏବଂ ଧୀରେନ୍ଦ୍ର ନାଥ ପଟ୍ଟନାୟକ ଓଡ଼ିଶୀ ନୃତ୍ୟ ପରିବେଷଣ କରିବା ସେ ଦେଖିଲେ । ପ୍ରିୟମ୍ବଦାଙ୍କ 'ଗୁମାନ କାହିଁକି' ଓଡ଼ିଆ ସଂଗୀତର ନାଟ୍ୟରୂପ ଏବଂ ଧୀରେନ୍ଦ୍ରଙ୍କ 'ଦଶାବତାର' ଦେଖିବା ପରେ ଦିଲ୍ଲୀର କଳା ଜଗତରେ ଓଡ଼ିଶୀ ନୃତ୍ୟର ସ୍ଥିତି ସଂପର୍କରେ ସଚେତନତା ସୃଷ୍ଟି ହେଲା ।

ଇନ୍ଦ୍ରାଣୀ ଓଡ଼ିଶୀ ନୃତ୍ୟ ଶିକ୍ଷା କରିବାରେ ବିଶେଷ ଆଗ୍ରହୀ ଥିଲେ । ବିଶିଷ୍ଟ କବି ଓ ଶିକ୍ଷାବିତ୍ ମାୟାଧର ମାନସିଂହଙ୍କ ଉଦ୍ୟମରେ ୧୯୬୩ ମେ'ରେ ତାଙ୍କୁ ଓଡ଼ିଶା ସରକାର ରାଜ୍ୟର ଅତିଥି ଭାବରେ ନିମନ୍ତ୍ରଣ କଲେ । କେଳୁଚରଣଙ୍କଠାରୁ ଓଡ଼ିଶୀ ନୃତ୍ୟରେ ତାଲିମ୍ ନେବା ପାଇଁ ତଥା କାଳୀଚରଣ ପଟ୍ଟନାୟକଙ୍କଠାରୁ ନୃତ୍ୟ ସଂପର୍କରେ ତଥ୍ୟ ସଂଗ୍ରହ ପାଇଁ ଡଃ ମାନସିଂହ ଇନ୍ଦ୍ରାଣୀଙ୍କୁ କହିଥିଲେ । ଇନ୍ଦ୍ରାଣୀ କେଳୁଚରଣଙ୍କୁ ପୁରୀରେ ଭେଟିଲେ । କେଳୁଚରଣ ସେତେବେଳେ ରଙ୍ଗମଞ୍ଚରେ ଗ୍ରୀନ୍ ରୁମ୍‌ରେ ଥିଲେ । ଇନ୍ଦ୍ରାଣୀ ସିଧା କହିଲେ, ସେ କେତୋଟି ଓଡ଼ିଶୀ ନୃତ୍ୟର ମୁଦ୍ରା ଶିଖିବାକୁ ଚାହାନ୍ତି । ତାଙ୍କ ହାତରେ ମାତ୍ର ଆଠ ଦଶ ଦିନ ସମୟ ଅଛି । ଏତେ କମ୍ ସମୟ ମଧ୍ୟରେ ସେ ଯାହା କିଛି ସମ୍ଭବ ଶିଖି ପାରିବେ । ଇନ୍ଦ୍ରାଣୀଙ୍କ କଥା ଶୁଣି କେଳୁଚରଣଙ୍କୁ ଆଶ୍ଚର୍ଯ୍ୟ ଲାଗିଲା । ଏତେ କମ୍ ସମୟ ମଧ୍ୟରେ ଓଡ଼ିଶୀ ନୃତ୍ୟ ଶିଖିବେ କିପରି ? ଅଳ୍ପଦିନ ଭିତରେ କଳାବିକାଶ କେନ୍ଦ୍ରର ପରୀକ୍ଷା ହେବାର ଥାଏ । ତେଣୁ ଇନ୍ଦ୍ରାଣୀଙ୍କୁ ନାଚ ଶିଖାଇବା ପାଇଁ ତାଙ୍କ ହାତରେ ସମୟ ନଥାଏ ।

ଶେଷରେ ଇନ୍ଦ୍ରାଣୀ ତାଙ୍କୁ ନୃତ୍ୟ ଶିଖାଇବା ପାଇଁ ଦେବ ପ୍ରସାଦ ଦାସଙ୍କ ସମ୍ମତି ପାଇଲେ । ପଞ୍ଚମ ଦଶକରୁ ଦେବ ପ୍ରସାଦ ନ୍ୟାସନାଲ୍ ମ୍ୟୁଜିକ୍ ଏସୋସିଏସନ୍ ସହିତ ସଂପୃକ୍ତ ଥିଲେ । ଭୁବନେଶ୍ୱର କଳା କେନ୍ଦ୍ରରେ ମଧ୍ୟ ସେ ନୃତ୍ୟ ଶିକ୍ଷକ ଥିଲେ । ସମୟ ଅଭାବରୁ କେଳୁଚରଣ ଭୁବନେଶ୍ୱର କଳା କେନ୍ଦ୍ରରେ ଆଉ କ୍ଳାସ୍ ନେଇପାରୁ ନଥିଲେ । ଅନୁଷ୍ଠାନର ସଂପାଦକ ଅନ୍ନଦା ଚରଣ ଦାସଙ୍କ ପ୍ରସ୍ତାବକ୍ରମେ ଦେବ ପ୍ରସାଦ ମାସରେ ତିନିଥର ଦିଲ୍ଲୀ ଯାଇ ଇନ୍ଦ୍ରାଣୀଙ୍କୁ ନାଚ ଶିଖାଇଲେ । ପରେ ସେ ଇନ୍ଦ୍ରାଣୀଙ୍କ ସହିତ ବିଭିନ୍ନ ଅଞ୍ଚଳକୁ ଯାଇଥିଲେ । ଇନ୍ଦ୍ରାଣୀ ତାଙ୍କ କାର୍ଯ୍ୟକ୍ରମରେ ଓଡ଼ିଶୀ ନୃତ୍ୟ ଅନ୍ତର୍ଭୁକ୍ତ କଲେ ।

୧୯୫୪ ଅଗଷ୍ଟ ମାସରେ କଳାବିକାଶ କେନ୍ଦ୍ରର ଦ୍ୱିତୀୟ ବାର୍ଷିକ ଉତ୍ସବ ହେଲା । ସାଧନାଙ୍କ 'ଦଶାବତାର' ନୃତ୍ୟ ବ୍ୟତୀତ ପ୍ରତିମାଙ୍କ କଥକ ନୃତ୍ୟ, ବାଳକୃଷ୍ଣ ଦାଶଙ୍କ ଭଜନ ଏବଂ ଗୋଦାବରୀଶ ମିଶ୍ରଙ୍କ ଲିଖିତ ତଥା ନୟନ କିଶୋର ମହାନ୍ତିଙ୍କ ସଂଯୋଜିତ 'ସାକ୍ଷୀ

ଗୋପାଳ’ ଗୀତିନାଟ୍ୟ ପରିବେଷିତ ହୋଇଥିଲା ।[୧] କୋଡ଼ିଏ ମିନିଟ୍‌ର ଏହି ଗୀତିନାଟ୍ୟରେ ସାଧନା ଓ ମାୟାଧର କୃଷ୍ଣ ଓ ଶ୍ରୀବତ୍ସ ଭୂମିକାରେ ଅଭିନୟ କରିଥିଲେ । ଏହି ଗୀତିନାଟ୍ୟର କାହାଣୀଟି ହେଲା – ‘ନରସିଂହ ନାମକ ଜଣେ ବ୍ରାହ୍ମଣ ଶ୍ରୀବତ୍ସ ନାମକ ଜଣେ ଦରିଦ୍ର ବ୍ରାହ୍ମଣ ସହିତ ତାହାର କନ୍ୟାକୁ ବିବାହ ଦେବା ପାଇଁ ପ୍ରତିଶ୍ରୁତି ଦିଏ । କିନ୍ତୁ ପରେ ନରସିଂହ ନିଜର ପ୍ରତିଶ୍ରୁତି ରକ୍ଷାକରେ ନାହିଁ । ଏହି ଘଟଣାରେ ସାକ୍ଷ୍ୟ ଦେବାପାଇଁ ସ୍ୱୟଂ ଶ୍ରୀକୃଷ୍ଣ ନରସିଂହର ଗୃହ ଅଭିମୁଖେ ବାହାରନ୍ତି । ଆସିବା ବାଟରେ ଶ୍ରୀବତ୍ସ କୃଷ୍ଣ ସତରେ ଆସୁଛନ୍ତି କି ନାହିଁ ପଛକୁ ଚାହିଁ ଦେବାରୁ କୃଷ୍ଣ ପ୍ରସ୍ତର ମୂର୍ତ୍ତି ପାଲଟି ଯାଆନ୍ତି ।’

ଏହି ‘ସାକ୍ଷୀ ଗୋପାଳ’ ଗୀତିନାଟ୍ୟର ଦ୍ୱିତୀୟ ଭାଗ କେଳୁଚରଣ ଓ ପଙ୍କଜଙ୍କ ନିର୍ଦ୍ଦେଶନାରେ ୧୯୫୫ରେ ଦିଲ୍ଲୀରେ ଅନୁଷ୍ଠିତ ଶିଳ୍ପ ମେଳାରେ ମଧ୍ୟ ଅନୁଷ୍ଠିତ ହୋଇଥିଲା ।

‘କୃଷ୍ଣଙ୍କ ପ୍ରସ୍ତର ମୂର୍ତ୍ତି ସ୍ଥାପନ କରିବାପାଇଁ ମନ୍ଦିରଟିଏ ନିର୍ମାଣ କରାଯାଏ । ଦିନେ କୃଷ୍ଣ ମନ୍ଦିରର ପୂଜାରୀ (ପଙ୍କଜଚରଣ ଅଭିନୀତ) ସମ୍ମୁଖରେ ସ୍ୱପ୍ନରେ ଉପସ୍ଥିତ ହୋଇ କହନ୍ତି, ନିକଟରେ ରାଧା ନଥିବାରୁ ସେ ନିଃସଙ୍ଗ ଅନୁଭବ କରୁଛନ୍ତି । ପୂଜାରୀଙ୍କ କନ୍ୟା (ସାଧନା) ସାକ୍ଷୀ ଗୋପାଳ (ପଙ୍କଜଚରଣଙ୍କ ଛାତ୍ରୀ ଅନୁରାଧା ମହାନ୍ତି)ଙ୍କ ଭକ୍ତ । ସେ ପ୍ରତିଦିନ ସାକ୍ଷୀ ଗୋପାଳଙ୍କ ଦର୍ଶନ ପାଇଁ ଆସନ୍ତି । ଦିନେ ସେ ଅସୁସ୍ଥତାବଶତଃ ତାଙ୍କ ଦର୍ଶନ ପାଇଁ ଆସିଲେ ନାହିଁ । ସେହି ସମୟରେ ରାଜାଙ୍କ ଆଦେଶରେ ସାକ୍ଷୀ ଗୋପାଳଙ୍କ ନିକଟରେ ରାଧାଙ୍କ ମୂର୍ତ୍ତିଟିଏ ସ୍ଥାପିତ ହେଲା । ସୁସ୍ଥ ହେବାପରେ ପୂଜାରୀଙ୍କ କନ୍ୟା ମନ୍ଦିରକୁ ଆସି ରାଧାଙ୍କ ମୂର୍ତ୍ତିଟି ଦେଖିଲେ । ମୂର୍ତ୍ତିଟି ଦେଖି ସେ ଈର୍ଷା ଓ ହତାଶାରେ ପ୍ରାଣତ୍ୟାଗ କଲେ । ଏଣୁ ତାଙ୍କର ଆତ୍ମା ସେହି ମୂର୍ତ୍ତି ମଧ୍ୟରେ ପ୍ରବେଶ କଲା ।’

‘ସାକ୍ଷୀ ଗୋପାଳ’ ଗୀତିନାଟ୍ୟର ଦ୍ୱିତୀୟ ଭାଗ ରଚନା କରିଥିଲେ କାଳୀଚରଣ ପଟ୍ଟନାୟକ । ଏହାର ସଂଗୀତ ନିର୍ଦ୍ଦେଶନା ଦେଇଥିଲେ ବାଳକୃଷ୍ଣ ଦାଶ । ଏଥିରେ କେଳୁଚରଣଙ୍କ ରଚିତ ‘ଗଣେଶ ସ୍ତୁତି’, ‘ପଦ ବନ୍ଦେ ଗଣନାଥ’ ଅନ୍ତର୍ଭୁକ୍ତ ହୋଇଥିଲା । ପ୍ରିୟମ୍ବଦା ମହାନ୍ତି ଏଥିରେ ନୃତ୍ୟ ପ୍ରଦର୍ଶନ କରିଥିଲେ । ଏହି ଗୀତିନାଟ୍ୟ ସଂପୂର୍ଣ୍ଣ ଓଡ଼ିଶୀ ଶୈଳୀରେ ପରିକଳ୍ପିତ ହୋଇଥିଲା । ଏହା ପୂର୍ବରୁ ହୁଏତ ଆଉ କୌଣସି ଗୀତିନାଟ୍ୟ ସଂପୂର୍ଣ୍ଣ ଓଡ଼ିଶୀ ରୀତିରେ ପରିବେଷିତ ହୋଇ ନଥିଲା ।

୧୯୫୪ ମେ’ ମାସରେ କଟକରେ ଏକ ସପ୍ତାହ ବ୍ୟାପି ଭଞ୍ଜ ଜୟନ୍ତୀ ପାଳିତ ହେଲା । ଏଥିରେ ପ୍ରାୟ ପ୍ରତିଦିନ ଗୋଟିଏ ଗୀତିନାଟ୍ୟ ପରିବେଷିତ ହେଉଥିଲା ।[୨] ଉପେନ୍ଦ୍ର ଭଞ୍ଜଙ୍କ ସଂଗୀତ ଉପରେ ଆଧାରିତ ଛଅ ଋତୁର ନୃତ୍ୟ ରୂପ ‘ଋତୁ ଚିତ୍ର’ ଏଥି ମଧ୍ୟରେ ଅନ୍ତର୍ଭୁକ୍ତ ଥିଲା । ଏହାର ସଂଯୋଜନା କରିଥିଲେ କେଳୁଚରଣ । ଏଥିରେ ଲକ୍ଷ୍ମୀପ୍ରିୟା

୧. ଦ ଇଷ୍ଟର୍ଣ୍ଣ ଟାଇମ୍‌ସ୍, ୨୧ ଅଗଷ୍ଟ ୧୯୫୪ ।

୨. ପ୍ରଜାତନ୍ତ୍ର, ୨୧ ମେ ୧୯୫୪ ।

'ଲାବଣ୍ୟବତୀ' ଏବଂ ସାଧନା 'ଋତୁବାଳିକା' ଭୂମିକାରେ ଅଭିନୟ କରିଥିଲେ ।

ସୁରେନ୍ ମହାନ୍ତି, କାଳୀଚରଣ ପଟ୍ଟନାୟକ, ନୀଳମାଧବ ବୋଷ୍, ନୟନ କିଶୋର ମହାନ୍ତିଙ୍କ ଭଳି ନାଟ୍ୟକାର ତଥା ବାଳକୃଷ୍ଣ ଦାଶ, ଭୁବନେଶ୍ୱର ମିଶ୍ର, ପି.ଭି. କୃଷ୍ଣମୂର୍ତ୍ତିଙ୍କ ଭଳି ସଂଗୀତ ନିର୍ଦ୍ଦେଶକଙ୍କ ସହଯୋଗରେ ଏହି ସମୟରେ ଅନେକଗୁଡ଼ିଏ ଗୀତିନାଟ୍ୟ ପରିବେଷିତ ହୋଇଥିଲା । ତାହାର ପ୍ରଭାବ ପରବର୍ତ୍ତୀ ସମୟରେ ମଧ୍ୟ ଅନୁଭୂତ ହୋଇଥିଲା ।

୧୯୫୫ରେ ମାୟାଧର ରାଉତ ଭାରତନାଟ୍ୟମ୍ ଓ କଥାକଳି ନୃତ୍ୟ ଶିଖିବାପାଇଁ ଚେନ୍ନାଇ କଳାକ୍ଷେତ୍ରରେ ଯୋଗଦେଲେ । ଏହା ପରେ ପରେ କେଳୁଚରଣ ଓଡ଼ିଆ ବଜାରର ଦୁର୍ଗା ଗୁଡ଼ିଆଣୀଙ୍କ ଘରେ ଆସି ରହିଲେ । ଏହା ବାବୁଲାଲ୍ ଦୋଷୀଙ୍କ ଘରର ଠିକ୍ ସାମ୍ନାରେ । ଏହି ଘରେ କେଳୁଚରଣ ରହିଲେ ପ୍ରାୟ ଚାରିବର୍ଷ । କଳାବିକାଶ କେନ୍ଦ୍ରରେ ପରୀକ୍ଷା ହେବାର ଅଳ୍ପ କେତେମାସ ଆଗରୁ କେତେକ ଛାତ୍ରଛାତ୍ରୀ ବାବୁଲାଲ୍ ଦୋଷୀଙ୍କ ଘରେ ଆସି ରହନ୍ତି । ସେମାନଙ୍କ ମଧ୍ୟରେ ଜଣେ ଥିଲେ ସଂଯୁକ୍ତା । ସେତେବେଳେ ସେ କଳା କ୍ଷେତ୍ରରେ ଭାରତନାଟ୍ୟମ୍ ଶିଖୁଥା'ନ୍ତି । ସାଧନା ଓ ବିଜୟ ପଣ୍ଡା ବ୍ରହ୍ମପୁରରୁ ଆସି ରହନ୍ତି । ସେହି ଘରେ କେଳୁଚରଣ ରେଭେନ୍ସା କଲେଜ୍‌ର ଛାତ୍ର ଧୀରେନ୍ଦ୍ର ନାଥ ପଟ୍ଟନାୟକଙ୍କୁ ଓଡ଼ିଶୀ ନୃତ୍ୟ ଶିଖାଇଥିଲେ । ପରେ ଧୀରେନ୍ଦ୍ରନାଥ ୧୯୫୪ରେ ସେହି କଲେଜ୍‌ର ପ୍ରିୟମ୍ବଦା ମହାନ୍ତିଙ୍କ ସହିତଦିଲ୍ଲୀରେ ଅନୁଷ୍ଠିତ ଅନ୍ତର୍ବିଶ୍ୱବିଦ୍ୟାଳୟ ଯୁବ ଉତ୍ସବରେ ଭାଗ ନେଇଥିଲେ । ପ୍ରିୟମ୍ବଦାଙ୍କ ସହିତ ଥିଲେ ତାଙ୍କର ଗୁରୁ ଦେବ ପ୍ରସାଦ ଦାସ । ଏହା ଓଡ଼ିଶା ବାହାରେ ଓଡ଼ିଶୀ ନୃତ୍ୟର ପ୍ରଥମ ପରିବେଷଣ ନଥିଲା ସତ୍ୟ, କିନ୍ତୁ ଏହାରି ମାଧ୍ୟମରେ ହିଁ ଏହି ଲାଳିତ୍ୟପୂର୍ଣ୍ଣ ନୃତ୍ୟ ସଂପର୍କରେ ସର୍ବଭାରତୀୟ ସ୍ତରରେ ବିଦ୍ୱାନ୍ ଓ ସମାଲୋଚକମାନେ ସଚେତନ ହେଲେ, ଜାତୀୟ ସ୍ତରର ନୃତ୍ୟ ଦୃଶ୍ୟପଟରେ ଓଡ଼ିଶୀର ଆବିର୍ଭାବ ହେଲା ଓ ଏହାର ଏକ ସ୍ଥିତି ଉପଲବ୍ଧି ହେଲା ।

ଏହି ସମୟରେ ଓଡ଼ିଶାରେ ଓଡ଼ିଶୀ ନୃତ୍ୟ କ୍ଷେତ୍ରରେ ବିଭିନ୍ନ କାର୍ଯ୍ୟକ୍ରମ ଅନୁଷ୍ଠିତ ହେଉଥାଏ । ୧୯୫୫ ଗ୍ରୀଷ୍ମ ଋତୁରେ କେଳୁଚରଣ ବାଙ୍କା ବଜାରର କଳାବିକାଶ କେନ୍ଦ୍ର ଓ ବାବୁଲାଲ୍ ଦୋଷୀଙ୍କ ଘରେ ରିହର୍ସାଲ୍ କରୁଥା'ନ୍ତି । 'ବିରହୀ ଚନ୍ଦ୍ରଭାନୁ'ର ରିହର୍ସାଲ୍ ଚାଲିଥାଏ । ଏଥିରେ ସାଧନା ଲାବଣ୍ୟବତୀ ଏବଂ ସଂଯୁକ୍ତା ଚନ୍ଦ୍ରଭାନୁ ଭୂମିକାରେ ଅଭିନୟ କରୁଥାନ୍ତି । ରିହର୍ସାଲ୍ ସଂଧ୍ୟାରେ ବହୁ ସମୟ ପର୍ଯ୍ୟନ୍ତ ଚାଲେ । ସେତେବେଳେ ଝିଅ ଦୁହେଁ ବାବୁଲାଲ୍‌ଙ୍କ ଘରେ ରହୁଥା'ନ୍ତି । କେଳୁଚରଣ ଝିଅ ଦୁହିଁଙ୍କୁ ବାବୁଲାଲ୍‌ଙ୍କ ଘରେ ଛାଡ଼ି ଭଞ୍ଜଙ୍କ କବିତା ସଂପର୍କରେ କାଳୀଚରଣ ପଟ୍ଟନାୟକଙ୍କ ସହିତ ବିଶଦ ଆଲୋଚନା କରନ୍ତି ('ବିରହୀ ଚନ୍ଦ୍ରଭାନୁ'ର ବିଷୟବସ୍ତୁ ଭଞ୍ଜଙ୍କ 'ଲାବଣ୍ୟବତୀ' କାବ୍ୟ ଉପରେ ଆଧାରିତ ହୋଇଥିଲା) ।

କେଳୁଚରଣ ମହାବିଦ୍ୟାଳୟ, ବିଶ୍ୱବିଦ୍ୟାଳୟରେ ଉଚ୍ଚଶିକ୍ଷା ଲାଭ କରିନଥିଲେ ।

ତେଣୁ ସେ ବିଦ୍ୱାନ୍‌ମାନଙ୍କ ସହିତ ବିଭିନ୍ନ ସଂଗୀତର ଆଲୋଚନା କରି ତାହାର ମୂଳ ଅର୍ଥ ବୁଝି ତାହାକୁ ନୃତ୍ୟରେ ରୂପାୟିତ କରୁଥିଲେ । ନୀଳମାଧବ ବୋଷ୍ କହନ୍ତି, କେଳୁଚରଣ ତାଙ୍କୁ ରିହର୍ସାଲ୍ ରୁମ୍‌ରେ ବସାଇ କୋରିଓଗ୍ରାଫି (ମଞ୍ଚସଜ୍ଜା) ଏବଂ ବିଭିନ୍ନ ଶବ୍ଦର ଅର୍ଥ ବୁଝୁଥିଲେ । ଏହି ବିନୟ ଭାବ କେଳୁଚରଣଙ୍କ ଜୀବନର ଏକ ବିଶେଷତ୍ୱ ଥିଲା । ନୂଆ ନୂଆ କଥା ଶିଖିବା ତଥା ବିଭିନ୍ନ ଉପାୟରେ ଜ୍ଞାନ ଆହରଣ କରିବାପାଇଁ ସେ ସର୍ବଦା ଆଗ୍ରହୀ ଥିଲେ । ତାଙ୍କ ଭାଷାରେ –

'ମୁଁ ଯାହା ଜାଣେ ବା ଯାହା ପ୍ରକାଶ କରେ, ତାହା ସମୁଦ୍ରର ଗୋଟିଏ ବୁନ୍ଦା ପାଣି । ମୁଁ ତ ବିଶେଷ ପାଠ ପଢ଼ିନାହିଁ । ତେଣୁ ମୁଁ କେବଳ ଅଙ୍ଗ ଭାଷା (body language) ବ୍ୟବହାର କରିବା ଜାଣେ । ମୋର କଳାର ଆରମ୍ଭ ଯେଉଁଠାରୁ, ସେହି ମୂଳ ସହିତ ସଂପର୍କ ରକ୍ଷା କରିବା ନିହାତି ଜରୁରୀ । ମୂଳ କଟିଗଲେ ଗଛଟି ମରିଯିବ । ସବୁ ସମୟରେ ବାହାର ଦୁନିଆରୁ ନୂଆ ନୂଆ କଥା ଶିଖିବା ଆବଶ୍ୟକ । ଏପରି ଅନୁଭୂତି ଜଣକୁ ବିଶାଳ ପୃଥିବୀ ସହିତ ପରିଚିତ କରାଏ । ମୁଁ ଘରକୁ ଫେରିଲେ ମା' ସବୁବେଳେ ପଚାରେ, 'ତୁ କେଉଁଠିକି ଯାଇଥିଲୁ ? ସେ ସ୍ଥାନ ଏଠାରୁ କେତେ ଦୂର ? ପୃଥିବୀ କ'ଣ ସେଇଠାରେ ଶେଷ ନା ତା' ବାହାରେ ଆଉ କିଛି ଅଛି ?' ମୁଁ ଉତ୍ତର ଦିଏ, 'ପୃଥିବୀର ଶେଷ ନାହିଁ । କାରଣ, ଏହାର ଆରମ୍ଭ ବି ନାହିଁ । ଏହା ଗୋଲାକାର । ଏହାର ଆରମ୍ଭ ଓ ଶେଷ ତୋ'ରି ଠାରେ ।'

ଏହି ବହିଟି ଲେଖିବା ସମୟରେ ମୁଁ ଯେଉଁମାନଙ୍କୁ ଭେଟିଥିଲି, ସେମାନେ କେଳୁଚରଣଙ୍କ ସଂପର୍କରେ ଏହିପରି କହିଥିଲେ :

'ଭଦ୍ର, ମେଳାପୀ, ଶକ୍ତିଶାଳୀ ସ୍ରଷ୍ଟା' (ନୀଳମାଧବ ବୋଷ୍)

'ସବୁ ପରିସ୍ଥିତିରେ ନିଜକୁ ଖାପଖୁଆଇ ଚଳି ପାରନ୍ତି, ଲହୁଣୀ ପରି ନରମ ସ୍ୱଭାବ' (ଆନନ୍ଦ ଚରଣ ଦାସ)

'ବିନୟୀ ଓ ନମ୍ର' (ସାମୁଏଲ୍ ସାହୁ, ବାବି)

'ସ୍ନେହୀ, ମଧୁର ସ୍ୱଭାବର' (ସାଧନା ବୋଷ୍)

'ଭଦ୍ର, ସ୍ୱାଭିମାନୀ, କଠୋର ପରିଶ୍ରମୀ' (ପ୍ରିୟମ୍ବଦା ମହାନ୍ତି)

'ସବୁବେଳେ ନୂଆ ନୂଆ କିଛି ଶିଖିବାରେ ଆଗ୍ରହୀ । ନୂଆ ଗୀତିନାଟ୍ୟଟିଏ ସଂରଚନା ସମୟରେ ସଂସ୍କୃତ ଶ୍ଳୋକମାନଙ୍କର ଅର୍ଥ ପଚାରି ବୁଝୁଥା'ନ୍ତି । କୌଣସିଥିରେ ସନ୍ତୁଷ୍ଟ ନହୋଇ ଜ୍ଞାନ ଆହରଣରେ ଆଗ୍ରହୀ' (ଶାନ୍ତି ଦେବୀ – ଶୈଳବାଳା ମହିଳା କଲେଜ୍‌ରେ କେଳୁଚରଣଙ୍କ ସହିତ ଅନେକ ଗୀତିନାଟ୍ୟ ରଚନାରେ ସହଯୋଗ କରିଥିଲେ ।)

'ବେଶ୍ ଆକର୍ଷଣୀୟ ବ୍ୟକ୍ତିତ୍ୱ' (ସୁତପା ଦତ୍ତଗୁପ୍ତ)

'ଧୈର୍ଯ୍ୟବାନ୍, ସ୍ନେହୀ, ଛାତ୍ରବତ୍ସଳ । ଜୀବନର ପୁଙ୍ଖାନୁପୁଙ୍ଖ ଅନୁଧ୍ୟାନ କରିବାରେ ସିଦ୍ଧହସ୍ତ' (ରାଣୀ କର୍ଣ୍ଣା)

ବୃତ୍ତିରେ ଇଞ୍ଜିନିୟର ହେଲେହେଁ ଗୋବିନ୍ଦ ତେଜ୍ ପରେ ଗୀତିନାଟ୍ୟ ରଚନା କରିବା ଓ ନିର୍ଦ୍ଦେଶନା ଦେବାପାଇଁ ନ୍ୟାସନାଲ୍ ମ୍ୟୁଜିକ୍ ଆସୋସିଏସନ୍ ସହିତ ସଂପୃକ୍ତ ହୋଇଥିଲେ । ସେ କେଳୁଚରଣଙ୍କ ସହିତ କାର୍ଯ୍ୟ କରିବାକୁ ପସନ୍ଦ କରୁଥିଲେ । କେଳୁଚରଣଙ୍କର ଗୀତିନାଟ୍ୟର ବିଷୟବସ୍ତୁ ଓ ଭାବ ଉପଲବ୍ଧି କରିବାର ଅସାଧାରଣ ଶକ୍ତି ଓ ସୌନ୍ଦର୍ଯ୍ୟବୋଧ ଥିଲା ଏହାର କାରଣ ।

୧୯୫୪-୬୪ ମଧ୍ୟରେ ଗୋବିନ୍ଦ ତେଜ୍ ଓ କେଳୁଚରଣଙ୍କ ସହଯୋଗରେ ବହୁ ଗୀତିନାଟ୍ୟ ପରିବେଷିତ ହୋଇଥିଲା । କେତେକ ଗୀତିନାଟ୍ୟ ସେ ସମୟରେ ବିଶେଷ ଆଦୃତ ହୋଇଥିଲା । କଳାବିକାଶ କେନ୍ଦ୍ର ପକ୍ଷରୁ କୁମାର ଉତ୍ସବରେ ଆୟୋଜିତ ବାର୍ଷିକ ଅନୁଷ୍ଠାନମାନଙ୍କରେ ପରିବେଷିତ ଗୀତିନାଟ୍ୟମାନଙ୍କ ମଧ୍ୟରୁ କେତୋଟି ଥିଲା, ଉର୍ବଶୀ (୧୯୫୪), ଅନାଦି ସଂଗୀତ (୧୯୫୫), ଜୀବନର ଛନ୍ଦ (୧୯୫୭), କୃଷ୍ଣ ଗାଥା (୧୯୫୮), ପଞ୍ଚ ପୂର୍ଣ୍ଣମୀ (୧୯୬୦), ଶ୍ରୀ ଜଗନ୍ନାଥ(୧୯୬୧), ଅମର ଭାରତୀ (୧୯୬୨), ଆମ୍ରପାଲ୍ଲୀ (୧୯୬୪), ଭାରତ ଯୁଦ୍ଧ (ମହାଭାରତ ଉପରେ ଆଧାରିତ - ୧୯୬୫) ।

ସେତେବେଳେ ନାଟ୍ୟମଞ୍ଚରେ ବିଭିନ୍ନ ପରୀକ୍ଷା ନିରୀକ୍ଷା ହୋଇଥିଲା । ଗୀତିନାଟ୍ୟମାନଙ୍କରେ ପ୍ରଥମଥର ପାଇଁ 'ସାଇକ୍ଲୋରାମା' ଏବଂ 'ଟୁ-ଟିୟର୍ ଷ୍ଟେଜ୍' ପ୍ରବର୍ତ୍ତିତ ହୋଇଥିଲା । ପରେ ଏହା ଅନ୍ୟ ନିର୍ଦ୍ଦେଶକମାନେ ଅନୁସରଣ କରିଥିଲେ ।



ମାଡ୍ରାସ୍‌ରେ ୧୯୫୮ରେ ଅନୁଷ୍ଠିତ ସର୍ବଭାରତୀୟ ନୃତ୍ୟ ଆଲୋଚନାଚକ୍ରରେ
କାଳୀଚରଣ ପଟ୍ଟନାୟକ, ସଂଯୁକ୍ତା ମିଶ୍ର, ବାଳକୃଷ୍ଣ ଦାଶ ଓ କେଳୁଚରଣ

ସେତେବେଳେ ଥିଲେ ତିନିଜଣ ରଥୀ – ସଂଗୀତରେ ଭୁବନେଶ୍ୱର ମିଶ୍ର, ଗୀତିନାଟ୍ୟ ପ୍ରସ୍ତୁତ କରିବାରେ ଗୋବିନ୍ଦ ତେଜ୍ ଓ ନୃତ୍ୟରେ କେଳୁଚରଣ । ବିଳମ୍ବିତ ରାତ୍ରିଯାଏଁ ବସି ପରସ୍ପର ମଧ୍ୟରେ ସମନ୍ୱୟ ରକ୍ଷାକରି ଗୀତିନାଟ୍ୟର ରିହର୍ସାଲ୍ ସଂପର୍କରେ ସେମାନେ ଆଲୋଚନା କରୁଥିଲେ । ବିଭିନ୍ନ ସମୟରେ ପି.ଭି. କୃଷ୍ଣମୂର୍ତ୍ତି ସେମାନଙ୍କୁ ଦିଗ୍‌ଦର୍ଶନ ଦେଉଥିଲେ, ଚୌରସିଆ ଏବଂ ବାଳକୃଷ୍ଣ ଦାଶ ସଂଗୀତ ନିର୍ଦ୍ଦେଶନା ଦେଉଥିଲେ । ବିଭିନ୍ନ ଅନୁଷ୍ଠାନରୁ ନୃତ୍ୟଶିଳ୍ପୀମାନଙ୍କୁ ନିମନ୍ତ୍ରଣ କରାଯାଉଥିଲା, ବିଭିନ୍ନ ବ୍ୟକ୍ତି ଓ ଅନୁଷ୍ଠାନମାନେ ଆର୍ଥିକ ସାହାଯ୍ୟ ଯୋଗାଇ ଦେଉଥିଲେ । ମୋଟାମୋଟି ସଦିଚ୍ଛା ଓ ସହଯୋଗର ବାତାବରଣ ଥିଲା, ପ୍ରତ୍ୟେକ ଶିଳ୍ପୀ ସେମାନଙ୍କ କଳାର ବିକାଶ ପାଇଁ ସୁଯୋଗ ପାଉଥିଲେ ।

ପଞ୍ଚମ ଦଶକର ମଧ୍ୟଭାଗରେ କଳାବିକାଶ କେନ୍ଦ୍ର ଦ୍ୱାରା ପ୍ରସ୍ତୁତ ଗୀତିନାଟ୍ୟ ମଧ୍ୟରୁ କେତୋଟି ହେଲା– କିଶୋରୀ କାହ୍ନୁ (୧୯୫୩), ଅମୃତ ମନ୍ଥନ (୧୯୫୫), ପଲ୍ଲୀ ଗାଥା ଓ ଚିତ୍ରାଙ୍ଗଦା (୧୯୫୬), ପଞ୍ଚ ପୁଷ୍ପ, ନାଦ ନୂପୁର, ମଦନ ଭସ୍ମ (୧୯୫୭), ପୂଜାରିଣୀ (୧୯୫୮), ମେଘଦୂତ ଓ କୁମାର ସମ୍ଭବ (୧୯୫୯) ।

୧୯୫୫–୫୭ ମଧ୍ୟରେ କେଳୁଚରଣ ଭୁବନେଶ୍ୱର କଳା କେନ୍ଦ୍ର ସହିତ ସଂପୃକ୍ତ ଥିଲେ । ସେତେବେଳେ ସେ ଛଅଟି ଗୀତିନାଟ୍ୟ ସଂଯୋଜନା କରିଥିଲେ । ଗୀତିନାଟ୍ୟଗୁଡ଼ିକ ଲେଖିଥିଲେ ଅନ୍ନଦା ଚରଣ ଦାସ । ଏଥିରେ ସଂଗୀତ ସଂଯୋଜନା କରିଥିଲେ ବାଳକୃଷ୍ଣ ଦାଶ । ବାଳକୃଷ୍ଣ ଦାଶ ମଧ୍ୟ କଳାବିକାଶ କେନ୍ଦ୍ର ସହିତ ସଂପୃକ୍ତ ଥିଲେ । ସେହି ଗୀତିନାଟ୍ୟଗୁଡ଼ିକ ମଧ୍ୟରେ ସଂପୂର୍ଣ୍ଣ ଓଡ଼ିଶୀ ରୀତିରେ ପରିବେଷିତ ରାସଲୀଳା ସବୁଠାରୁ ଅଧିକ ଥର ଅଭିନୀତ ହୋଇଥିଲା । ବୁଦ୍ଧଙ୍କ ଆଦର୍ଶ ଉପରେ ପ୍ରତିଷ୍ଠିତ ଗୀତିନାଟ୍ୟ 'ଜୀବନ ଦର୍ଶନ' କଳାତ୍ମକ ଦୃଷ୍ଟିରୁ ବୋଧହୁଏ ଥିଲା ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ।[୧]

ତରୁଣ ନୃତ୍ୟଶିଳ୍ପୀମାନେ ସେମାନଙ୍କ ନୃତ୍ୟର ବିଷୟବସ୍ତୁ ଅନେକ ସମୟରେ ସଂପୂର୍ଣ୍ଣ ବୁଝିପାରୁ ନଥଲେ । କେଳୁଚରଣ ରାଧା କୃଷ୍ଣ ପ୍ରେମଲୀଳା ପ୍ରସଙ୍ଗ ସେମାନଙ୍କୁ ଶିଶୁମାନଙ୍କ ଖେଳପରି ସହଜ ଭାବରେ ବୁଝାଇ ଦେଉଥିଲେ । ଅଭିନୟ ଚାଲିଥିବା ସମୟରେ ବିରତି ହେଲେ କେବେ କେବେ ଛୋଟ ପିଲାମାନେ ନିଦରେ ଶୋଇ ପଡୁଥିଲେ । କେଳୁଚରଣଙ୍କୁ ସେମାନଙ୍କୁ ନିଦରୁ ଉଠାଇବାକୁ ଦେଉଥିଲା । କେହି କେହି ପିଲା ଭାବୁଥିଲେ, ସ୍କୁଲ୍‌କୁ ନଯାଇ ନାଚ ଶିଖିବାରେ ବେଶୀ ମଜା ଅଛି । କେଳୁଚରଣ ନୃତ୍ୟଶିଳ୍ପୀମାନଙ୍କୁ ନିଜ ସନ୍ତାନ ବୋଲି ଭାବୁଥିଲେ । ସେମାନଙ୍କୁ ସଜାଇ ଦେଉଥିଲେ; ନୃତ୍ୟ ଶିକ୍ଷା ପରେ ସେମାନଙ୍କୁ ଘରେ ଛାଡ଼ି ଦେଇ ଆସୁଥିଲେ ।

---

୧. ଏହି ସମୟରେ ସଂରଚିତ ଅନ୍ୟ ନୃତ୍ୟନାଟିକାଗୁଡ଼ିକ ହେଲା, ଯମୁନା ପୁଳିନେ, ଭସ୍ମାସୁର ବଧ, ଶିଳ୍ପୀର ସ୍ୱପ୍ନ, ଧୀବର ଓ ନାଗକନ୍ୟା ।

ଛୋଟ ଛୋଟ ଝିଅମାନଙ୍କୁ 'ଗୀତ ଗୋବିନ୍ଦ' ବା 'କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ'ର ପ୍ରେମ ରସାତ୍ମକ ସଂଗୀତ ଶିଖାଯାଉଥିବାରୁ ଏଥିପାଇଁ କେଳୁଚରଣଙ୍କୁ ସମାଲୋଚନା ମଧ ସହ୍ୟ କରିବାକୁ ପଡୁଥିଲା । କେଳୁଚରଣ ଯୁକ୍ତି କରୁଥିଲେ, ଏଭଳି ସଂଗୀତରେ ଭକ୍ତିଭାବ ଏତେ ଅଧିକ ଯେ ଏହା କେବେ ଅଶ୍ଳୀଳ ହୋଇ ନପାରେ ।

୧୯୫୮ରେ 'କୃଷ୍ଣ ଗାଥା' ନୃତ୍ୟ ନାଟିକାଟି ପରିବେଷଣ କରାଯିବାର ଯୋଜନା ହେଲା । କୃଷ୍ଣ ଭୂମିକାରେ ଅଭିନୟ କରିବା ପାଇଁ ଜଣେ ନୃତ୍ୟ ଶିଳ୍ପୀ ଖୋଜା ପଡ଼ିଲେ (ରାଧା ଭୂମିକା ପାଇଁ ସାଧନାଙ୍କୁ ମନୋନୀତ କରାଯାଇଥିଲା) । କୃଷ୍ଣ ଭୂମିକା ପାଇଁ କୁଙ୍କୁମ ଦାସ ମନୋନୀତ ହେଲେ । ସେତେବେଳେ ସେ ଦୁଷ୍ଟାମି କରୁଥିବା ନିହାତି ଛୋଟ ପିଲା । ଆଠ ବର୍ଷ ବୟସରେ ସେ କଳାବିକାଶ କେନ୍ଦ୍ରର ରାଣୀହାଟ ଶାଖାରେ ନାମ ଲେଖାଇଥିଲେ । ତାଙ୍କ ବଡ଼ ଭଉଣୀ ମୀରା କେଳୁଚରଣଙ୍କ ପାଖରେ ପ୍ରାୟ ଦୁଇ ବର୍ଷ ନୃତ୍ୟ ଶିକ୍ଷା କରିସାରିଥା'ନ୍ତି । ପ୍ରଥମେ କୁଙ୍କୁମ ମୋଟେ ନାଚ ଶିଖିଲେ ନାହିଁ । କେଳୁଚରଣ ତାଙ୍କୁ ଖୁସି କରିବା ପାଇଁ ମଲ୍ଲୀ ଫୁଲ ଆଣି ଦେଲେ, ଛୋଟ ସୈନ୍ୟପରି ମାର୍ଚ୍ଚିଙ୍ଗ୍ କରିବାକୁ କହିଲେ । ନାଚ ଶିଖିବା ପାଇଁ ସ୍ଥାନର ଅଭାବ ହେବାରୁ ଦୁଇ ବର୍ଷ ମଧରେ ରାଣୀହାଟ ଶାଖା ବନ୍ଦ ହୋଇଗଲା । କୁଙ୍କୁମ ବାଙ୍କାବଜାର ଶାଖାରେ ନାଚ ଶିଖିଲେ । ଏଠାରେ ଛାତ୍ରୀମାନଙ୍କର ରାମଗୋପାଳଙ୍କଠାରୁ କଥକ ନୃତ୍ୟ ଶିଖିବାର ସୁଯୋଗ ମଧ ଥିଲା । ଓସ୍ତାଦ୍ ରାମଗୋପାଳ ସପ୍ତାହରେ ଦୁଇଦିନ କୋଲ୍‌କାତାରୁ କଟକ ଆସୁଥିଲେ ।

୨୨ ଜୁନ ୧୯୫୪ ପ୍ରଜାତନ୍ତ୍ର ସମ୍ବାଦପତ୍ରରେ ଗୋଟିଏ ବିଜ୍ଞାପନ ବାହାରିଲା । ଓଡ଼ିଶା ବାହାରେ ସଂଗୀତ ଓ ନୃତ୍ୟ ଶିଖିବାକୁ ଛଅଗୋଟି ବୃତ୍ତି ପାଇଁ ଦରଖାସ୍ତ ଆହ୍ୱାନ କରାଗଲା । ସଂଯୁକ୍ତା ମିଶ୍ର ଓ ମାୟାଧର ରାଉତ ଏଥିପାଇଁ ଦରଖାସ୍ତ ଦେଲେ ଓ ମନୋନୀତ ହେଲେ । ସେମାନେ ଚେନ୍ନାଇର ରୁକ୍ମିଣୀ ଦେବୀଙ୍କ କଳାକ୍ଷେତ୍ରରେ ଭାରତନାଟ୍ୟମ୍ ଓ କଥାକଳି ଶିକ୍ଷା କରିବାର ସ୍ଥିର ହେଲା । ଗ୍ରୀଷ୍ମ ଛୁଟିରେ ସେମାନେ ଓଡ଼ିଶା ଫେରୁଥିଲେ । ସଂଯୁକ୍ତା କଳାବିକାଶ କେନ୍ଦ୍ରରେ ଓଡ଼ିଶୀରେ ପରୀକ୍ଷା ଦେଉଥିଲେ; ମାୟାଧର ନୃତ୍ୟ ଶିଖାଉଥିଲେ । ଏହି ଗ୍ରୀଷ୍ମ ଛୁଟିରେ ସେମାନେ ମୁଦ୍ରା ଏବଂ ବିନିଯୋଗ (ହସ୍ତଚାଳନାଦ୍ୱାରା ଭାବ ପ୍ରକାଶ) ସଂପର୍କରେ ବିଧିବଦ୍ଧ ଆଲୋଚନା କରିଥିଲେ ।

'କଳାକ୍ଷେତ୍ର'ରେ ସଂଯୁକ୍ତା ଓ ମାୟାଧରଙ୍କ ଅନୁଭୂତି ଓଡ଼ିଶୀ ନୃତ୍ୟର ବିକାଶ ତଥା କଳାବିକାଶ କେନ୍ଦ୍ରର ଉନ୍ନତିରେ ସହାୟକ ହୋଇଥିଲା । ନୃତ୍ୟ ପ୍ରଶିକ୍ଷଣ ଓ ଦିଗ୍‌ଦର୍ଶନ ପ୍ରଦାନ କରିବାପାଇଁ କଳାବିକାଶ କେନ୍ଦ୍ର ଅବଶ୍ୟ ମୂଳରୁ ଉଦ୍ୟମ କରି ଆସୁଥିଲା । କିନ୍ତୁ ଓଡ଼ିଶୀ ନୃତ୍ୟ ଶୈଳୀର ପଦ୍ଧତି ତଥାପି ସ୍ଥିରୀକୃତ ହୋଇ ନଥିଲା । ଏଥିପାଇଁ ଗୁରୁମାନେ ଅନ୍ୟାନ୍ୟ ନୃତ୍ୟଶୈଳୀରୁ ପ୍ରେରଣା ଲାଭକରି ସ୍ୱକୀୟ ନୃତ୍ୟ ଶୈଳୀ ସୃଷ୍ଟି କରିବା ପାଇଁ ଚେଷ୍ଟିତ ଥିଲେ । ତେବେ ବିଭିନ୍ନ ଗୁରୁ ସେମାନଙ୍କ ନିଜ ନିଜ ବିଚାର ଓ ଦୃଷ୍ଟିଭଙ୍ଗୀ ଉପରେ

ନିର୍ଭର କରି ଦିଗ୍‌ଦର୍ଶନ ଦେଉଥିଲେ । ପୋଷାକ, ଉପସ୍ଥାପନା ଶୈଳୀରେ ସାମଞ୍ଜସ୍ୟର ଅଭାବ ଘଟୁଥିଲା । ପ୍ରତି ଗୁରୁ ନିଜ ନିଜ ରୁଚି ଅନୁସାରେ କାର୍ଯ୍ୟ କରୁଥିଲେ ।

କାଳୀଚରଣ ପଟ୍ଟନାୟକଙ୍କ ପରି ବିଦ୍ୱାନ୍‌ମାନେ ଓଡ଼ିଶୀ ନୃତ୍ୟଶୈଳୀରେ ନିର୍ଦ୍ଦିଷ୍ଟ ପଦ୍ଧତି ସ୍ଥିର କରିବା ପାଇଁ ନାଟ୍ୟଶାସ୍ତ୍ରର ସୂତ୍ର ଅନୁସରଣ କରିବାପାଇଁ ଚାହୁଁଥିଲେ । ଦକ୍ଷିଣ ଭାରତୀୟ ନୃତ୍ୟ ଶୈଳୀକୁ ସେମାନେ ଗ୍ରହଣ ନକରି ଓଡ଼ିଶାରେ ଉପଲବ୍‌ଧ ପୋଥିମାନଙ୍କ ଉପରେ ନିର୍ଭର କରିବାକୁ ଚାହିଁଲେ । କିନ୍ତୁ ସେପରି ପୋଥି ନୃତ୍ୟଶିକ୍ଷୀମାନେ ସେଯାଏଁ ଦେଖି ନଥିଲେ କିମ୍ବା ସେପରି କୌଣସି ପୋଥି ପ୍ରକାଶିତ ହୋଇ ନଥିଲା (ନନ୍ଦୀକେଶ୍ୱରଙ୍କ 'ଅଭିନୟ ଦର୍ପଣ'ର ଓଡ଼ିଆ ଅନୁବାଦ ଧୀରେନ୍ଦ୍ର ନାଥ ପଟ୍ଟନାୟକଙ୍କ ଦ୍ୱାରା ସଂପାଦିତ ହୋଇ ୧୯୬୦ରେ ପ୍ରକାଶିତ ହେଲା) ।

ଓଡ଼ିଶୀ ନୃତ୍ୟର ଯଥାର୍ଥ ବିକାଶ ପାଇଁ ବିଦ୍ୱାନ୍ ଓ ନୃତ୍ୟଶିକ୍ଷୀମାନଙ୍କ ମଧ୍ୟରେ ସହଯୋଗର ଯଥେଷ୍ଟ ଆବଶ୍ୟକତା ଥିଲା । ୧୯୫୩ଠାରୁ ତେଲେଙ୍ଗା ବଜାରର ରଘୁନାଥ ମନ୍ଦିରରେ ନୃତ୍ୟଗୁରୁମାନେ ଏକାଠି ହୋଇ ଓଡ଼ିଶୀ ନୃତ୍ୟ ଏକ ନିର୍ଦ୍ଦିଷ୍ଟ ପଦ୍ଧତିରେ ପକାଇବା ପାଇଁ ଆଲୋଚନା ଓ ମତବିନିମୟ କରି ଆସୁଥିଲେ । ଏହି ଆଲୋଚନାର ପ୍ରଥମ ପର୍ଯ୍ୟାୟରେ ଦେବପ୍ରସାଦ, ପଙ୍କଜଚରଣ, ମାୟାଧର, କେଳୁଚରଣ, ବୁଢ଼ା ଚୌଧୁରୀ, ରଘୁନାଥ ଦତ୍ତ ଏବଂ ଦୟାନିଧି ପ୍ରମୁଖ ଅଂଶଗ୍ରହଣ କରୁଥିଲେ । ଏମାନଙ୍କ ମିଳିତ ଆଲୋଚନାକୁ 'ଜୟନ୍ତିକା' ନାମରେ ନାମିତ କରାଯାଇଥିଲା । କଳାବିକାଶ କେନ୍ଦ୍ର ସହିତ ଏହାର କୌଣସି ସଂପର୍କ ନ ଥିଲା ।

ପ୍ରଥମେ ପ୍ରଥମେ ଏହି ଆଲୋଚନା ବା ମତ ବିନିମୟ ଅନୌପଚାରିକ ଭାବରେ ହେଉଥିଲା । ପରେ ଏହାର ଗୁରୁତ୍ୱ ବୃଦ୍ଧି ଲାଭ କଲା । ଧୀରେନ୍ଦ୍ର ନାଥ ପଟ୍ଟନାୟକ ଓଡ଼ିଶୀ ନୃତ୍ୟରେ ଗବେଷଣା ପାଇଁ ଦିଲ୍ଲୀର ସଂଗୀତ ନାଟକ ଏକାଡେମୀ ବୃତ୍ତି ଲାଭ କରିଥିଲେ । ଗବେଷଣା ସହିତ ସେ ମଧ୍ୟ ଏହି ଆଲୋଚନା ଓ ମତ ବିନିମୟରେ ସଂପୃକ୍ତ ହେଲେ । ପରେ ସେମାନେ ଲୋକନାଥ ମିଶ୍ରଙ୍କ ଡ୍ରଇଁ ରୁମ୍‌ରେ ଏକାଠି ହୋଇ ଆଲୋଚନା ଜାରି ରଖିଲେ । ସମସ୍ତ ଗୁରୁ ନୃତ୍ୟ ଆରମ୍ଭରେ ଗଣେଶଙ୍କ ପାଇଁ 'ମଙ୍ଗଳାଚରଣ' ପରିବେଷଣ କରିବାପାଇଁ ଏକମତ ହୋଇଥିଲେ । କେଳୁଚରଣ ରଘୁରାଜପୁରର ବଳଭଦ୍ର ସାହୁ ଏବଂ ଅଗାଧୁ ମହାରଣାଙ୍କଠାରୁ ଶିଖିଥିବା ମର୍ଦ୍ଦଳ ବଜାଇବାର ରୀତି (ଉକୁଟ)କୁ ଗୁରୁମାନେ ଗ୍ରହଣ କରିଥିଲେ । ଅନ୍ୟ ବୋଲ୍‌ସବୁ ଆବଶ୍ୟକତା ଅନୁଯାୟୀ ସ୍ଥିର କରାଯାଉଥିଲା ।

ଦୟାନିଧି ଦାସ 'ମଙ୍ଗଳାଚରଣ' ପରିବେଷଣ ରୀତି ସ୍ଥିର କରିଥିଲେ । ନୃତ୍ୟଶିକ୍ଷୀ ପାତକ ମୁଦ୍ରା ପ୍ରଦର୍ଶନ କରି ଚଉକ ଭଙ୍ଗୀରେ ମଙ୍ଗଳାଚରଣ ପରିବେଷଣ କରିବା ପାଇଁ ଧୀରେନ୍ଦ୍ର ନାଥ ପଟ୍ଟନାୟକ ପ୍ରସ୍ତାବ ଦେଇଥିଲେ । ଏ ସଂପର୍କରେ ସେ କହନ୍ତି, 'ଗୋଟିପୁଅ ନୃତ୍ୟ ବିଷୟରେ ତଥ୍ୟ ସଂଗ୍ରହ ପାଇଁ ୧୯୫୯ ମସିହାରେ ମୁଁ ପୁରୀ ଜିଲ୍ଲାର

ଡିମିରିସେଣା ଗ୍ରାମରେ ରହୁଥାଏ । ମୁଁ ଜାଣିବାକୁ ପାଇଲି, ପାଖ ଗାଆଁର ମୁଳିଆ ନାମରେ ପିଲାଟିଏ ଖୁବ୍ ଭଲ ନାଚିପାରୁଛି । ମୁଁ ରହୁଥିବା ଜମିଦାରଙ୍କ ଘରକୁ ସେ ପିଲାଟିକୁ ଆଣିଲି । ମୁଁ ଲକ୍ଷ୍ୟ କଲି, ସେ ନାଚ ଆରମ୍ଭରେ ଉକୁଟରେ 'କଡ଼ତାକ ଧି, ଦଲ୍ଲା ଅଙ୍ଗ ତା ତା' ଉକୁଟରୁ ନାଚ ଆରମ୍ଭ କରୁଛି ଏବଂ ଦୁଇ ହସ୍ତ ଅର୍ଦ୍ଧ ପାତକ ରୀତିରେ ପ୍ରଦର୍ଶନ କରୁଛି । 'ଜୟନ୍ତିକା'ରେ ଆଲୋଚନା ସମୟରେ ମୁଁ କହିଲି, ଅର୍ଦ୍ଧ ପାତକ ରୀତି ଅନୁସରଣ ନକରି ଦୁଇ ହସ୍ତକୁ ପାତକ ରୀତିରେ ପ୍ରଦର୍ଶନ କରାଯାଉ । ଏହା 'ଅଭିନୟ ଦର୍ପଣ' ଅନୁଯାୟୀ ନାଟ୍ୟାରମ୍ଭ ହେବ ତଥା ଜଗନ୍ନାଥଙ୍କ ଦଣ୍ଡାୟମାନ ମୂର୍ତ୍ତି ଅନୁରୂପ ହେବ । ଏହି ପ୍ରସଙ୍ଗରେ କେଳୁଚରଣ କହିଲେ, ନୃତ୍ୟ ଆରମ୍ଭରେ କଡ଼ତାକ ଧି ଖାପ୍‌ଛଡ଼ା ମନେହେବ । ତା' ପରିବର୍ତ୍ତେ ସେ ରଘୁରାଜପୁରରୁ ଶିଖିଥିବା ତାରି କିଟ ଧି ବ୍ୟବହାର କରାଇଲେ ।'

ଓଡ଼ିଶୀ ନୃତ୍ୟ ଏକ ବୃକ୍ଷ ଆକାରରେ କଳ୍ପିତ ହେଲା । 'ମଙ୍ଗଳାଚରଣ' ନୃତ୍ୟର ବୀଜ,'ବଟୁ' ନୃତ୍ୟ ଏହାର ଗଣ୍ଡି, 'ପଲ୍ଲବୀ' ଏହାର ବିକଶିତ ରୂପ,'ଅଭିନୟ' ଫଳଧାରଣ ଏବଂ 'ମୋକ୍ଷ' ପତ୍ରଝଡ଼ା ବୋଲି କୁହାଯାଇପାରେ ।

ପରିଧାନ, ଅଳଙ୍କାର, ବେଶସଜ୍ଜା ଇତ୍ୟାଦି ପାଇଁ ନିର୍ଦ୍ଦିଷ୍ଟ ନୀତି ପଞ୍ଚଦଶ ଶତାବ୍ଦୀରେ ମହେଶ୍ୱର ମହାପାତ୍ରଙ୍କ ଲିଖିତ 'ଅଭିନୟ ଚନ୍ଦ୍ରିକା' ଅନୁଯାୟୀ ସ୍ଥିରୀକୃତ ହେଲା ।[୧] ପ୍ରତ୍ୟେକ ଆଲୋଚନା ସଭାର ବିବରଣୀ ଲିପିବଦ୍ଧ କରାଯାଇ ଲୋକନାଥ ମିଶ୍ରଙ୍କ ଡ୍ରଇଁରୁମ୍ କାନ୍ଥରେ ଲଟକାଇ ଦିଆଗଲା । ଶିଳ୍ପୀମାନେ ଭୂମିକୁ ସ୍ପର୍ଶ କରି ଏହି ନୀତିନିୟମ ପାଳନ କରିବାର ଶପଥ ନେଲେ ।

କିନ୍ତୁ 'ବଟୁ' ନୃତ୍ୟ କିପରି ପରିବେଷିତ ହେବ, ସେ ସଂପର୍କରେ ବିଭିନ୍ନ ମତ ପ୍ରକାଶ ପାଇବାକୁ ଲାଗିଲା । 'ବଟୁ' ଥିଲା ଗୋଟିପୁଅ ନୃତ୍ୟର 'ଥେଇ ଘର ନାଟ'ର ଅନ୍ୟ ଗୋଟିଏ ରୂପ । 'ଥେଇ' ଉକୁଟ ତାଳ ଉପରେ ଆଧାରିତ ଥିବାରୁ ଏପରି ପରିକଳ୍ପନା କରାଯାଇଥିଲା । 'ବଟୁ' ନାମକରଣ ହୋଇଥିଲା 'ବଟୁକ ଭୈରବ' ଅର୍ଥାତ୍ ଅବିବାହିତ ଶିବଙ୍କ ନାମାନୁସାରେ । 'ବଟୁକ' ଶବ୍ଦ ତରୁଣ ଅବସ୍ଥାକୁ ବୁଝାଏ । 'ବଟୁ' ନୃତ୍ୟରେ ବିଭିନ୍ନ ଛନ୍ଦରେ ବିଭିନ୍ନ ଭଙ୍ଗୀ ପ୍ରକାଶ କରାଯାଏ । ଏଥିରେ ଓଡ଼ିଶୀ ନୃତ୍ୟର ମୂଳ ରୂପ ପ୍ରକାଶିତ ହୁଏ; କୌଣସି ଭାବର ଅତିରଞ୍ଜନ ବା ବିସ୍ତାରଣ ନଥାଏ । ସେଥିପାଇଁ ଓଡ଼ିଶୀ ନୃତ୍ୟରେ

---

୧. ଏହି ସମୟରେ ମହିଳା ନୃତ୍ୟଶିଳ୍ପୀମାନେ ପୁଷ୍ପଚୂଡ଼ କେଶବିନ୍ୟାସ ପଦ୍ଧତି ଅନୁସରଣ କଲେ । ଅର୍ଥାତ୍, ଖୋସାରେ ଟାହିଆ ପରିଧାନ କରିବା ଆରମ୍ଭ କଲେ । ୧୯୫୯ରେ କଳାବିକାଶ କେନ୍ଦ୍ର ଦ୍ୱାରା ଆୟୋଜିତ 'ମେଘଦୂତ' ନୃତ୍ୟନାଟିକା ପାଇଁ ନୃତ୍ୟଶିଳ୍ପୀମାନଙ୍କ ପୋଷାକ ପ୍ରସ୍ତୁତ କରିବା ପାଇଁ ପୁରୀରୁ ଜଣେ କଷ୍ଟ୍ୟୁମ୍ ଡିଜାଇନର ଆସିଥିଲେ । ଧୀରେନ୍ଦ୍ରନାଥ ପଟ୍ଟନାୟକ ତାଙ୍କୁ ପ୍ରସ୍ତାବ ଦେଲେ ପୁଷ୍ପ ବଦଳରେ ସୋଲରେ ଟାହିଆ ପ୍ରସ୍ତୁତ କରାଯାଉ । କେଳୁଚରଣ ସେ ପ୍ରସ୍ତାବ ଗ୍ରହଣ କରିଥିଲେ । ସେହି ସମୟଠାରୁ ଓଡ଼ିଶୀ ନୃତ୍ୟଶିଳ୍ପୀମାନେ ଟାହିଆ ବ୍ୟବହାର କରିଆସୁଛନ୍ତି ।

ବ୍ୟବହୃତ ମୁଖ୍ୟ ବାଦ୍ୟଗୁଡ଼ିକ ଏଥିରେ ବ୍ୟବହୃତ ହୁଏ । ଏହାପରେ ନୃତ୍ୟର ମୁଖ୍ୟ ଅଂଶ ପରିବେଷିତ ହୁଏ । 'ବଟୁ' ନୃତ୍ୟ ସଂପର୍କରେ ଧୀରେନ୍ଦ୍ରନାଥ ପଟ୍ଟନାୟକ କହନ୍ତି, 'ମୁଁ ଜୟନ୍ତିକାରେ ଯୋଗଦେବା ପରେ ଗୁରୁମାନେ ଷୋଳଖଣ୍ଡ ବାଦ୍ୟ ସଂପର୍କରେ କହିଲେ । ଏହି ବାଦ୍ୟ ସମୂହକୁ 'ବଟୁ' କୁହାଯାଉଥିଲା । ମୋତେ କିନ୍ତୁ ଗୁରୁମାନେ 'ବଟୁ' ଦେଖାଇ ପାରିଲେ ନାହିଁ । ତେଣୁ ଯେଉଁ କେତୋଟି ବୋଲ୍ ସଂପର୍କରେ ଜଣାଥିଲା, ତାହାର ସମନ୍ୱୟ କରି ଆମେ 'ବଟୁ' ସଂରଚନା କଲୁ । ନୃତ୍ୟଶିଳ୍ପୀ ବୀଣା, ମର୍ଦ୍ଦଳ, ବଂଶୀ ଓ ମଞ୍ଜିରା ଭଳି ମୂଳ ବାଦ୍ୟଯନ୍ତ୍ର ବ୍ୟବହାର କରି 'ବଟୁ' ସଂରଚନା କରିବା ପାଇଁ ମୁଁ ପ୍ରଥମେ ପ୍ରସ୍ତାବ ଦେଇଥିଲି ।

ଉଭୟ ପଙ୍କଜ ଓ ଦେବପ୍ରସାଦ ମୋ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କଲେ । ସେମାନେ ଏହାକୁ କେଳୁଙ୍କ ଘରାନା ବୋଲି ଅଭିହିତ କଲେ – ପରେ ଜୟନ୍ତିକା ଅନୁଷ୍ଠାନକୁ ଆସିବା ବନ୍ଦ କରିଦେଲେ । ଦେବପ୍ରସାଦ କିନ୍ତୁ 'ସ୍ଥାୟୀ ନାଟ' ନାମରେ ମୋର ପ୍ରସ୍ତାବ ଅନୁରୂପ ଏକ ଶୈଳୀ ପ୍ରବର୍ତ୍ତନ କଲେ ।'

ସେ ଯାହାହେଉ, ଓଡ଼ିଶୀ ନୃତ୍ୟର ବିକାଶଧାରା ଅବ୍ୟାହତ ରହିଲା । ଏଥିରେ ସ୍ୱର, ବାଦ୍ୟ, ବିଭିନ୍ନ ନୃତ୍ୟ ଶୈଳୀର ସମନ୍ୱୟରେ ପରିକଳ୍ପିତ ପଲ୍ଲବୀକୁ ସମାନ ଗୁରୁତ୍ୱ ପ୍ରଦାନ କରାଗଲା । 'ଅଭିନୟ ଚନ୍ଦ୍ରିକା'ରେ ପ୍ରଦତ୍ତ ଦିଗ୍‌ଦର୍ଶନ ଗ୍ରହଣ କରାଗଲା । 'ଗୋଟିପୁଅ'ର ଛନ୍ଦ ବିନ୍ୟାସ ଉପରେ ଓଡ଼ିଶୀର ମୋକ୍ଷ ବା ଶେଷ ଭାଗ ଆଧାରିତ ହେଲା । 'ଅଭିନୟ ଦର୍ପଣ ପ୍ରକାଶ' ରେ ପ୍ରଦତ୍ତ ସୂଚନା ଅନୁଯାୟୀ ହସ୍ତଚାଳନା ବା ମୁଦ୍ରା ସ୍ଥିରୀକୃତ ହେଲା । ଓଡ଼ିଶାର ଯଦୁନାଥ ସିଂହଙ୍କ ଦ୍ୱାରା ଲିଖିତ ଏହି ଗ୍ରନ୍ଥଟି କାଳୀଚରଣ ପଟ୍ଟନାୟକଙ୍କ ପାଖରେ ଥିଲା । ଜୟନ୍ତିକା ଆଲୋଚନା ସଭାମାନଙ୍କରେ ଛାତ୍ରଛାତ୍ରୀମାନେ ନୃତ୍ୟ ପ୍ରଦର୍ଶନ କରୁଥିଲେ । ସେପ୍ଟେମ୍ବର ୧୯୫୯ ଏବଂ ଜୁନ୍ ୧୯୬୦ରେ କଟକର ନାରୀସେବା ସଂଘଠାରେ ସର୍ବସାଧାରଣଙ୍କୁ ଏହି ନୃତ୍ୟ ପ୍ରଦର୍ଶନ କରାଗଲା । ସେତେବେଳକୁ କେଳୁଚରଣ ତିନୋଟି ପଲ୍ଲବୀ ସଂରଚନା କରିସାରିଥା'ନ୍ତି । ପ୍ରଥମଟିର ରାଗ 'ବସନ୍ତ'; ବାଳକୃଷ୍ଣ ଦାଶ 'ଶ୍ୟାମ ଯା ଯା କୁହାର ତୋ ପ୍ରୀତିକୁ' ସଂଗୀତ ଆଧାରରେ ଏହାର ଛନ୍ଦ ନିର୍ଣ୍ଣୟ କରିଥା'ନ୍ତି । ଦ୍ୱିତୀୟଟିର ରାଗ 'କଲ୍ୟାଣୀ' । ଏହା 'ଦେଖିବା ପରା ଆସରେ ପ୍ରାଣ ସଙ୍ଗିନୀ' ସଂଗୀତ ଉପରେ ଆଧାରିତ ହୋଇଥାଏ । ତୃତୀୟଟିର ରାଗ 'ମୋହନା' । ଏହାର ସଂଗୀତ ନିର୍ଦ୍ଦେଶନା ଦେଇଥାନ୍ତି ଭୁବନେଶ୍ୱର ମିଶ୍ର ।

ଏହି ସମୟରେ କେଳୁଚରଣ କେତେକ ଓଡ଼ିଆ ସଂଗୀତର ଅଭିନୟ ରୂପ ପ୍ରସ୍ତୁତ କରିଥିଲେ । କବିସୂର୍ଯ୍ୟ ବଳଦେବ ରଥଙ୍କ 'ତ୍ରିଭଙ୍ଗୀ ଚାହାଣୀ', ଗୋପାଳକୃଷ୍ଣଙ୍କର 'କି ନାଦରେ ପ୍ରାଣ ସଙ୍ଗିନୀ', ଉପେନ୍ଦ୍ର ଭଞ୍ଜଙ୍କ 'ବିଭୂଷଣ ପୁଷ୍ପେ ଯା' କାନ୍ତି ଜାଣ', ଗୀତଗୋବିନ୍ଦର 'ଲଳିତଲବଙ୍ଗଲତା' ସେଥି ମଧ୍ୟରେ ଅନ୍ତର୍ଭୁକ୍ତ ଥିଲା । 'ଜୟନ୍ତିକା'

ପକ୍ଷରୁ ଛାତ୍ରଛାତ୍ରୀମାନେ ଏହି ଅଭିନୟ ପ୍ରଦର୍ଶନ କରିଥିଲେ ।

ଜାନୁୟାରୀ ୧୯୫୮ରେ କେଳୁଚରଣ କାଳୀଚରଣ ପଟ୍ଟନାୟକଙ୍କ ସହିତ ସର୍ବଭାରତୀୟ ନୃତ୍ୟ ଆଲୋଚନା ଚକ୍ରରେ ଯୋଗଦେବା ପାଇଁ ଚେନ୍ନାଇ ଗଲେ ।[୧] ଏହି ଆଲୋଚନାଚକ୍ର ଥିଲା ସଂଗୀତ ଏକାଡେମୀର ଏକତ୍ରିଂଶତମ ଅଧିବେଶନର ଏକ ଅଂଶ । ଏଥିରେ କଳାବିକାଶ କେନ୍ଦ୍ର ପକ୍ଷରୁ ସଂଯୁକ୍ତା 'ଲଳିତଲବଙ୍ଗଲତା' ସଂଗୀତ ଆଧାରରେ ନୃତ୍ୟ ପରିବେଷଣ କଲେ । କେଳୁଚରଣ ମର୍ଦ୍ଦଳରେ ସହାୟତା କଲେ ଏବଂ ବାଳକୃଷ୍ଣ ଦାଶ କଣ୍ଠ ସଂଗୀତ ପରିବେଷଣ କଲେ । ଓଡ଼ିଶୀ ନୃତ୍ୟର ଐତିହାସିକତା ତଥା ବାସ୍ତବତା ସଂପର୍କରେ କାଳୀଚରଣ ପ୍ରବନ୍ଧଟିଏ ଉପସ୍ଥାପନା କଲେ ।

୧୯୫୮ ଏପ୍ରିଲ୍ ୫ ତାରିଖରେ ପୁଣି ଥରେ ସେହି ଦଳ ସଂଗୀତ ନାଟକ ଏକାଡେମୀ ଦ୍ୱାରା ଦିଲ୍ଲୀ ବିଜ୍ଞାନ ଭବନରେ ଆୟୋଜିତ ସର୍ବଭାରତୀୟ ନୃତ୍ୟ ଆଲୋଚନାରେ ଯୋଗ ଦେଲେ । ସଂଯୁକ୍ତାଙ୍କ ଅନୁପସ୍ଥିତିରେ ସେଥିରେ ଜୟନ୍ତୀ ଘୋଷ୍ ନୃତ୍ୟ ପରିବେଷଣ କଲେ । ଏହି ଅବସରରେ କାଳୀଚରଣ ଓଡ଼ିଶୀ ନୃତ୍ୟର ଶାସ୍ତ୍ରୀୟତା ଆଲୋଚନା କରି ପ୍ରବନ୍ଧଟିଏ ପଢ଼ିଲେ । ଜୟନ୍ତୀଙ୍କ ନୃତ୍ୟରେ 'ମଙ୍ଗଳାଚରଣ', 'ବଟୁ' 'ଦେଖିବା ପରା ଆସରେ' ଏବଂ 'ମୋକ୍ଷ' ଅନ୍ତର୍ଭୁକ୍ତ ଥିଲା । କେଳୁଚରଣ ମର୍ଦ୍ଦଳରେ ସହାୟତା କରିଥିଲେ । ଜୟନ୍ତୀ ଚନ୍ଦନଯାତ୍ରା ସମୟରେ ଚାପ ଉପରେ ନାଚୁଥିବା ଗୋଟିପୁଅମାନେ ପିନ୍ଧୁଥିବା ଶୈଳୀରେ ଶାଢ଼ୀ ପିନ୍ଧିଥିଲେ । ଶାଢ଼ୀର କୁଞ୍ଚ ସାମ୍ନାରେ ଝୁଲି ରହୁଥିଲା । ନୃତ୍ୟଶିଳ୍ପୀ ମଥା, ଗ୍ରୀବା, ବାହୁ ଓ କଟିରେ ରୂପା ଅଳଙ୍କାର ପିନ୍ଧିଥିଲେ । ଦିନକ ଆଗରୁ ଗୁରୁ ମହାଦେବ ରାଉତଙ୍କ ମର୍ଦ୍ଦଳ ବାଦନ ସହାୟତାରେ ନନ୍ଦିତା ମହାନ୍ତି ଜାତୀୟ ସଂଗୀତ ପରିଷଦ (ନ୍ୟାସନାଲ୍ ମ୍ୟୁଜିକ୍ ଆସୋସିଏସନ୍) ପକ୍ଷରୁ ଓଡ଼ିଶୀ ନୃତ୍ୟ ପରିବେଷଣ କରିଥିଲେ । ଏହି ଆଲୋଚନାଚକ୍ର ଥିଲା ଓଡ଼ିଶୀ ନୃତ୍ୟ ପାଇଁ ଏକ ଐତିହାସିକ ସମୟ । କାଳୀଚରଣ ପଟ୍ଟନାୟକଙ୍କ ଭାଷାରେ, 'ସଭାପତି ଯାହା ସେଦିନ ଘୋଷଣା କଲେ, ସେଥିରୁ ସମସ୍ତେ ବୁଝିଲେ, ଓଡ଼ିଶୀ ଭାରତର ଶାସ୍ତ୍ରୀୟ ନୃତ୍ୟମାନଙ୍କ ମଧ୍ୟରେ ପଞ୍ଚମ ସ୍ଥାନ ଅଧିକାର କରିବାକୁ ଯାଉଛି ।'[୨]

୧୯୫୬ରେ ଦିଲ୍ଲୀରେ ଅନୁଷ୍ଠିତ ତୃତୀୟ ଅନ୍ତର୍ବିଶ୍ୱବିଦ୍ୟାଳୟ ଯୁବ ଉତ୍ସବରେ ଓଡ଼ିଶୀକୁ ଶାସ୍ତ୍ରୀୟ ନୃତ୍ୟ ଭାବରେ ମାନ୍ୟତା ପ୍ରଦାନ କରିବା ପାଇଁ ପଦକ୍ଷେପ ଗ୍ରହଣ କରାଯାଇ ସାରିଥିଲା । ୧୯୫୪ରେ ଅନୁଷ୍ଠିତ ପ୍ରଥମ ଯୁବ ଉତ୍ସବରେ ତରୁଣ ବୟସର ଲାଜକୁଳୀ ପ୍ରିୟମ୍ବଦା ତାଙ୍କର ଆଠ ମିନିଟ୍ ଓଡ଼ିଶୀ ନୃତ୍ୟ ପରିବେଷଣ କରିଥିଲେ । ସେତେବେଳେ ଏ ନୃତ୍ୟ ସଂପର୍କରେ ପ୍ରାୟ କେହି କିଛି ଜାଣିନଥିଲେ । ପ୍ରିୟମ୍ବଦାଙ୍କୁ ତୃତୀୟ

---

୧. ଦ ହିନ୍ଦୁ, ୩ ଜାନୁୟାରୀ ୧୯୫୮ ।

୨. ସମାଜ, ୨୪ ଏପ୍ରିଲ୍ ୧୯୫୮ ।

ପୁରସ୍କାର ମିଳିଥିଲା ।

ସେ ଯାହାହେଉ, ତୃତୀୟ ନୃତ୍ୟ ଉତ୍ସବରେ ପ୍ରିୟମ୍ବଦା କେବଳ ପ୍ରଥମ ପୁରସ୍କାର ପାଇ ନଥିଲେ, ତାଙ୍କୁ ନୃତ୍ୟ ପ୍ରଦର୍ଶନ ପାଇଁ ପନ୍ଦର ମିନିଟ୍ ସମୟ ଦିଆଯାଇଥିଲା । ପ୍ରତି ନୃତ୍ୟ ଶିକ୍ଷୀଙ୍କ ପାଇଁ ଆଠ ମିନିଟ୍ ଲେଖାଏଁ ସମୟ ନିର୍ଦ୍ଧାରିତ ଥିଲା (ଓଡ଼ିଶାର ଆଉଜଣେ ନୃତ୍ୟଶିକ୍ଷୀ ସୁଷମା ଡେଭ୍ ଏହି ପ୍ରତିଯୋଗିତାରେ ଦ୍ୱିତୀୟ ପୁରସ୍କାର ଲାଭ କରିଥିଲେ) । ଏହି ସଫଳତା ପରେ କେତେକ ପ୍ରତିଯୋଗୀ ଆନନ୍ଦ ଉଲ୍ଲାସରେ କେଳୁଚରଣଙ୍କୁ କାନ୍ଧରେ ବସାଇ ଏକ ଶୋଭାଯାତ୍ରାରେ ଉତ୍ସବ ପରିସରରେ ବୁଲାଇଥିଲେ । ଏହି ପ୍ରତିଯୋଗୀମାନେ ଥିଲେ ଲକ୍ଷ୍ନୌ ବିଶ୍ୱବିଦ୍ୟାଳୟର କଥକ ଶିକ୍ଷୀ । ସେମାନେ ଓଡ଼ିଶୀ ନୃତ୍ୟ ଦ୍ୱାରା ଏପରି ବିମୋହିତ ହୋଇଥିଲେ ଯେ ଏଥିପାଇଁ ନିର୍ଦ୍ଧାରିତ ଆଠ ମିନିଟ୍ ସମୟ ବଢ଼ାଇଦେବା ପାଇଁ ଦାବି କରିଥିଲେ । ଫଳରେ ପ୍ରିୟମ୍ବଦା ତାଙ୍କର କଲ୍ୟାଣୀ, ପଲ୍ଲବୀ ଓ ତା'ପରେ 'ଦେଖିବ ପରା ଆସରେ' ନୃତ୍ୟାଭିନୟ ପରିବେଷଣ କରିପାରିଲେ ।

ମାର୍ଚ୍ଚ ୧୯୫୯ ରେ କୋଲ୍‌କାତାରେ ନୃତ୍ୟ ଭାରତୀ ଦ୍ୱାରା ଆୟୋଜିତ ଅନୁଷ୍ଠିତ ସର୍ବଭାରତୀୟ ନୃତ୍ୟ ଉତ୍ସବରେ କଥକ, ମଣିପୁରୀ, ଭାରତନାଟ୍ୟମ୍ ଓ କଥାକଳି ସହିତ କଳାବିକାଶ କେନ୍ଦ୍ର ପକ୍ଷରୁ ଓଡ଼ିଶୀ ପ୍ରଦର୍ଶିତ ହୋଇଥିଲା । କୁଙ୍କୁମ ଦାସ ଓ କୃଷ୍ଣପ୍ରିୟା ନନ୍ଦ ରାଧାକୃଷ୍ଣ ଯୁଗଳ ନୃତ୍ୟ ପରିବେଷଣ କରିଥିଲେ । ମର୍ଦ୍ଦଳରେ ସହାୟତା କରିଥିଲେ କେଳୁଚରଣ ।[୧]

ଏହି ସମୟରେ ଜୟନ୍ତିକାର ଆଲୋଚନା ସଭାମାନ ନିୟମିତ ଅନୁଷ୍ଠିତ ହେଉଥିଲା । ଜୁଲାଇ ୧୯୫୯ରେ କଳାବିକାଶ କେନ୍ଦ୍ରରେ ଅନୁଷ୍ଠିତ ଏକ ସଭାରେ ଗୃହୀତ କେତୋଟି ପ୍ରସ୍ତାବ ଥିଲା : ଜୟନ୍ତିକାରେ ଓଡ଼ିଶୀ ଓ ଲୋକନୃତ୍ୟ ପାଇଁ ଏକ ଗବେଷଣା କେନ୍ଦ୍ର ପ୍ରତିଷ୍ଠା କରିବା, ଗବେଷଣା ପାଇଁ ଓଡ଼ିଶା ସଂଗୀତ ନାଟକ ଏକାଡେମୀକୁ ଆର୍ଥିକ ସହାୟତା ପାଇଁ ନିବେଦନ କରିବା ଏବଂ ପ୍ରତି ପନ୍ଦର ଦିନରେ ଗବେଷକଙ୍କଠାରୁ ସେମାନଙ୍କ କାର୍ଯ୍ୟର ପ୍ରଗତି ସଂପର୍କରେ ବିବରଣୀ ଜୟନ୍ତିକାରେ ଦାଖଲ କରିବା ।[୨]

ଏହି ସମୟରେ କେଳୁଚରଣ ଯକ୍ଷ୍ମା ରୋଗରେ ପୀଡ଼ିତ ହେଲେ । ସେ 'ଗୀତଗୋବିନ୍ଦ' ଅଷ୍ଟପଦୀର ପ୍ରଥମ ପଦ 'ନିନ୍ଦତି ଚନ୍ଦନମ୍'ର ସ୍ୱର ସଂଯୋଜନା କରୁଥାନ୍ତି, ତାଙ୍କ କଫରେ ରକ୍ତ ପଡ଼ିଲା । ଆଶ୍ଚର୍ଯ୍ୟର କଥା, ଯେତେବେଳେ ସେ ଏହି ଅଷ୍ଟପଦୀର ସ୍ୱର ସଂଯୋଜନା କରିବାକୁ ଉଦ୍ୟମ କଲେ କୌଣସି ନା କୌଣସି ଦୁର୍ଭାଗ୍ୟ ତାଙ୍କୁ ଆକ୍ରମଣ କଲା । ୧୯୯୦ ଏପ୍ରିଲ୍‌ରେ ତାଙ୍କର ହୃଦ୍‌ଯନ୍ତ୍ରରେ ଅସ୍ତ୍ରୋପଚାର ହୋଇଥିଲା । ସେତେବେଳେ ସେ କେତେଜଣ ଛାତ୍ରଛାତ୍ରୀଙ୍କ ସହିତ ଅଷ୍ଟପଦୀର ସ୍ୱର ସଂରଚନା

୧. ସମାଜ, ୨୭ ମାର୍ଚ୍ଚ ୧୯୫୯ ।

୨. ପ୍ରଜାତନ୍ତ୍ର, ୨୧ ଜୁଲାଇ ୧୯୫୯ ।

କରୁଥିଲେ । ସେ କହିଲେ, 'ଏହି ଗୀତଟିର ମୁଁ ସ୍ୱର ସଂରଚନା କରିବା ମହାପ୍ରଭୁ ଜଗନ୍ନାଥ ହୁଏତ ଚାହାନ୍ତି ନାହିଁ ।'

କେଳୁଚରଣଙ୍କ ଅସୁସ୍ଥତା ସମ୍ବାଦ ବ୍ୟାଧିର ନିରୂପଣ ହେବା ଆଗରୁ ବ୍ୟାପିଗଲା । ଗୁରୁଙ୍କୁ ଶୀଘ୍ର ଆରୋଗ୍ୟ କରିଦେବାପାଇଁ ଛାତ୍ରଛାତ୍ରୀମାନଙ୍କଠାରୁ ଡାକ୍ତରଙ୍କ ନିକଟକୁ ଚିଠି ପରେ ଚିଠି ଆସିବାକୁ ଲାଗିଲା । ସେ ଯେଉଁ ବାଳିକା ହାଇସ୍କୁଲ୍‌ରେ ପଢ଼ାଉଥିଲେ, ସ୍ୱେଚ୍ଛାକୃତ ଭାବରେ ସେଠାରୁ ପାଞ୍ଚ ହଜାର ଟଙ୍କା ପହଞ୍ଚିଲା । କଳାବିକାଶ କେନ୍ଦ୍ର ଆଗତୁରା ତାଙ୍କର ମାସିକ ଦରମା ଦୁଇଶହ ପଚାଶ ଟଙ୍କା ପଠାଇଦେଲେ । କେନ୍ଦ୍ର ସଂଗୀତ ନାଟକ ଏକାଡେମୀ ତାଙ୍କ ଆରୋଗ୍ୟ ପାଇଁ ଏକ ହଜାର ଟଙ୍କା ମଞ୍ଜୁର କଲେ ( ଏହାର ପ୍ରଥମ କିସ୍ତି ସେ ପାଇବା ଆଗରୁ ସୁସ୍ଥ ହୋଇ ସାରିଥଲେ) । ତାଙ୍କର ପତ୍ନୀ ଲକ୍ଷ୍ମୀପ୍ରିୟା ଦୁଇହଜାର ଟଙ୍କାରେ ତାଙ୍କର ସମସ୍ତ ସ୍ୱର୍ଣ୍ଣ ଅଳଙ୍କାର ବିକିଦେଲେ ।

ତିନି ଚାରି ମାସ ଯାଏଁ କେଳୁଚରଣଙ୍କୁ ସଂପୂର୍ଣ୍ଣ ବିଶ୍ରାମ ନେବାକୁ ହେଲା । ତାଙ୍କର ସମସ୍ତ କାର୍ଯ୍ୟକଳାପ – ଶିକ୍ଷା ଦେବା, ନୃତ୍ୟପାଇଁ ପ୍ରସ୍ତୁତି ଇତ୍ୟାଦି ବନ୍ଦ ରହିଲା । ସବୁଠାରୁ ବଡ଼ କଥା, ତାଙ୍କର ପୁରୁଣା ଅଭ୍ୟାସ ବିଡ଼ି ଖାଇବା ବନ୍ଦ କରିବାକୁ ପଡ଼ିଲା । ପାନ ବରଜରେ କାମ କରୁଥିବା ସମୟରେ ନିୟମିତ ବିଡ଼ି ଖାଇବା ତାଙ୍କର ଅଭ୍ୟାସରେ ପରିଣତ ହୋଇଯାଇଥିଲା । ବିଡ଼ି ନଖାଇବା ପାଇଁ ଡାକ୍ତର ଏପରି କଡ଼ାକଡ଼ି ବାରଣ କରିଥିଲେ ଯେ ବେଳେ ବେଳେ କେଳୁଚରଣ ଅର୍ଦ୍ଧରାତ୍ରିରେ ଚମକି ଉଠି ପଡୁଥିଲେ – ତାଙ୍କୁ ଲାଗୁଥିଲା, ସେ ଯେମିତି ପୁଣି ବିଡ଼ି ଖାଇବା ଆରମ୍ଭ କରିଦେଇଛନ୍ତି !

ଏହା ମଧ୍ୟରେ କେଳୁଚରଣ ପରିବାର ସହିତ ପିଟର୍ ସାହିକୁ ଉଠିଆସିଥାନ୍ତି । ଅଳ୍ପଦୂରରେ ରହୁଥାନ୍ତି ଅନ୍ୟତମ ଓଡ଼ିଶୀ ଗୁରୁ ଦେବପ୍ରସାଦ ଦାସ । ଓଡ଼ିଶା ଥିଏଟର୍ ଓ ଅନ୍ନପୂର୍ଣ୍ଣା–'କ' ଗ୍ରୁପ୍‌ରେ କାର୍ଯ୍ୟ କରୁଥିବା ସମୟରେ ହାସ୍ୟ ଅଭିନେତା ଭାବରେ ଦେବପ୍ରସାଦଙ୍କର ଯଥେଷ୍ଟ ସୁନାମ ଥିଲା । ବର୍ତ୍ତମାନ ସେ ପ୍ରତିଦିନ ସନ୍ଧ୍ୟାରେ କେଳୁଚରଣଙ୍କୁ ଭେଟି ମଜାମଜା କଥା କହି ତାଙ୍କୁ ଉତ୍‌ଫୁଲ୍ଲ ରଖିବାକୁ ଚେଷ୍ଟା କରୁଥିଲେ । ସେ କହୁଥିବା ସବୁଠାରୁ ମଜା କଥାଟି ହେଲା, ଅଧା ଆଖି ମୁଦିଥିବା ଲୋକଟି ସଂପର୍କରେ :

'ତୁମେ ସତରେ କେଡ଼େ ସୁଖୀ ! ଦିନସାରା ଏଇଠି ବସି ସୁଆଦିଆ ଖାଦ୍ୟ ଖାଇ ମୋଟା ହୋଇଗଲଣି । ମୋର କିନ୍ତୁ ସବୁଥିରେ ଅସୁବିଧା । ମୋ ସ୍ତ୍ରୀ ମୋତେ କେମିତି ସନ୍ଦେହ କଲାପରି ଅନାଏ; ମୋ କୁକୁରର ଆଖି ଦୁଇଟା କେମିତି ଅବାଗିଆ; ମୋ କୁକୁଡ଼ାର ଗୋଟିଏ ଆଖି ନାହିଁ; ମୁଁ ଯେଉଁ ଖଟରେ ଶୁଏ ତା'ର ଗୋଟିଏ ଗୋଡ଼ ଅନ୍ୟ ଗୋଡ଼ମାନଙ୍କଠାରୁ ଛୋଟ; ମୁଁ ଯେଉଁ ଥାଳିରେ ଖାଏ ସେ ଥାଳିଟା ଭଙ୍ଗା; ଆଠଦିନ ଟ୍ୟୁସନ୍ କଲେ ମୋ ଛାତ୍ରଛାତ୍ରୀମାନେ ମୋତେ ତିନିଦିନର ଦରମା ଦିଅନ୍ତି । ରାତିରେ ଶୋଇ ମୁଁ ଯେତେବେଳେ ଜହ୍ନକୁ ଅନାଏ, ଜହ୍ନଟା ବି କେମିତି ବଙ୍କା ବଙ୍କା ଦିଶେ ।'

ଏଇ ମଜା କଥାଟି ସହିତ ଦେବପ୍ରସାଦ ହାତ ହଲାଇ ମୁହଁର ଭଙ୍ଗୀ ବଦଳାଇ କେଳୁଚରଣଙ୍କୁ ଖୁବ୍ ହସାନ୍ତି ।

କେଳୁଚରଣ ସେତେବେଳେ ଖୁବ୍ ପୁଷ୍ଟିକର ଖାଦ୍ୟ ଖାଉଥାନ୍ତି – ଦୁଧ, ଘିଅ, ଫଳରସ ଇତ୍ୟାଦି । ତାଙ୍କର ଓଜନ କୋଡ଼ିଏ କେ.ଜି. ବଢିଯାଇଥାଏ । ଯେତେବେଳେ ତାଙ୍କର ଓଜନ ପଞ୍ଚଷଠୀ କେ.ଜି. ହେଲା, ଏହି ଖାଦ୍ୟ ବଦଳାଇବାକୁ ପଡ଼ିଲା । ସେ ଏତେ ମୋଟା ହୋଇଯାଇଥିଲେ ଯେ, ତାଙ୍କଠାରୁ ଓଡ଼ିଶୀ ଶିଖିବାକୁ ଭଦ୍ରକରୁ ଆସିଥିବା ରମଣୀ ପ୍ରଥମେ ତାଙ୍କୁ ଚିହ୍ନିପାରିଲେ ନାହିଁ । କଳାବିକାଶ କେନ୍ଦ୍ରର ଶିକ୍ଷୀମାନଙ୍କ ସହିତ ଗୋଟିଏ ସର୍ବଭାରତୀୟ ଆଲୋଚନାଚକ୍ରରେ ଯୋଗ ଦେବା ପାଇଁ କେଳୁଚରଣ ଭଦ୍ରକ ଯାଇଥାନ୍ତି । ଭଦ୍ରକରେ ବିଭିନ୍ନ ନୃତ୍ୟଶୈଳୀ ଶିଖାଉଥିବା ତରୁଣ ବାଳକ ରମଣୀ ଆଲୋଚନାଚକ୍ରରେ ଓଡ଼ିଶୀ ମୁଦ୍ରା ସଂପର୍କରେ ଜାଣି ଓଡ଼ିଶୀ ଶିଖିବା ପାଇଁ କଟକ ଆସିଥାନ୍ତି ।

ରମଣୀ କଟକରେ ପହଞ୍ଚି ଜାଣିଲେ, ସ୍ୱାସ୍ଥ୍ୟଗତ କାରଣରୁ କେଳୁଚରଣ ନୃତ୍ୟଶିକ୍ଷା ବନ୍ଦ ରଖିଛନ୍ତି । ତାଙ୍କୁ ଖୋଜି ପାଇବା ସହଜ ହେଲା ନାହିଁ । ଦିନେ କିନ୍ତୁ ଆକସ୍ମିକ ଭାବରେ ଗୁରୁଙ୍କ ସହିତ ସାକ୍ଷାତ୍ ହୋଇଗଲା । ଦିନେ ପିଟନ୍ ସାହୀ ବାଟେ ଯାଉଛନ୍ତି, ରମଣୀ ଦେଖିଲେ ଭଦ୍ରକରେ ସେ ଭେଟିଥିବା କେହି ଜଣେ ଘର ସାମ୍ନାରେ ଚୌକିଟିଏ ପକାଇ ବସିଛନ୍ତି । ତାଙ୍କର ସରୁ ନିଶ ଓ ମୋଟା ଦେହ ଦେଖି ରମଣୀ ଟିକେ ଦୋ ଦୋ ଚିହ୍ନା ହେଲେ । କେଳୁଚରଣ କିନ୍ତୁ ତାଙ୍କୁ ଚିହ୍ନି ପାଖକୁ ଡାକିଲେ । ସେହିଦିନଠାରୁ ରମଣୀଙ୍କର ଶିକ୍ଷା ଆରମ୍ଭ ହେଲା । ପ୍ରଥମରୁ ଅବଶ୍ୟ ନୃତ୍ୟଶିକ୍ଷା ହେଲା ନାହିଁ, କାରଣ କେଳୁଚରଣଙ୍କ ପାଇଁ ଏହା କ୍ଳାନ୍ତିକର ହୋଇଥା'ନ୍ତା । ପ୍ରଥମେ ତାବ୍‌ଲା ଶିକ୍ଷା ହେଲା । ସେହିଦିନୁ ରମଣୀ କେଳୁଚରଣଙ୍କ ପୁରୁଷ ଶିଷ୍ୟମାନଙ୍କ ମଧ୍ୟରେ ସବୁଠାରୁ ବିଶ୍ୱସ୍ତ ହୋଇରହିଲେ । କେଳୁଚରଣ ଯେତେଦିନ କଳାବିକାଶ କେନ୍ଦ୍ରରେ ଥିଲେ, ରମଣୀ ତାଙ୍କର ପୁଅପରି ରହିଥିଲେ । ସେ କେଳୁଚରଣ ଓ ତାଙ୍କ ପରିବାରକୁ ବିଭିନ୍ନ ଭାବରେ ସାହାଯ୍ୟ କରୁଥିଲେ; କେଳୁଚରଣ ତାଙ୍କୁ ନାଚ ସହିତ ବିଭିନ୍ନ ବିଷୟରେ ଶିକ୍ଷା ଓ ଦିଗ୍‌ଦର୍ଶନ ଦେଉଥିଲେ ।

ପ୍ରାୟ ଛଅ ମାସ ପରେ କେଳୁଚରଣ ନୂତନ ଶକ୍ତି ଓ ଉତ୍ସାହରେ ନୃତ୍ୟ ଶିଖାଇବା ଆରମ୍ଭ କଲେ । ତାଙ୍କର ଛାତ୍ରଛାତ୍ରୀମାନେ ତାଙ୍କ ପ୍ରତି ଅଧିକ ଅନୁରକ୍ତ ହୋଇପଡ଼ିଲେ । ବର୍ତ୍ତମାନ ବିଡ଼ି ବଦଳରେ ସେ ପାନ ପ୍ରତି ଆକୃଷ୍ଟ ହେଲେ ଓ ନିୟମିତ କଡ଼ାପାନ ଖାଇବାକୁ ଲାଗିଲେ । ତାଙ୍କର ସ୍ତ୍ରୀ ଡବାରେ ତାଙ୍କ ପାଇଁ ପାନ ଭାଙ୍ଗି ସଜାଡ଼ି ରଖୁଥିଲେ । ଷଷ୍ଠ ଦଶକର ପ୍ରଥମ ଭାଗରେ ସେ ଗଞ୍ଜେଇ ଟାଣିବା ଅଭ୍ୟାସ କଲେ । ଏହି ନିଶା ହୁଏତ ତାଙ୍କର କଳ୍ପନା ଶକ୍ତି ବଢ଼ାଇବାରେ ସାହାଯ୍ୟ କରୁଥିଲା । ଏ ଅଭ୍ୟାସ କିନ୍ତୁ ବେଶୀଦିନ ରହି ନଥିଲା; ସୃଜନଶୀଳତାର ବିକାଶ ପାଇଁ କୌଣସି ନିଶାର ଆବଶ୍ୟକତା ନାହିଁ ବୋଲି ସେ ଅନୁଭବ କଲେ ।

ଅସୁସ୍ଥତା କାରଣରୁ କେଳୁଚରଣ ଅନୁପସ୍ଥିତ ରହିବାରୁ ଜୟନ୍ତିକାର କାର୍ଯ୍ୟକ୍ରମ ବିଶେଷ ଆଗେଇ ନଥିଲା । ଏହାର ସଭ୍ୟମାନେ ସମୟକ୍ରମେ ଓଡ଼ିଶା ଓ ଓଡ଼ିଶା ବାହାରେ ବିଭିନ୍ନ କାର୍ଯ୍ୟରେ ବ୍ୟସ୍ତ ରହିଲେ; ଜୟନ୍ତିକାର ଆଲୋଚନା ସଭା ଆଗଭଳି ନିୟମିତ ହେଲାନାହିଁ । ଜୟନ୍ତିକାକୁ ଏକ ସ୍ଥାୟୀ ଏକାଡେମୀ ବା ଅନୁଷ୍ଠାନରେ ପରିଣତ କରିବା ପାଇଁ ଯେଉଁ ପ୍ରସ୍ତାବ ଥିଲା, ତାହା କାର୍ଯ୍ୟକାରୀ ହେଲାନାହିଁ । ଜୟନ୍ତିକାରେ ଗୋଟିଏ ସ୍ଥାନରେ ଛାତ୍ରଛାତ୍ରୀମାନେ ଗୁରୁମାନଙ୍କ ଦ୍ୱାରା ତାଲିମ୍ ପାଇବାର ଯୋଜନା କରାଯାଇଥିଲା । ଆଗଭଳି ମୁକ୍ତ ଆଲୋଚନା, ସହଯୋଗର ବାତାବରଣ କ୍ରମଶଃ ମଉଳିଗଲା ।

ଏହାପରେ କେଳୁଚରଣ କଳାବିକାଶ କେନ୍ଦ୍ର ତଥା ବିଭିନ୍ନ ଛାତ୍ରଛାତ୍ରୀଙ୍କ ନୃତ୍ୟ କାର୍ଯ୍ୟକ୍ରମରେ ବ୍ୟସ୍ତ ରହିଲେ । ଷଷ୍ଠ ଦଶକର ପ୍ରଥମ ଭାଗରେ ସେ ବେଶ୍ କେତେକ ଏକକ ନୃତ୍ୟ ଓ ଗୀତିନାଟ୍ୟ ସଂରଚନା କରିଥିଲେ । ୧୯୬୧ରେ ଦିଲ୍ଲୀର ସାପ୍ରୁ ହାଉସ୍‌ଠାରେ ଆୟୋଜିତ ଲିଟ୍‌ଲ୍ ଥିଏଟର୍ ଗ୍ରୁପ୍ ଆନୁକୂଲ୍ୟରେ ପ୍ରିୟମ୍ବଦା ଏଗାରଟି ନୃତ୍ୟ କାର୍ଯ୍ୟକ୍ରମ କ୍ରମାନ୍ୱୟରେ ପରିବେଷଣ କଲେ । ଏଥିପାଇଁ କେଳୁଚରଣ ଦୁଇଟି ନୂତନ ଗୀତିନାଟ୍ୟ ଅଷ୍ଟପଦୀ ଆଧାରରେ ସଂରଚନା କରିଥିଲେ– 'ଯାମି ହେ କମିହ ଶରଣଂ' ଏବଂ 'ପଶ୍ୟତି ଦିଶି ଦିଶି ରହସି ଭବନ୍ତମ୍' । ଦୁଇଟି ଓଡ଼ିଆ ସଂଗୀତକୁ ନୃତ୍ୟରୂପ ପ୍ରଦାନ କରିଥିଲେ, ଗୋପାଳକୃଷ୍ଣଙ୍କ 'ଶ୍ୟାମକୁ ଜୁହାର ତା'ର ପ୍ରେମକୁ ଜୁହାର' ଏବଂ ବନମାଳୀଙ୍କ 'ତୋରେ ଶରଣ ଗଲିରେ ମୁରଲୀ' । ସଂଯୁକ୍ତାଙ୍କ ପାଇଁ ଆଉ ଗୋଟିଏ ଅଷ୍ଟପଦୀର ନୃତ୍ୟରୂପ ପ୍ରସ୍ତୁତ କରିଥିଲେ– 'ଯାହି ମାଧବ ଯାହି କେଶବ ମା ବଦ କୈତବବାଦମ୍' ।

ଏହିସବୁ ଗୀତାଭିନୟ ସଂଯୋଜନା– ବିଶେଷତଃ ଗୀତଗୋବିନ୍ଦର ଅଷ୍ଟପଦୀ କେଳୁଚରଣଙ୍କ ଦ୍ୱାରା ଅଧିକରୁ ଅଧିକ ମାର୍ଜିତ ହୋଇଥିଲା । ଶହ ଶହ ଛାତ୍ରଛାତ୍ରୀ ଏହା ଶିକ୍ଷା କରିଥିଲେ ଏବଂ ଅଷ୍ଟ ଦଶକର ଶେଷଭାଗ ବେଳକୁ ଏହା ସଂପୂର୍ଣ୍ଣ ବିକଶିତ ହୋଇପାରିଲା ।

ପ୍ରଥମେ ପ୍ରଥମେ ଅଷ୍ଟପଦୀର ସଂଗୀତକୁ ଆକ୍ଷରିକ ଅର୍ଥରେ ବୟାନ କରାଯାଉଥିଲା – କେତେକ ପଙ୍‌କ୍ତିର ପୁନରାବୃତ୍ତି କରାଯାଇ ତାହାକୁ ମୁଦ୍ରା ଭଙ୍ଗୀରେ ପ୍ରକାଶ କରାଯାଉଥିଲା । କିନ୍ତୁ ତାହାର ଗୂଢ଼ ବ୍ୟାଖ୍ୟା କରାଯାଇ 'ସଞ୍ଚାରୀ'ରେ ଅନ୍ତର୍ଭୁକ୍ତ କରାଯାଇ ନଥିଲା । ଉଦାହରଣ ସ୍ୱରୂପ, ଅଷ୍ଟପଦୀର 'ପଶ୍ୟତି ଦିଶି ଦିଶି' ଦେଖାଯାଉ । ପ୍ରିୟମ୍ବଦାଙ୍କ ଗୃହରେ କେଳୁଚରଣ ଏହି ସଂଗୀତର ଅଭିନୟ ରୂପ ପ୍ରସ୍ତୁତ କରୁଥିବା ସମୟରେ ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ ତାଙ୍କୁ ସଂଗୀତର ଭାବାର୍ଥ ବୁଝାଇ ଦେଇଥିଲେ । ବାଳକୃଷ୍ଣ ଦାଶ ଭୈରବୀ ରାଗରେ ଏହାର ସ୍ୱର ସଂଯୋଜନା କରିଥିଲେ । ଦ୍ୱିତୀୟ ପଙ୍‌କ୍ତିରେ– 'ପତତି ପଦାନି କିୟନ୍ତି ଚଳନ୍ତି' (ରାଧା ପ୍ରତି ପଦକ୍ଷେପରେ ଝୁଣ୍ଟି ପଡୁଛନ୍ତି) ବାରମ୍ବାର ଗାନ କରାଯାଇଥିଲା । ସେ ଝୁଣ୍ଟି ପଡ଼ିବାର ବିଭିନ୍ନ ଭଙ୍ଗୀ ପ୍ରଦର୍ଶିତ ହୋଇଥିଲା ।

୧୯୯୬ରେ ଦିଲ୍ଲୀରେ କଳାକୃତି ସଂଗ୍ରହକାରୀ ଓ.ପି. ଜୈନ୍‌ଙ୍କ ବ୍ୟକ୍ତିଗତ ଅନୁଷ୍ଠାନରେ କେଳୁଚରଣ 'ପଶ୍ୟତି ଦିଶି ଦିଶି' ଯେପରି ପରିବେଷଣ କରିଥିଲେ, ପରେ ତାହା ସେପରି କରିବା ସମ୍ଭବ ହୋଇ ନଥିଲା । ଜୈନ୍‌ଙ୍କ ଅନୁଷ୍ଠାନରେ କେଳୁଚରଣ ପ୍ରାୟ ଦଶ ମିନିଟ୍ 'ପଶ୍ୟତି ଦିଶି ଦିଶି' ଆଧାରରେ ସବୁଠାରେ କୃଷ୍ଣଙ୍କ ଅନୁସନ୍ଧାନ କରୁଥିଲେ । ମଞ୍ଚ ଉପରୁ ଓହ୍ଲାଇ ଆସି ସେ ଦର୍ଶକ ମଣ୍ଡଳୀ ମଧ୍ୟରେ କୃଷ୍ଣଙ୍କୁ ଖୋଜିବାର ଅଭିନୟ କଲେ । ହଠାତ୍ ବିଦ୍ୟୁତ୍ ଆଲୋକ ଲିଭିଗଲା । ସେ ବୃକ୍ଷମାନଙ୍କୁ ଆଲିଙ୍ଗନ କରୁଥାନ୍ତି, ମେଘମାନଙ୍କୁ କୃଷ୍ଣଙ୍କ ବିଷୟ ପଚାରୁଥାନ୍ତି । ଚନ୍ଦ୍ର ଆଲୋକରେ ସେ ଏକ ଛାୟାମୂର୍ତ୍ତିପରି ପ୍ରତିଭାତ ହେଉଥାନ୍ତି । ତା'ପରେ ସେ ମଞ୍ଚ ଉପରକୁ ଉଠିଆସିଲେ । ବିଦ୍ୟୁତ୍ ଆଲୋକରେ ଅଷ୍ଟପଦୀର ଅନ୍ୟାନ୍ୟ ଅଂଶ ନୃତ୍ୟରେ ପରିବେଷଣ କଲେ ।

ଏହି ନୃତ୍ୟ ପ୍ରଦର୍ଶନରେ 'ଯାହି ମାଧବ ଯାହି କେଶବ' ଅଷ୍ଟପଦୀଟି ଅନ୍ତର୍ଭୁକ୍ତ ହୋଇ ନଥିଲା । ଏହି ଗୀତରେ କୃଷ୍ଣ ଅନ୍ୟ ଗୋପୀମାନଙ୍କ ସହିତ ପ୍ରେମ ସଂପର୍କ ରଖିଥିବାରୁ ରାଧାଙ୍କ ଦ୍ୱାରା ଭର୍ତ୍ସିତ ହେଉଛନ୍ତି । ରାଧା କୃଷ୍ଣଙ୍କ ଦେହରେ ଅନ୍ୟ କେଉଁ ନାରୀଙ୍କ ସଂସ୍ପର୍ଶରେ ଆସିବାର ଚିହ୍ନ ଲକ୍ଷ୍ୟ କରିଛନ୍ତି । କୃଷ୍ଣ ତାହା ଅସ୍ୱୀକାର କରି କହୁଛନ୍ତି, ସେ ଅରଣ୍ୟ ପଥରେ ଯିବା ସମୟରେ ତାଙ୍କ ଦେହରେ କଣ୍ଟା ଫୋଡ଼ି ହୋଇଯାଇଛି (କୌଣସି ନାରୀଙ୍କ ନଖଚିହ୍ନ ନୁହେଁ; ତାଙ୍କ ଓଠରେ କୌଣସି କୋଳିର ରସ ଲାଗିଛି, କୌଣସି ନାରୀଙ୍କ ନୟନକୁ ଚୁମ୍ବନ କରିବାର କଜ୍ଜଳ ଦାଗ ନୁହେଁ) । ୧୯୬୧ରେ ସଂଯୁକ୍ତା ଯେଉଁ ଅଷ୍ଟପଦୀ ପରିବେଷଣ କରିଥିଲେ, ସେଥିରେ ମଧ୍ୟ ଏହି ଅଂଶ ନଥିଲା ।

କେଳୁଚରଣଙ୍କର ଏକକ ସଂରଚନାରେ ସମୟକ୍ରମେ ଅଧିକରୁ ଅଧିକ ନାଟକୀୟତା ସଂଯୋଜିତ ହେଲା । ନୃତ୍ୟଶିଳ୍ପୀ ଭାବେ କେଳୁଚରଣଙ୍କ ଅଭିଜ୍ଞତା ଫଳରେ ଏହା ହୋଇପାରିଥିଲା । ୧୯୬୧ରେ କେଳୁଚରଣଙ୍କ ଦ୍ୱାରା ସଂଯୋଜିତ କଳା ବିକାଶ କେନ୍ଦ୍ର ପକ୍ଷରୁ ଆୟୋଜିତ ଗୀତଗୋବିନ୍ଦ ନୃତ୍ୟ ନାଟିକାରେ ଏଭଳି ନାଟକୀୟତା ସ୍ପଷ୍ଟ ହୋଇଥିଲା । ଏଥିରେ ସଂଯୁକ୍ତା ରାଧା ଓ ମାୟାଧର କୃଷ୍ଣ ଭୂମିକା ଗ୍ରହଣ କରିଥିଲେ । ଏହାପରେ ଅଭିନୀତ ନୃତ୍ୟନାଟିକାସବୁ ଏହି ନୃତ୍ୟନାଟିକା ଦ୍ୱାରା ପ୍ରଭାବିତ ହୋଇଥିଲା ବୋଲି କୁହାଯାଇପାରେ ।

ଭାରତନାଟ୍ୟମ୍ ଓ କଥାକଳି ନୃତ୍ୟ ଶୈଳୀରେ ମାୟାଧରଙ୍କ ତାଲିମ୍ ଓଡ଼ିଶୀ ନୃତ୍ୟଶୈଳୀକୁ ହୁଏତ ପ୍ରଭାବିତ କରିଥିଲା । ଭାରତନାଟ୍ୟମ୍ ଓ କଥାକଳିରେ ଅଭିନୟ ଉପରେ ଅଧିକ ଗୁରୁତ୍ୱ ଦିଆଯାଏ । ସେ ଯାହାହେଉ, ରାସଲୀଳାର ପରମ୍ପରା, ସଂଗୀତ ତଥା କୃଷ୍ଣଙ୍କ ସଂପର୍କିତ ବିଭିନ୍ନ ଆଖ୍ୟାନ ଓଡ଼ିଶୀ ନୃତ୍ୟ ବିକାଶରେ କେଳୁଚରଣଙ୍କୁ ବିଶେଷ ଉଦ୍‌ବୁଦ୍ଧ କରିଥିଲା ନିଶ୍ଚୟ ।

ଷଷ୍ଠ ଦଶକର ପ୍ରଥମ ଭାଗରେ କେଳୁଚରଣ ପ୍ରସ୍ତୁତ କରିଥିବା ଗୀତିନାଟ୍ୟଗୁଡ଼ିକ

ହେଲା : ବ୍ରଜଲୀଳା (୧୯୬୧), ରାମାୟଣ (୧୯୬୧), ତପସ୍ୱିନୀ (୧୯୬୨), ଚନ୍ଦ୍ରଭାଗା (୧୯୬୨), ବିକ୍ରମ ଉର୍ବଶୀ (୧୯୬୩), ଶକୁନ୍ତଳା (୧୯୬୩), ଭାନୁସିଂହର ପଦାବଳୀ (୧୯୬୪) ଏବଂ କୃଷ୍ଣଲୀଳା (୧୯୬୪) । ଏଥିମଧ୍ୟରୁ କେତେକ ଗୀତିନାଟ୍ୟରେ ବହୁ ଶିଳ୍ପୀ ଅଂଶଗ୍ରହଣ କରିଥିଲେ ଏବଂ ବିସ୍ତୃତ ମଞ୍ଚସଜ୍ଜା ହୋଇଥିଲା । ରାମାୟଣ ଗୀତିନାଟ୍ୟରେ ଅଂଶଗ୍ରହଣ କରିଥିଲେ ସତୁରୀରୁ ଅଧିକ ଶିଳ୍ପୀ ଏବଂ ପ୍ରଥମ ଥର ପାଇଁ ଏକ ଘୂର୍ଣ୍ଣାୟମାନ ମଞ୍ଚ ବ୍ୟବହୃତ ହୋଇଥିଲା । ଏହି ଗୀତିନାଟ୍ୟ ତିନି ଦିନ ଚାଲିଥିଲା । ଏଥିରେ ସୀତା ଭୂମିକାରେ କୁଙ୍କୁମ ଏବଂ ରାମ ଭୂମିକାରେ ମାୟାଧର ଅଭିନୟ କରିଥିଲେ ।

କବି ଗଙ୍ଗାଧର ମେହେରଙ୍କ ଶତବାର୍ଷିକୀ ଉପଲକ୍ଷେ ମଞ୍ଚସ୍ଥ ହୋଇଥିଲା ତପସ୍ୱିନୀ ଗୀତିନାଟ୍ୟ । ଏଥିପାଇଁ ଚାରୋଟି ମଞ୍ଚ ପ୍ରସ୍ତୁତ ହୋଇଥିଲା : ଦୁଇଟି ମଞ୍ଚ ସ୍ଥିର, ଦୁଇଟି ଘୂର୍ଣ୍ଣାୟମାନ । ଶହେରୁ ଅଧିକ ଶିଳ୍ପୀ ଏଥିରେ ଭାଗ ନେଇଥିଲେ । ମାୟାଧର ଏଭଳି ଘୂର୍ଣ୍ଣାୟମାନ ମଞ୍ଚର ପରିକଳ୍ପନା କରିଥିଲେ । ସେ ମଞ୍ଚସଜ୍ଜା ସଂପର୍କରେ ଦିଲ୍ଲୀର ନାଟ୍ୟ ବ୍ୟାଲେ କେନ୍ଦ୍ରରେ ଦଶମାସ ତାଲିମ୍ ନେଇ ଫେରିଥାନ୍ତି । ମଞ୍ଚସବୁକୁ ଦୁଇହଳ ଶଗଡ଼ ଚକ ଉପରେ ରଖାଯାଇଥାଏ । ପ୍ରତି ଚକର ବ୍ୟାସ ବାରଫୁଟ । ଏହି ଚକ ସବୁ ଛୋଟ ଛୋଟ ଚକ ଉପରେ ସ୍ଥାପିତ ହୋଇଥାଏ ଏବଂ ମୋଟର ସାହାଯ୍ୟରେ ଚଳାଇବାର ବ୍ୟବସ୍ଥା ହୋଇଥାଏ । ଶେଷରେ କିନ୍ତୁ ମୋଟର କାମ ନ କରିବାରୁ ହାତରେ ଠେଲି ଶଗଡ଼ ଚକସବୁ ଚଳାଇବାକୁ ପଡ଼ିଲା (କୌଣସି କୌଣସି ଯାତ୍ରା ଦଳରେ ଏହିପରି ଘୂର୍ଣ୍ଣାୟମାନ ମଞ୍ଚ ବ୍ୟବହାର କରାଯାଉଥିଲା) ।

କଳାବିକାଶ କେନ୍ଦ୍ର ପାଇଁ ଗୀତିନାଟ୍ୟ ପ୍ରସ୍ତୁତିରେ କେଳୁଚରଣ ବହୁ ସମୟରେ ମାୟାଧରଙ୍କର ସହାୟତା ନେଉଥିଲେ । ମାୟାଧର ମୁଖ୍ୟ ପୁରୁଷ ଭୂମିକାରେ ଅଭିନୟ କରିବା ସହିତ ମଞ୍ଚସଜ୍ଜା, ପୋଷାକ ବିନ୍ୟାସ ଓ ରିହର୍ସାଲ୍‌ରେ କେଳୁଚରଣଙ୍କ ସହିତ ସହଯୋଗ କରୁଥିଲେ । ମାୟାଧରଙ୍କର କେଳୁଚରଣଙ୍କ ପ୍ରତି ଯଥେଷ୍ଟ ସମ୍ମାନ ଥିଲା । କେଳୁଚରଣ ତାଙ୍କ ଠାରୁ ବୟସରେ ବଡ଼ ଥିଲେ କିନ୍ତୁ ତାଙ୍କ କାର୍ଯ୍ୟରେ ପ୍ରାୟ ହସ୍ତକ୍ଷେପ କରୁ ନ ଥିଲେ । ଉଭୟେ ନିଜ ନିଜର ନୃତ୍ୟଶିକ୍ଷା ପରିଚାଳନା କରୁଥିଲେ । ମାୟାଧର ତାଙ୍କର ଛାତ୍ରଛାତ୍ରୀମାନଙ୍କୁ ଭାରତନାଟ୍ୟମ୍ ଓ ଓଡ଼ିଶୀ ଶିକ୍ଷା ଦେଉଥିଲେ ।

୧୯୫୭ରୁ କଳାବିକାଶ କେନ୍ଦ୍ର ଓଡ଼ିଶାର ଲୋକନୃତ୍ୟ ଓ ଆଦିବାସୀ ନୃତ୍ୟରେ ଗବେଷଣା ପାଇଁ କେନ୍ଦ୍ର ସଂଗୀତ ନାଟକ ଏକାଡେମୀରୁ ଅନୁଦାନ ପାଉଥିଲା । କଳାହାଣ୍ଡି, କୋରାପୁଟ ଓ ବଲାଙ୍ଗୀରରେ ସ୍ଥାନୀୟ ନୃତ୍ୟ ସଂପର୍କରେ ଗବେଷଣା ହେଉଥିଲା ।

କେଳୁଚରଣଙ୍କ ନେତୃତ୍ୱରେ କଳାବିକାଶ କେନ୍ଦ୍ରର ଗବେଷକମାନେ ଟେପ୍‌ରେକର୍ଡ଼ର, କ୍ୟାମେରା ଓ କାଗଜ କଲମ ନେଇ ବିଭିନ୍ନ ଗ୍ରାମକୁ ଯାଇ ନୃତ୍ୟର ଗୀତ,

ଛନ୍ଦ ଓ ପଦଚାଳନା ସଂଗ୍ରହ କରୁଥିଲେ । କେଳୁଚରଣ ଅନେକ ସମୟରେ ଆଦିବାସୀ ପିଲାମାନଙ୍କ ସହିତ ଚାଙ୍ଗୁ ବଜାଉଥିଲେ ଓ ତାଙ୍କ ସହିତ ଏକତ୍ର ଖାଦ୍ୟ ଗ୍ରହଣ କରୁଥିଲେ । ଷଷ୍ଠ ଦଶକର ପ୍ରଥମ ଭାଗରେ ଏହି ଗବେଷଣା ଫଳରେ ଓଡ଼ିଶାର ଆଦିବାସୀ ଓ ଲୋକନୃତ୍ୟ ସଂପର୍କରେ କଳାବିକାଶ କେନ୍ଦ୍ରରୁ କେତେକ ପୁସ୍ତିକା ପ୍ରକାଶିତ ହୋଇଥିଲା ଏବଂ କେନ୍ଦ୍ରର ଛାତ୍ରଛାତ୍ରୀମାନେ ଏହି ନୃତ୍ୟସବୁ ଶିକ୍ଷା କରୁଥିଲେ ।

ଚତୁର୍ଥ ଦଶକର ଶେଷ ଭାଗରେ କେଳୁଚରଣ ମୟୂରଭଞ୍ଜର ସାମରିକ ନୃତ୍ୟ 'ଛଉ' ସଂପର୍କରେ ଜାଣିଲେ । ଅଳ୍ପ କେତେମାସ ପୁରୀ ଅନ୍ନପୂର୍ଣ୍ଣା 'କ' ଦଳରେ କାର୍ଯ୍ୟ କରୁଥିବା ସମୟରେ ପୋଲିସ୍ ଇନ୍‌ସ୍ପେକ୍ଟର୍ ଜେନେରାଲ୍ ତଥା ନୃତ୍ୟ ନିର୍ଦ୍ଦେଶକ ରାମଚନ୍ଦ୍ର ଦାସଙ୍କ ନେତୃତ୍ୱରେ ବାରିପଦାରୁ ଏକ ଛଉ ନୃତ୍ୟ ଦଳ ଆସିଥିଲେ । ରାମଚନ୍ଦ୍ର ଦାସ ବାରିପଦାର ଉତ୍ତର ସାହି ଛଉ ନୃତ୍ୟ ଦଳ ପରିଚାଳନା କରୁଥିଲେ । କେଳୁଚରଣଙ୍କର ସ୍ମରଣ ଅଛି, ରାମ ବାବୁ କିପରି ତାଙ୍କ ଦଶାବତାର ନୃତ୍ୟରେ ଦୁଇଟି ତ୍ରୁଟି ଦର୍ଶାଇଥିଲେ : କାନ୍ଧକୁ ଅଯଥା ଅଧିକ ଉପରକୁ ଉଠାଇବା ଏବଂ ଆଖିପତାର ଅନାବଶ୍ୟକ ଚଳନ । ରାମବାବୁ କେଳୁଚରଣଙ୍କୁ ମଞ୍ଚ ପ୍ରସ୍ତୁତିର ଦାୟିତ୍ୱ ଦେଇଥିଲେ । ଏହି ଅବସରରେ କେଳୁଚରଣ ବାରିପଦାର ମୁଖ୍ୟ ଛଉଶିଳ୍ପୀ ଶ୍ରୀହରି ନାୟକଙ୍କ ଶିବତାଣ୍ଡବ ନୃତ୍ୟ ଦେଖିଥିଲେ । ଏହି ନୃତ୍ୟଶୈଳୀ ପରିପ୍ରେକ୍ଷୀରେ କେଳୁଚରଣ ପରେ ତାଙ୍କର ଶିବ ନଟରାଜ ନୃତ୍ୟ ସଂରଚନା କଲେ । ଏହାକୁ ସେ ତିନିଭାଗରେ ବିଭକ୍ତ କଲେ; ସୃଷ୍ଟି, ସ୍ଥିତି ଓ ପ୍ରଳୟ । ଛଉ ନୃତ୍ୟର ଦ୍ରୁତ ଓ ପୁରୁଷୋଚିତ ପଦଚାଳନା ପରିବର୍ତ୍ତେ ସେ ଓଡ଼ିଶୀ ଶୈଳୀ ଗ୍ରହଣ କରିଥିଲେ ।

ଅନ୍ନପୂର୍ଣ୍ଣା 'କ' ଥିଏଟରରେ 'ବନ୍ଦି ଜଗବନ୍ଧୁ' ନାଟକରେ ସେ ପାଇକ ଭୂମିକାରେ ଅଭିନୟ କରିଥିଲେ । ଏଥିରେ ସେ ଛଉ ନୃତ୍ୟ ଅନୁକରଣରେ ସାମରିକ ଶୈଳୀରେ ପଦଚାଳନା କରିଥିଲେ । ବିଭିନ୍ନ ନୃତ୍ୟଶୈଳୀ ସଂପର୍କରେ ଅବହିତ ହେବା ପରେ ତାଙ୍କର ଗୀତିନାଟ୍ୟ ସଂରଚନା ସମୃଦ୍ଧ ହୋଇଥିଲା ।

୧୯୬୪ ଡିସେମ୍ବରରେ ମୁମ୍ବାଇର ବିରଳା ମାତୃଶ୍ରୀ ଗୃହରେ କଳାବିକାଶ କେନ୍ଦ୍ର ଏକ ତିନିଦିନିଆ ନୃତ୍ୟୋତ୍ସବ ଆୟୋଜନ କଲେ । ଏଥିରେ ଓଡ଼ିଶାରୁ ଏକ ଶହରୁ ଅଧିକ ଶିଳ୍ପୀ ଯୋଗ ଦେଇଥିଲେ । ଏଥିରେ ଅନ୍ତର୍ଭୁକ୍ତ ହୋଇଥିଲା – ଭଗବାନ ସାହୁଙ୍କ ଲୋକନୃତ୍ୟ, ବାରିପଦା ଶିଳ୍ପୀମାନଙ୍କ ଦ୍ୱାରା ମୟୂରଭଞ୍ଜର ଛଉ ନୃତ୍ୟ, ପୁରୀ ଶିଳ୍ପୀମାନଙ୍କ ଦ୍ୱାରା ଗୋଟିପୁଅ ନୃତ୍ୟ, କଳାବିକାଶ କେନ୍ଦ୍ର ଦ୍ୱାରା କୃଷ୍ଣଲୀଳା ଗୀତିନାଟ୍ୟ । ଏହି ନୃତ୍ୟୋତ୍ସବ ପାଇଁ କେଳୁଚରଣଙ୍କୁ ସାତ ଦିନ ସାତ ରାତି କଠୋର ପରିଶ୍ରମ କରିବାକୁ ପଡ଼ିଥିଲା । ତାଙ୍କୁ ମୁମ୍ବାଇ ଯାଇ ରିହର୍ସାଲ୍ କରିବାକୁ ହୋଇଥିଲା ଏବଂ ନୃତ୍ୟଶିଳ୍ପୀମାନଙ୍କ ସହିତ ପଖଉଜରେ ସହାୟତା କରିବାକୁ ପଡ଼ିଥିଲା । ନିଦ୍ରା ଓ ବିଶ୍ରାମ ନ ପାଇ ଥରେ ସେ ଅଚେତା ହୋଇଗଲେ ଏବଂ ବେଶ୍ କିଛିଦିନ ଜ୍ୱରରେ ପଡ଼ିଲେ ।

ସାରା ଜୀବନ ସେ ପ୍ରତ୍ୟେକ କାର୍ଯ୍ୟ ନିଷ୍ଠାର ସହିତ କରୁଥିଲେ । ସେ ସମୟ ଭୁଲି ଯାଉଥିଲେ; ଶରୀର ପ୍ରତି ଅବହେଳା କରୁଥିଲେ । କେବଳ ପାନ ଖଣ୍ଡିଏ ଲେଖାଏଁ ଖାଇ ନିଜ କାର୍ଯ୍ୟରେ ମଜ୍ଜି ଯାଉଥିଲେ । ଯେ କୌଣସି କାର୍ଯ୍ୟରେ ଦେହ ଓ ମନକୁ ସଂପୂର୍ଣ୍ଣ ନିୟୋଜିତ କରିବାର ଅସାଧାରଣ ଶକ୍ତି ତାଙ୍କର ଥିଲା । ନୃତ୍ୟ ସଂଯୋଜନା ହେଉ, ଘର ମରାମତି ହେଉ, ନର୍ଦ୍ଦମା ସଫା ବା କୌଣସି ନୂଆ ଛାତ୍ର ବା ଛାତ୍ରୀକୁ ଶିକ୍ଷାଦାନ ହେଉ, ସବୁକାର୍ଯ୍ୟ ସେ ଗଭୀର ନିଷ୍ଠାର ସହିତ କରୁଥିଲେ । ସବୁଠାରୁ ବଡ଼ କଥା, ସେ ଯେଉଁମାନଙ୍କ ସହିତ କାର୍ଯ୍ୟ କରୁଥିଲେ, ସେମାନଙ୍କ ସହିତ ପୂରାପୂରି ମିଶିପାରୁଥିଲେ ଓ ସେମାନଙ୍କ ମଧ୍ୟରେ ଉତ୍ସାହ ଓ କର୍ମପ୍ରେରଣା ସୃଷ୍ଟି କରିପାରୁଥିଲେ ।

ବିଭିନ୍ନ କାର୍ଯ୍ୟକ୍ରମ ସେ ଏକ ସମୟରେ କରିପାରୁଥିଲେ – କଳାବିକାଶ କେନ୍ଦ୍ରରେ କ୍ଲାସ୍ ନେଉଥିଲେ, ପ୍ରାଇଭେଟ୍ ଟ୍ୟୁସନ୍ କରୁଥିଲେ, ଛାତ୍ରଛାତ୍ରୀମାନଙ୍କୁ ନୃତ୍ୟ ଶିକ୍ଷା ଦେଉଥିଲେ, ଗୀତିନାଟ୍ୟ ଓ ଏକକ ନୃତ୍ୟ ପରିଚାଳନା କରୁଥିଲେ, ନାଟକ ସଂପର୍କୀୟ ଆଲୋଚନାଚକ୍ରରେ ମଧ୍ୟ ଭାଗ ନେଉଥିଲେ । ସବୁଥିରେ ତାଙ୍କର ନିଷ୍ଠା ଓ ଆନ୍ତରିକତା ଥିଲା ।

ଏସବୁ ମଧ୍ୟରେ କଳାବିକାଶ କେନ୍ଦ୍ରର କାର୍ଯ୍ୟକ୍ରମକୁ ସେ ଅଧିକ ଗୁରୁତ୍ୱ ଦେଉଥିଲେ । ଯଥେଷ୍ଟ ପାରିଶ୍ରମିକ ପାଉ ନଥିଲେ ମଧ୍ୟ ସେ ଏଥିପାଇଁ ଅଧିକ ସମୟ ଦେଉଥିଲେ । ଏହି ଅନୁଷ୍ଠାନର ଉନ୍ନତି ପାଇଁ ସେ ଅନ୍ୟାନ୍ୟ ନିଯୁକ୍ତି ପ୍ରତ୍ୟାଖ୍ୟାନ କରୁଥିଲେ ।



ଆଦିବାସୀମାନଙ୍କ ସହ ନୃତ୍ୟରତ ଗୁରୁ କେଳୁଚରଣ

ବାବୁଲାଲ୍ ଦୋଷୀ ଓ ତାଙ୍କର ଲକ୍ଷ୍ୟ ଅଭିନ୍ନ ଥିଲା । ସେଥିପାଇଁ ବ୍ୟକ୍ତିଗତ ସ୍ତରରେ ଯାହାକିଛି ଭୁଲ୍ ବୁଝାମଣା ଥିଲା, ତାହା ସେ ଏଡ଼ାଇ ଯାଉଥିଲେ । ନୃତ୍ୟଗୁରୁ ଭାବରେ କେଳୁଚରଣଙ୍କର ସୁଖ୍ୟାତି, ତାଙ୍କର ଛାତ୍ରଛାତ୍ରୀମାନଙ୍କର ସଫଳ ନୃତ୍ୟ ପରିବେଷଣ କେନ୍ଦ୍ରର ଖ୍ୟାତି ଓ ଗୌରବ ବୃଦ୍ଧି କରିଥିଲା ।

ଷଷ୍ଠ ଦଶକର ପ୍ରଥମ ଭାଗ ଯାଏଁ କଳାବିକାଶ କେନ୍ଦ୍ର ଥିଲା ଗୁରୁ, ସଂଗୀତଜ୍ଞ ଓ ନୃତ୍ୟଶିଳ୍ପୀମାନଙ୍କ ପାଇଁ ଓଡ଼ିଶୀ ନୃତ୍ୟ ବିକାଶର ପ୍ରମୁଖ କେନ୍ଦ୍ର । ଷଷ୍ଠ ଦଶକର ମଧ୍ୟଭାଗରୁ ପରିସ୍ଥିତି ବଦଳିଗଲା । ବହୁ ଶିଳ୍ପୀ ଅନ୍ୟ ଅନୁଷ୍ଠାନରେ ଯୋଗ ଦେଲେ । ବାଳକୃଷ୍ଣ ଦାଶ ଓ ଭିକାରୀ ବଳ ନବ ପ୍ରତିଷ୍ଠିତ ଉତ୍କଳ ସଂଗୀତ ମହାବିଦ୍ୟାଳୟରେ, ରାଖାଲ୍ ମହାନ୍ତି କଟକର ଅଲ୍ ଇଣ୍ଡିଆ ରେଡ଼ିଓରେ ଯୋଗ ଦେଲେ । ୧୯୬୭ରେ ମାୟାଧର ରାଉତ ଓଡ଼ିଶା ଛାଡ଼ି ଦିଲ୍ଲୀ ଚାଲିଗଲେ ।

କ୍ରମଶଃ କେଳୁଚରଣଙ୍କୁ ସ୍ଥାନୀୟ ପରିବେଶ ଅସ୍ୱସ୍ତିକର ଲାଗିଲା । ଭାରତର ବିଭିନ୍ନ ସ୍ଥାନକୁ ଯାଇ ବୃହତ୍ତର ପରିବେଶରେ କାର୍ଯ୍ୟ କରିବାର ସ୍ୱାଧୀନତା ସେ ଖୋଜିଲେ । ଆଉ ଗୋଟିଏ କଥା ସେ ଅନୁଭବ କଲେ, ସେ ଅଯଥାରେ ଈର୍ଷା ଓ ଦ୍ୱେଷର ଶିକାର ହେଉଛନ୍ତି । ତାଙ୍କର ସଫଳତା କାହା କାହା ମନରେ ଈର୍ଷା ଭାବ ସୃଷ୍ଟି କରୁଥିଲା । ଦିନେ ବାବୁଲାଲ୍ କଥା ପ୍ରସଙ୍ଗରେ କହିଲେ, କେହି କେହି ମନ୍ତବ୍ୟ ଦେଉଛନ୍ତି, 'ଆମେ ଖଟୁଛୁ କିନ୍ତୁ କେଳୁଚରଣ ଅର୍ଥ ଉପାର୍ଜନ କରୁଛନ୍ତି ।' କେଳୁଚରଣ କଳାବିକାଶ କେନ୍ଦ୍ର ବାହାରେ ବିଭିନ୍ନ କାର୍ଯ୍ୟକ୍ରମରେ ଭାଗନେବା କଥା ଏଥିରେ ସୂଚିତ ହେଉଥିଲା । ଏହାପରେ କେଳୁଚରଣ କଳାବିକାଶ କେନ୍ଦ୍ର ଛାଡ଼ିବାକୁ ସ୍ଥିର କଲେ; କଳାବିକାଶ କେନ୍ଦ୍ର ସହିତ ତଥାପି କିଛି ସଂପର୍କ ରଖିଲେ । ୧୯୬୭ରେ ପ୍ରାୟ ଦୁଇ ବର୍ଷ ଗ୍ରୀଷ୍ମ ଛୁଟିରେ ସେ ସଂକ୍ଷିପ୍ତ ନୃତ୍ୟ କାର୍ଯ୍ୟକ୍ରମ ପରିଚାଳନା କରି ବହୁ ଛାତ୍ରଛାତ୍ରୀଙ୍କୁ ତାଲିମ୍ ଦେଇଥିଲେ । ଏହାଫଳରେ ବିଭିନ୍ନ ଅଞ୍ଚଳରେ ଭ୍ରମଣ ପାଇଁ ତାଙ୍କୁ ସୁଯୋଗ ମିଳିଥିଲା ।

•••

## ଛାତ୍ରଛାତ୍ରୀଙ୍କ ମାଧ୍ୟମରେ ନୃତ୍ୟ ପରିବେଷଣ

ସପରିବାର ପିଟପ୍ ସାହୀର ଏକ ଛୋଟ ଭଡ଼ାଘରେ ରହୁଥିବା ସମୟରେ କେଳୁଚରଣ ବେମାର ପଡ଼ିଲେ । ମେରିଆ ବଜାରରେ ଅଳ୍ପ ଦିନ ଭଡ଼ାରେ ରହିବା ପରେ ସେ ଏହି ଘରକୁ ଆସିଥିଲେ । ନିଜର ଘରଟିଏ ବନାଇବା ପାଇଁ ସେ ଛୋଟ ଜମି ଖଣ୍ଡିଏ ଖୋଜୁଥିଲେ । ମେରିଆ ବଜାରରେ ରହୁଥିବା ସମୟରେ ତାଙ୍କର ଜଣେ ସଂପର୍କୀୟ ତାଙ୍କୁ ସନ୍ତସନ୍ତିଆ ଜମିଟିଏ ଦେଖାଇଥିଲେ । ବିକ୍ରି ହେବାକୁ ଥିବା ଏହି ଜମିଟି ଥିଲା ପ୍ରାୟ ଷାଠିଏ ଫୁଟ ଲମ୍ୱା ଓ ପଚାଶ ଫୁଟ ଚଉଡ଼ା, କଟକ ବସ୍‌ଷ୍ଟାଣ୍ଡ ନିକଟ ସାଆନ୍ତ ସାହୀରେ । ଏଥିପାଇଁ ଆବଶ୍ୟକ ଏକ ହଜାର ପାଞ୍ଚ ଶହ ଟଙ୍କା ସଞ୍ଚୟ କରିବା ଆରମ୍ଭ କରିଦେଇଥିଲେ କେଳୁଚରଣ । ସୁସ୍ଥ ହେବା ପରେ, ପ୍ରାୟ ବର୍ଷକ ପରେ ତାଙ୍କର ସଞ୍ଚିତ ଅର୍ଥ ଓ କଳାବିକାଶ କେନ୍ଦ୍ରର ଋଣ ନେଇ ସେ ଜମିଟି କିଣିଲେ ।

୧୯୬୧ ପରେ ନିଜ ଘର ତିଆରି ତଦାରଖ କରିବା ପାଇଁ ସେ ଖୁଣ୍ଟିଆ ନାମକ ଜଣେ ବ୍ୟକ୍ତିଙ୍କ ଘର ଭଡ଼ାନେଲେ । ଖୁଣ୍ଟିଆ ଥିଲେ ଜାତିରେ ଗଉଡ଼ । କେଳୁଚରଣଙ୍କ ଜମି ନିକଟରେ ଛୋଟ ଗଳିଟିରେ ସେ ରହୁଥିଲେ । ସେତେବେଳେ ସେ ଅଞ୍ଚଳରେ ଆଉ କୌଣସି ଘର ନଥିଲା । ନିଜ ଘରକୁ ଆସିବା ଯାଏଁ କେଳୁଚରଣ ପ୍ରାୟ ଚାରି ବର୍ଷ ଖୁଣ୍ଟିଆଙ୍କର ଏକ ବଖୁରିଆ ଆଜ୍‌ବେଷ୍ଟସ୍ ଘରେ ରହିଲେ । ସେ ଘରପାଖରେ ଥାଏ ଏକ ବିରାଟ ନଡ଼ିଆ ଗଛ । ଘରଟି ଥାଏ ନିହାତି ଖାଲୁଆ ଜାଗାରେ, ବର୍ଷସାରା ସେଠାରେ ପାଣି ଜମିଥାଏ । କେଳୁଚରଣ ଅନେକ ସମୟରେ ସେଠାରେ ମାଛ ଧରୁଥିଲେ ଓ ପରିବାର ପାଇଁ ଆବଶ୍ୟକୀୟ ମାଛ ପାଇପାରୁଥିଲେ । ଥରେ ତାଙ୍କ ବନ୍‌ସୀରେ କ'ଣ ଗୋଟାଏ ଲାଗିଲା କେଜାଣି ସେ ନିଜେ ପାଣି ଭିତରକୁ ଟାଣି ହୋଇଗଲେ । ସେହିଦିନୁ ସେ ମାଛ ଧରିବା ଛାଡ଼ିଦେଲେ ।

ଘର ତିଆରି କରିବା ଆଗରୁ ଖାଲୁଆ ଜମିକୁ ଉଚ୍ଚ କରିବା ପାଇଁ ତାଙ୍କୁ ଜମିକୁ ବାଲିରେ ପୋତିବାକୁ ହେଲା । ଏହା ଥିଲା ଏକ କଠିନ କାର୍ଯ୍ୟ । ଥରେ ପ୍ରବଳ ବର୍ଷା ପରେ ଗୋଟିଏ ବାଲି ଟ୍ରକ୍ ଜମି ଭିତରକୁ ଗଳି ପଡ଼ିଲା, ଆଉ ଉପରକୁ ଉଠାଇ ହେଲାନାହିଁ । କେଳୁଚରଣ ଆଉ ଗୋଟିଏ ଟ୍ରକ୍‌ର ଡ୍ରାଇଭର୍‌କୁ ଟ୍ରକ୍‌ଟିକୁ ଉପରକୁ ଉଠାଇବା ଏବଂ ଟ୍ରକ୍‌ର ଭାଙ୍ଗିଯାଇଥିବା ଅଂଶ ପାଇଁ ଏକ ହଜାର ଟଙ୍କା ଦେଲେ । ତାଙ୍କ ହାତରେ ଆଉ କିଛି ପଇସା ରହିଲା ନାହିଁ । କଳାବିକାଶ କେନ୍ଦ୍ରରୁ ଆଉ କିଛି ଟଙ୍କା ଋଣ ଆଣି ସେ ତାଙ୍କର ଘର ନିର୍ମାଣ ଆରମ୍ଭ କଲେ ।

ଦୁଇମାସ ମଧ୍ୟରେ ବାଉଁଶ ଓ କାଠରେ ଘରଟି ତିଆରି ହୋଇଗଲା । କିନ୍ତୁ ଦୁଇ ଥର ପ୍ରଚଣ୍ଡ ବର୍ଷାରେ ତାହା ଭାଙ୍ଗିଗଲା । ପ୍ରଥମ ଥର ବର୍ଷା ଓ ପବନରେ ଦୁଇ ରାତି ଭିତରେ ସାହୀର ସବୁ ଛାତ ଉଡ଼ିଗଲା । କେଳୁଚରଣ ଓ ତାଙ୍କ ପରିବାରର ଅନ୍ୟମାନେ ଘର ହତା ଭିତରେ ଥିବା ନଡ଼ିଆ ଗଛକୁ ଜାବୁଡ଼ି ଧରି କୌଣସିମତେ ରକ୍ଷା ପାଇଗଲେ । ତା'ପରେ ସେମାନେ ନିଜର ସବୁ ଜିନିଷପତ୍ର ନେଇ ସଂଯୁକ୍ତାଙ୍କ ଘରେ ପହଞ୍ଚି ଗୋଟିଏ ସପ୍ତାହ ରହିଲେ । ଏପରି ଝଡ଼ବର୍ଷା ଫଳରେ କେଳୁଚରଣଙ୍କର ଅନେକ କାଗଜପତ୍ର ନଷ୍ଟ ହୋଇଗଲା । ସେଥିରେ ଥିଲା ଲକ୍ଷ୍ମୀପ୍ରିୟାଙ୍କର କେତେକ ଆବଶ୍ୟକୀୟ ସାର୍ଟିଫିକେଟ୍ । ଦ୍ୱିତୀୟ ଥର ଝଡ଼ବର୍ଷା ବେଳକୁ କେଳୁଚରଣ ଥିଲେ ରାଉରକେଲାରେ । ସେଠାରୁ ଫେରି ସେ ଦେଖିଲେ, ସେ ତିଆରି କରୁଥିବା ଘରଟିର ଚିହ୍ନବର୍ଣ୍ଣ ନାହିଁ । କେବଳ ଗୋଟିଏ ଖମ୍ବ ଅଛି ଓ ତା' ଉପରେ ବସିଛି ଶାଗୁଣାଟିଏ । ସେ ଇଟା ଓ ସିମେଣ୍ଟରେ ପୁଣି ଥରେ ଘର ତୋଳିବା ଆରମ୍ଭ କଲେ । ଦୁଇଟି ବଖରା, ଗୋଟିଏ ରୋଷେଇ ଘର, ଘରର ଛାତ ଚାଳରେ ତିଆରି ହେଲା । ଶୋଇବା ଘର ବଖରା ଦୁଇଟି କଂକ୍ରିଟ୍‌ରେ ନିର୍ମିତ ହେଲା ।

ନିଜ ଘର ତିଆରି କରିବା ଆଗରୁ ସେ ତାଙ୍କ ମାମୁଁ ଆର୍ତ୍ତବନ୍ଧୁ ମହାରଣାଙ୍କୁ ମନ୍ଦିରଟିଏ ନିର୍ମାଣ କରିବାରେ ସାହାଯ୍ୟ କରିଥିଲେ । ସେତେବେଳେ ସେ ନିର୍ମାଣ କାର୍ଯ୍ୟରେ ଚୂନ ବ୍ୟବହାର କରିଥିଲେ । ଘର ତୋଳିବା ଉପକରଣ ସହିତ ତାଙ୍କର ଆଗରୁ ପରିଚୟ ଥିଲା ।

ଇଟା ଓ ସିମେଣ୍ଟରେ ଗୃହ ନିର୍ମାଣ କରିବାରେ ତାଙ୍କର ମନ୍ଦିର ନିର୍ମାଣ କରିବା ସମୟରୁ ଯଥେଷ୍ଟ ଆଗ୍ରହ ଥିଲା । ଅବଶ୍ୟ ନୃତ୍ୟ ଥିଲା ତାଙ୍କର ପ୍ରଥମ ପସନ୍ଦ, କିନ୍ତୁ ଗୃହ ନିର୍ମାଣ ପଦ୍ଧତି ମଧ୍ୟ ତାଙ୍କୁ ଆକୃଷ୍ଟ କରୁଥିଲା । ଗୃହର ତୋରଣ, ପାଚେରୀ, ଗୃହର ପରିବର୍ଦ୍ଧନ– ସବୁଥିରେ ସେ ଏକ ନିର୍ଦ୍ଦିଷ୍ଟ ରୀତି ବା ଛନ୍ଦ ଲକ୍ଷ୍ୟ କରୁଥିଲେ । ପ୍ରତି କାର୍ଯ୍ୟରେ ସେ କିଛି ନୂତନତ୍ୱ ଆବିଷ୍କାର କରୁଥିଲେ ଏବଂ ବାସ୍ତବ ପରିସ୍ଥିତିକୁ ଅନୁଧ୍ୟାନ କରି ସମାଧାନର ପନ୍ଥା ନିର୍ଣ୍ଣୟ କରୁଥିଲେ । କୌଣସି ଇଞ୍ଜିନିୟରଙ୍କ ପରାମର୍ଶ ନନେଇ ବମ୍ବେରେ ଦେଖିଥିବା ଗୋଟିଏ କୋଠା ଛାତର ଶୈଳୀରେ ସେ ତାଙ୍କ ଗୃହର ଛାତ ପକାଇଥିଲେ ।

ମିସ୍ତ୍ରୀମାନଙ୍କ ସହିତ କିପରି ସମ୍ପର୍କ ରଖିବାକୁ ହୁଏ, ସେ ଜାଣିଥିଲେ । ସେ ନିଜେ ସେମାନଙ୍କ ମଧ୍ୟରୁ ଜଣେ ବୋଲି ନିଜକୁ ମନେ କରୁଥିଲେ ଓ ସେମାନଙ୍କ ସହିତ ମିଶି କାର୍ଯ୍ୟ କରୁଥିଲେ । ସିମେଣ୍ଟ ଗୋଳାଇବା, ଇଟା ଯୋଡ଼ିବା, ଛାତ ପକାଇବା, କାନ୍ଥ ପଲସ୍ତରା କରିବା – ମିସ୍ତ୍ରୀମାନଙ୍କ ଅନୁପସ୍ଥିତିରେ ମଧ୍ୟ ସେ ଏସବୁ କରିପାରୁଥିଲେ ।

ଗୃହ ନିର୍ମାଣର କେତେକ ବର୍ଷ ପରେ ସପ୍ତମ ଦଶକର ପ୍ରଥମ ଭାଗରେ ସେ ଗୃହ ନିକଟରେ ନୃତ୍ୟଶାଳାଟିଏ ନିର୍ମାଣ କରିବାକୁ ସ୍ଥିର କଲେ । କେବଳ ବାଉଁଶରେ ଛାତଟି ତିଆରି କରିବାକୁ ସେ ପରିକଳ୍ପନା କଲେ । ଏହା କିନ୍ତୁ ସହଜ ନଥିଲା । ବାଉଁଶଗୁଡ଼ିକ


ତିନି ବର୍ଷ ବୟସରେ ରତିକାନ୍ତ

ଖୁବ୍ ଭଲ ଭାବରେ ଛନ୍ଦା ହେବା ଓ ବିନା ଆଶ୍ରୟରେ ତିଷ୍ଠି ରହିବା ଆବଶ୍ୟକ ଥିଲା । ମିସ୍ତ୍ରୀମାନେ ଏପରି କାର୍ଯ୍ୟ କରିବାକୁ ରାଜିହେଲେ ନାହିଁ । ସେମାନେ କହିଲେ, କେଳୁଚରଣ ଆଣିଥିବା ବାଉଁଶଗୁଡ଼ିକ ବିଶେଷ ମଜବୁଦ୍ ନୁହେଁ । କେଳୁଚରଣ ନିଜେ ଚାରିଦିନ ମଧ୍ୟରେ ଛାତଟି ପ୍ରସ୍ତୁତ କଲେ । ଛାତଟି ଏତେ ସୁନ୍ଦର ଭାବରେ ପ୍ରସ୍ତୁତ ହୋଇଛି ଦେଖି ମିସ୍ତ୍ରୀମାନେ ଆଶ୍ଚର୍ଯ୍ୟ ହୋଇଗଲେ ।

ଚଟାଣ ନିର୍ମାଣ ହେବା ସମୟରେ ଏକ ଶୁଭ୍ର ପଦ୍ମର ଛବି ଚଟାଣର କେନ୍ଦ୍ରରେ ଅଙ୍କନ କରିବାକୁ ସେ କଳ୍ପନା କଲେ । ଏହା କିପରି କରିବାକୁ ହେବ ତାହା ସେ ମିସ୍ତ୍ରୀମାନଙ୍କୁ ଶିଖାଇଦେଲେ । ଖଣ୍ଡେ କାଗଜକୁ ସେ ପଦ୍ମ ପାଖୁଡ଼ା ଆକାରରେ କାଟିଲେ । ଚଟାଣ କେନ୍ଦ୍ରରେ ଓଦା ସିମେଣ୍ଟ ଉପରେ ତାହାକୁ ଥାପି ପୁଣି ଉଠାଇ ଆଣିଲେ ଓ ସେହି ଅଂଶରେ ଅଳ୍ପ ଖାଲ କରି ଧଳା ସିମେଣ୍ଟ ବୋଳିଦେଲେ । ଏହିପରି କରି ସେ ଚଟାଣରେ ବିନ୍ଦୁଟିଏ ସୃଷ୍ଟି କଲେ । ବର୍ଷ ପରେ ବର୍ଷ ନର୍ତ୍ତକୀମାନଙ୍କ କଳାର ବିକାଶ ଯେପରି ଏହି ବିନ୍ଦୁଟି ହିଁ ଲକ୍ଷ୍ୟ କରିଥିଲା !

ନୂଆ ଘରଟି ନିର୍ମିତ ହେବା ପରେ ୧୯୬୫ରେ କେଳୁଚରଣ ପୂଜା ଘରଟିଏ ତିଆରି କଲେ । ସେହି ବର୍ଷ ତାଙ୍କର ପୁଅ ରତିକାନ୍ତ ଜନ୍ମଗ୍ରହଣ କଲା । ତା'ର ଏକୋଇଶିଆକୁ କେଳୁଚରଣ ଘର ଅଗଣାର ଗୋଟିଏ କୋଣରେ ପୂଜା ଘରଟି ନିର୍ମାଣ କଲେ । ଏପରି କରିବା ତାଙ୍କ ପାଇଁ ସ୍ୱାଭାବିକ ଥିଲା ।'ଘର ପାଇଁ ଜମିଟି କିଣିବା ପରେ ପରେ ସେହି ସ୍ଥାନରେ ସେ ସାପଟିଏ ଦେଖିଥିଲେ । ଘରର ମୂଳଦୁଆ ପକାଇବା ସମୟରେ ପୁଣି ଥରେ ସେହି ସାପଟି ବାହାରିଲା । କେଳୁଚରଣ ନିଜେ ତାଙ୍କର ପୂଜାଘର ପାଇଁ ଦୁଆରବନ୍ଧ ତିଆରି କରିଥିଲେ, ସେଥିରେ ରଙ୍ଗଦେଇ କାନ୍ଥରେ ଲଗାଇଥିଲେ । ସେହିଠାରେ ସେ ମହାପ୍ରଭୁ ଜଗନ୍ନାଥ, ତାଙ୍କର ଜ୍ୟେଷ୍ଠଭ୍ରାତା ବଳଭଦ୍ର ଓ ଭଗିନୀ ସୁଭଦ୍ରାଙ୍କର ନିୟମିତ ପୂଜାର୍ଚ୍ଚନା କଲେ । ତାଙ୍କର ମା' ଗାଆଁ ଛାଡ଼ି କଟକରେ ରହିବା ପାଇଁ ଆସିବା ସମୟରେ ଏହି ଠାକୁରଙ୍କର ପ୍ରତିମାଗୁଡ଼ିକ ଆଣିଥିଲେ ।

୧୯୬୬ ମସିହାର ଶେଷ ଭାଗରେ ଦିନେ ସେ ଟାବୁର ବଖରାରେ ଥାକଟିଏ ତିଆରି କରୁଛନ୍ତି, ଦିଲ୍ଲୀରୁ ଟେଲିଗ୍ରାମ୍‌ଟିଏ ପାଇଲେ । ସିମେଣ୍ଟ ଲାଗିଥିବା ହାତରେ ଟେଲିଗ୍ରାମ୍‌ଟି ଅନୁବାଦ କରିବା ପାଇଁ ସେ ପଡ଼ୋଶୀଙ୍କ ଘରକୁ ଗଲେ । ଦିଲ୍ଲୀର ସଙ୍ଗୀତ

ନାଟକ ଏକାଡେମୀ ତାଙ୍କୁ ନୃତ୍ୟ ପାଇଁ ଜାତୀୟ ପୁରସ୍କାର ପ୍ରଦାନ କରିଥିଲେ । ଏ ସମ୍ବାଦରେ ସେ ସ୍ତମ୍ଭୀଭୂତ ହୋଇଗଲେ ।

୧୯୬୭ ଜାନୁୟାରୀରେ ଦିଲ୍ଲୀରେ ଅନୁଷ୍ଠିତ କାର୍ଯ୍ୟକ୍ରମରେ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀଙ୍କଠାରୁ ସେ ପୁରସ୍କାର ଗ୍ରହଣ କରିବାର ଥିଲା । ଓଡ଼ିଶୀ ନୃତ୍ୟ ନିମନ୍ତେ ପ୍ରଥମ ଥର ପାଇଁ ଏଭଳି ସମ୍ମାନ ପ୍ରଦାନ କରାଯାଉଥିଲା । କେଳୁଚରଣଙ୍କର ବାପାଙ୍କ କଥା ମନେ ପଡ଼ିଲା । ଅଶ୍ରୁପୂର୍ଣ୍ଣ ନୟନରେ ସେ ଭଗବାନ ଶିବଙ୍କ ପ୍ରତିମୂର୍ତ୍ତି ସମ୍ମୁଖରେ ସାଷ୍ଟାଙ୍ଗ ପ୍ରଣିପାତ କରି ତାଙ୍କର ଗୁରୁ ବଳଭଦ୍ର ସାହୁ, ମୋହନସୁନ୍ଦର ଦେବ ଗୋସ୍ୱାମୀ, ଦୟାଲ୍ ଶରଣ ଓ ପଙ୍କଜ ଚରଣ ଦାସଙ୍କୁ ସ୍ମରଣ କଲେ । ସେ ଚିନ୍ତାକଲେ, ଏହି ପୁରସ୍କାର ପ୍ରଥମେ ତାଙ୍କୁ ପ୍ରଦାନ କରାନଯାଇ ତାଙ୍କର ଗୁରୁମାନଙ୍କୁ ପ୍ରଦାନ କରାଯିବା ଠିକ୍ ହୋଇଥା'ନ୍ତା । ଓଡ଼ିଶୀ ନୃତ୍ୟ ପାଇଁ ସେ ଏହି ସମ୍ମାନ ଗ୍ରହଣ କଲେ । ସେ ମନେକଲେ, ସେ ଏହି ନୃତ୍ୟର ଜଣେ ସେବକ ମାତ୍ର ।

ସେ ସମୟରେ ଧୀରେନ୍ଦ୍ରନାଥ ପଟ୍ଟନାୟକ ଥିଲେ ସଙ୍ଗୀତ ନାଟକ ଏକାଡେମୀର ଜଣେ ସଦସ୍ୟ । ସେ ଏହି ପୁରସ୍କାର ପାଇଁ କେଳୁଚରଣଙ୍କ ନାମ ସୁପାରିଶ କରିଥିଲେ । ସେ କହନ୍ତି, 'ଏହି ପୁରସ୍କାର ପ୍ରାପ୍ତି ସମ୍ବାଦରେ କେଳୁଚରଣ ଆନନ୍ଦରେ ଉଲ୍ଲସିତ ହୋଇପଡ଼ିଥିଲେ ।

'ଦିନେ ମୁଁ ତାଙ୍କ ଘରେ ପହଞ୍ଚି ତାଙ୍କର ବାୟୋଡାଟା ବା କାର୍ଯ୍ୟପଞ୍ଜିକାଟିଏ ମାଗିଲି । ତାଙ୍କର ସେପରି କିଛି ନଥିଲା । ମୁଁ ନିଜେ ତାଙ୍କର ବାୟୋଡାଟାଟି ପ୍ରସ୍ତୁତ କଲି ।



କେଳୁଚରଣ, ଶିରିନାନୀ ଓ ଲକ୍ଷ୍ମୀପ୍ରିୟା

କିନ୍ତୁ କ'ଣ ପାଇଁ ଏହାର ଆବଶ୍ୟକତା ତାଙ୍କୁ କହିଲି ନାହିଁ । ତେଣୁ ଏଭଳି ପୁରସ୍କାର ଲାଭ କରିବା ତାଙ୍କ ପାଇଁ ସଂପୂର୍ଣ୍ଣ ଅପ୍ରତ୍ୟାଶିତ ଥିଲା । ହାତରେ ଟେଲିଗ୍ରାମ୍‌ଟି ଧରି ସେ ଆମ ଘରକୁ ଆସିଲେ ଓ ମୋତେ କୁଣ୍ଢାଇ ପକାଇଲେ । ତାଙ୍କର ଦୁଇ ଚକ୍ଷୁ ଲୋତକପୂର୍ଣ୍ଣ ଥିଲା । ଏହି ପୁରସ୍କାର ତାଙ୍କୁ ଯଥେଷ୍ଟ ଆତ୍ମବିଶ୍ୱାସ ଦେଇଥିଲା ।'

ଦିଲ୍ଲୀରେ ପୁରସ୍କାର ପ୍ରଦାନ ଉତ୍ସବରେ କେଳୁଚରଣ କୌଣସି ନୃତ୍ୟ ପରିବେଷଣ କରି ନଥିଲେ । ଏଥିରେ ତାଙ୍କର ସବୁଠାରୁ ପ୍ରତିଭାମୟୀ ଶିଷ୍ୟା ସଂଯୁକ୍ତା ବଟୁ ଓ ଅଷ୍ଟପଦୀ (ପଶ୍ୟତି ଦିଶି ଦିଶି) ପରିବେଷଣ କରିଥିଲେ । ଏଥିରେ ସଙ୍ଗୀତ ଗାନ କରିଥିଲେ ବାଳକୃଷ୍ଣ ଦାଶ ।

ସେହିବର୍ଷ ମାର୍ଚ୍ଚ ମାସରେ ଜୟଦେବଙ୍କ ଗୀତଗୋବିନ୍ଦ ସଂପର୍କରେ ଦିଲ୍ଲୀରେ ଆଲୋଚନାଚକ୍ରଟିଏ ଅନୁଷ୍ଠିତ ହେବାର ଥାଏ । ଉଭୟ ସଙ୍ଗୀତ ନାଟକ ଏକାଡେମୀ ଓ ଲଳିତ କଳା ଏକାଡେମୀ ଏହାର ଆୟୋଜନ କରୁଥାନ୍ତି । ଉଦ୍ଦେଶ୍ୟ ଥାଏ – ଗୀତଗୋବିନ୍ଦ କାବ୍ୟକୁ ଆଧାର କରି ସଙ୍ଗୀତ, ନୃତ୍ୟ ଓ ଚିତ୍ର ଉପସ୍ଥାପନ କରିବା । ଜୟଦେବଙ୍କ ଅଷ୍ଟପଦୀକୁ କେନ୍ଦ୍ର କରି କାର୍ଯ୍ୟକ୍ରମଟି ପରିଚାଳିତ ହେବାକୁ ଥାଏ । ଏଥିରେ ଭାଗନେବା ପାଇଁ ବିଭିନ୍ନ ଶାସ୍ତ୍ରୀୟ ନୃତ୍ୟର ଗବେଷକ ଓ ଶିଳ୍ପୀମାନଙ୍କୁ ନିମନ୍ତ୍ରଣ କରାଯାଇଥାଏ ।

ଆଲୋଚନାଚକ୍ର ପୂର୍ବରୁ କଟକ ଚଣ୍ଡୀମନ୍ଦିର ନିକଟସ୍ଥ କୁକୁମଙ୍କ ପୈତୃକ ଗୃହରେ ଅଷ୍ଟପଦୀକୁ ଆଧାର କରି ଓଡ଼ିଶୀ ନୃତ୍ୟର ଦୁଇଟି ଅଂଶ ସଂରଚିତ ହୋଇଥାଏ । କେଳୁଚରଣ ସନ୍ଧ୍ୟାରେ ବେଶ୍ କିଛି ସମୟ ସେଠାରେ ସଂସ୍କୃତ ପଣ୍ଡିତ ପଞ୍ଚାନନ କରଙ୍କ ସହିତ 'ସଖୀ ହେ କେଶିମଥନମୁଦାରଂ' ଏବଂ 'ଧୀରସମୀରେ ଯମୁନାତୀରେ' ପଦ ସଂପର୍କରେ ଆଲୋଚନା କରୁଥା'ନ୍ତି । କୁକୁମଙ୍କ ମା' କେଳୁଚରଣଙ୍କ ସୁବିଧା ପାଇଁ ତାହା ଓଡ଼ିଆରେ ଲେଖିଦେଉଥା'ନ୍ତି ।

ସେତେବେଳେ ବେଶୀ ରାତିରେ ଘରକୁ ଫେରିବା ପାଇଁ ସାଇକେଲ୍ ରିକ୍ସାଟିଏ ପାଇବା ସହଜ ନଥିଲା । କେଳୁଚରଣଙ୍କୁ ଚାଲି ଚାଲି ଘରକୁ ଫେରିବାକୁ ହେଉଥିଲା । ଘରେ ପହଞ୍ଚିଲା ବେଳକୁ କେବେ କେବେ ପାହାନ୍ତା ହୋଇଯାଉଥିଲା । ଘରକୁ ଫେରିବା ବାଟରେ କେଳୁଚରଣ କୃଷ୍ଣଙ୍କର ବିଭିନ୍ନ ଅଙ୍ଗଭଙ୍ଗୀ କଳ୍ପନା କରୁଥିଲେ – ଫୁଲଶଯ୍ୟାରେ ଆଉଜି ବସିବା, ରାଧାଙ୍କ ପାଇଁ କୋମଳ ପତ୍ର ସଂଗ୍ରହ କରିବା, ବ୍ୟାକୁଳ ଭାବରେ ରାଧାଙ୍କ ପ୍ରତୀକ୍ଷା କରିବା, ଧୀର ପବନରେ ରାଧାଙ୍କ ଆଗମନର ଭ୍ରମ ସୃଷ୍ଟି ହେବା, ଇତ୍ୟାଦି । ପରଦିନ କଳ୍ପନାର ଏହି ଚିତ୍ରସବୁକୁ ସେ ବାସ୍ତବ ରୂପ ଦେଉଥିଲେ ।

କୁକୁମଙ୍କ ପରିବାରର ସମସ୍ତେ ଏହି ନୃତ୍ୟ କାର୍ଯ୍ୟକ୍ରମରେ ଭାଗ ନେଉଥିଲେ । କୁକୁମଙ୍କ ମା' ପଚାରି ବୁଝୁଥିଲେ– ପରଦିନ କେଉଁ ପିଠା ପ୍ରସ୍ତୁତ କରିବେ; ବାପା କେଳୁଚରଣଙ୍କ ନିକଟରେ ବସି ତାଙ୍କର ମତାମତ ଦେଉଥିଲେ । କୁକୁମ କିନ୍ତୁ ଏସବୁଥିରେ

ଆଗ୍ରହୀ ନଥିଲେ । ସେ କେଳୁଚରଣଙ୍କ ସମସ୍ତ ଅଙ୍ଗଭଙ୍ଗୀ ଓ ମୁଦ୍ରା ଅନୁକରଣ କରୁଥିଲେ ମାତ୍ର । ଦିନେ ସେ 'ପୀନପୟୋଧରପରିସରମର୍ଦ୍ଦନ, ଚଞ୍ଚଳ କରଯୁଗଶାଳୀ' ପଦର ଅର୍ଥ ପଚାରିଲେ । କେହି କିଛି ଉତ୍ତର ନ ଦେବାରୁ ସେ ନୀରବ ରହିଲେ ।

ଦିନେ ଏହିପରି ନୃତ୍ୟ କାର୍ଯ୍ୟକ୍ରମ ଚାଲିଥିବା ସମୟରେ କାଳୀଚରଣ ପଟ୍ଟନାୟକ ଆସି ସେଠାରେ ପହଞ୍ଚିଗଲେ । ସେ ଜାଣିବାକୁ ଚାହୁଁଥିଲେ – ଦିଲ୍ଲୀ ଆଲୋଚନାଚକ୍ରରେ ଦେବାକୁ ଥିବା ତାଙ୍କର ମନ୍ତବ୍ୟ ସହିତ କେଳୁଚରଣଙ୍କ ପରିବେଷିତ ନୃତ୍ୟ ମେଳ ଖାଉଛି କି ନାହିଁ । କେଳୁଚରଣଙ୍କ 'ଧୀରସମୀରେ' ନୃତ୍ୟରୂପ ଦେଖିବା ପରେ ସେ ପଚାରିଲେ, 'କୃଷ୍ଣ ଏପରି ଅଭିନୟ କରିବାର କଳ୍ପନାର ଉତ୍ସ କ'ଣ ?' କେଳୁଚରଣ କହିଲେ, ସେ ଜଣେ ଚିତ୍ରକାର ପୁଅ । ତେଣୁ ଏପରି ଅଭିନୟ କଳ୍ପନା ତାଙ୍କ ପକ୍ଷରେ କଠିନ ନୁହେଁ । ତା'ପରଦିନ କାଳୀଚରଣ ତାଙ୍କୁ ଗୃହକୁ ନିମନ୍ତ୍ରଣ କଲେ । ତାଙ୍କୁ ଗୋଟିଏ ବିରାଟ ତାଳପତ୍ର ପୋଥି ଦେଖାଇଲେ । ସେଥିରେ ଅନେକଗୁଡ଼ିଏ ଚିତ୍ର ଥିଲା । କାଳୀଚରଣ କହିଲେ, 'ତୁମେ ଯଦି ସତରେ ଚିତ୍ରକାର ପୁଅ, ତେବେ ଏହି ପାଣ୍ଡୁଲିପିଟି କେତେ ପୁରୁଣା ମୋତେ କୁହ ।'

ପାଣ୍ଡୁଲିପିଟିରେ ଗୀତଗୋବିନ୍ଦର ପଦାବଳୀ ଲିଖିତ ହୋଇଥିଲା । କେଳୁଚରଣ ବାରମ୍ବାର ପୋଥିଟିକୁ ମୁଣ୍ଡରେ ଲଗାଇ ଓ ଛାତି ଆଗରେ ଧରି ସମ୍ମାନ ଜଣାଇଲେ । ତାହାପରେ ଚିତ୍ରଗୁଡ଼ିକୁ ଭଲ ଭାବରେ ନିରୀକ୍ଷଣ କଲେ । ସେ ଲକ୍ଷ୍ୟ କଲେ, କୃଷ୍ଣଙ୍କର ଯେପରି ଅଙ୍ଗଭଙ୍ଗୀ ସେ କଳ୍ପନା କରିଥିଲେ, ପୋଥିଟିରେ ଅବିକଳ ସେହିଭଳି ଅଙ୍ଗଭଙ୍ଗୀ ଅଙ୍କିତ ହୋଇଛି । କପାଳରୁ ସ୍ୱେଦ ବୁନ୍ଦାଏ ନେଇ ସେ ପୋଥିର ଗୋଟିଏ ଚିତ୍ର ଉପରେ ଘଷିଲେ ଓ କହିଲେ, ଏ ପୋଥିଟି ମାତ୍ର ଦୁଇ ତିନି ବର୍ଷର ପୁରୁଣା । ଏହାପରେ କାଳୀଚରଣ ତାଙ୍କୁ ଆଉ ଗୋଟିଏ ପୋଥି ଦେଇ, ଏହା କେତେ ପୁରୁଣା ପଚାରିଲେ । କେଳୁଚରଣ ପୁଣି ଥରେ ସେହିପରି କରି କହିଲେ, 'ଶହେ ବର୍ଷରୁ ଅଧିକ ।' କାଳୀଚରଣ ତାଙ୍କ ଉତ୍ତରରେ ସନ୍ତୁଷ୍ଟ ହେଲେ ।

ପୁରୁଣା ପୋଥି ଓ ନୂଆ ପୋଥି ମଧ୍ୟରେ ପାର୍ଥକ୍ୟ ଜାଣିବା କେଳୁଚରଣଙ୍କ ପକ୍ଷରେ କଠିନ ନଥିଲା । ବିଭିନ୍ନ ଯାତ୍ରା ସମୟରେ ଗାଆଁର ପଣ୍ଡିତମାନେ ଚିତ୍ରିତ ପୋଥି ବ୍ୟବହାର କରୁଥିଲେ । ପିଲାଦିନେ କେଳୁଚରଣ ସେହି ପୋଥିଗୁଡ଼ିକର ରଙ୍ଗିନ୍ ଚିତ୍ରଗୁଡ଼ିକ ପ୍ରତି ଆକୃଷ୍ଟ ହେଉଥିଲେ । ପୋଥିଗୁଡ଼ିକର ରଚନା ସମୟ କିପରି ନିର୍ଣ୍ଣୟ କରାଯାଏ, ତାହା କେଳୁଚରଣ ଗାଆଁର ବୟସ୍କ ଲୋକଙ୍କଠାରୁ ଶିଖିଥିଲେ ।

କୁଙ୍କୁମଙ୍କ ଦ୍ୱାରା ଜୟଦେବଙ୍କ ପଦାବଳୀର ଓଡ଼ିଶୀ ନୃତ୍ୟରେ ରୂପାୟନର ଲାଳିତ୍ୟ ଓ ପ୍ରକାଶଭଙ୍ଗୀ ଦିଲ୍ଲୀ କାର୍ଯ୍ୟକ୍ରମରେ ବେଶ୍ ପ୍ରଶଂସିତ ହୋଇଥିଲା । ପୂର୍ବୋକ୍ତ ସଂରଚନା ବ୍ୟତୀତ ସେ 'ଲଳିତଲବଙ୍ଗଲତାପରିଶୀଳନ' ଏବଂ 'ପଶ୍ୟତି ଦିଶି ଦିଶି'– ଦୁଇଟି ନୂତନ କାର୍ଯ୍ୟକ୍ରମ ପରିବେଷଣ କରିଥିଲେ । କୁଙ୍କୁମଙ୍କୁ ଆଲୋଚନାଚକ୍ରରେ ସମସ୍ତେ 'ଛୋଟ

ପଦ୍ମାବତୀ' ବୋଲି ଡାକୁଥିଲେ । ଉଭୟ ଗୁରୁ ମାୟାଧର ଓ କେଳୁଚରଣଙ୍କ ଅଭିନୟର କୌଶଳ ସେ ସଂପୂର୍ଣ୍ଣ ଭାବରେ ଶିଖିନେଇଥିଲେ । ତାଙ୍କର ନିରୀହ ଶିଶୁ ମୁଖମଣ୍ଡଳର ପ୍ରକାଶଭଙ୍ଗୀ ଓଡ଼ିଶୀ ନୃତ୍ୟର ଲାଳିତ୍ୟକୁ ତୀକ୍ଷ୍ଣ ଭାବରେ ପ୍ରକାଶ କରିପାରୁଥିଲା ।

ଏ ସମସ୍ତ ସଫଳତା ସତ୍ତ୍ୱେ ତା'ପରଦିନ ଏକ ଦୈନିକ ସମ୍ବାଦପତ୍ରରେ ଓଡ଼ିଶୀ ନୃତ୍ୟ ବିରୁଦ୍ଧରେ ରୁକ୍ମିଣୀ ଦେବୀ ଅରୁଣ୍ଡାଲେଙ୍କ କିଛି ମନ୍ତବ୍ୟ ପ୍ରକାଶ ପାଇଲା । ମନେହୁଏ ସେ ନୃତ୍ୟ ପରିବେଷଣ ସମୟରେ ଉପସ୍ଥିତ ଥିଲେ, କିନ୍ତୁ କିଛି ସମୟ ପରେ ସେଠାରୁ ଚାଲିଯାଇଥିଲେ । ତାଙ୍କର ମନ୍ତବ୍ୟ ଥିଲା– ନୃତ୍ୟର ଅଶ୍ଳୀଳତା ସଂପର୍କରେ । ତାଙ୍କ ମତରେ, ଆଦିରସ ଏତେ ସ୍ପଷ୍ଟ ଭାବରେ ନୃତ୍ୟରେ ପ୍ରଦର୍ଶିତ ହେବା ଉଚିତ ନୁହେଁ ।

ପରଦିନ ସଙ୍ଗୀତ ନାଟକ ଏକାଡେମୀର ସଂପାଦକ ସୁରେଶ ଅବସ୍ଥୀ ନିମନ୍ତ୍ରିତ ଦର୍ଶକମାନଙ୍କ ସମ୍ମୁଖରେ ଅଷ୍ଟପଦୀର କେତେକ ପଦ ତର୍ଜମା କରିବାକୁ କେଳୁଚରଣଙ୍କୁ ଅନୁରୋଧ କଲେ । କେଳୁଚରଣ 'ଦଶାବତାର'ର ପ୍ରଥମ ପାଞ୍ଚଟି ପଦର ଦୃଶ୍ୟ ବ୍ୟାଖ୍ୟା କଲେ ଏବଂ 'ଧୀର ସମୀରେ' ଅଭିନୟରେ ପ୍ରଦର୍ଶନ କଲେ । ଓଡ଼ିଶା ବାହାରେ ଏହା ବୋଧହୁଏ ଥିଲା କେଳୁଚରଣଙ୍କର ପ୍ରଥମ ଡେମୋନ୍‌ଷ୍ଟ୍ରେସନ୍ । ରୁକ୍ମିଣୀ ଦେବୀ ସେଠାରେ ଉପସ୍ଥିତ ନଥିଲେ ।

ଅଳ୍ପ କେତେ ବର୍ଷ ପରେ ୧୯୬୮ ଫେବୃୟାରୀରେ ସୋନାଲ୍ ମାନସିଂ ଚେନ୍ନାଇର କେତେକ ସଭାରେ ଓଡ଼ିଶୀ ନୃତ୍ୟ ପରିବେଷଣ କରିବା ପାଇଁ ନିମନ୍ତ୍ରିତ ହେଲେ । ସୋନାଲ୍ ୧୯୬୫ରୁ କେଳୁଚରଣଙ୍କଠାରୁ ଓଡ଼ିଶୀ ନୃତ୍ୟ ଶିକ୍ଷା କରୁଥିଲେ । ରୁକ୍ମିଣୀ ଦେବୀ ଚେନ୍ନାଇର ମ୍ୟୁଜିୟମ୍ ଥିଏଟର୍‌ରେ ସୋନାଲ୍‌ଙ୍କ ଓଡ଼ିଶୀ ନୃତ୍ୟ ଦେଖିଲେ । ଗୀତଗୋବିନ୍ଦର 'କୁରୁଯଦୁନନ୍ଦନଚନ୍ଦନଶିଶିରତରେଣକରେଣ ପୟୋଧରେ' ପଦ ଉପରେ ତାଙ୍କ ନୃତ୍ୟ କାର୍ଯ୍ୟକ୍ରମ କଳ୍ପିତ ହୋଇଥିଲା । ପଦଟି ବୋଧହୁଏ ଗୀତଗୋବିନ୍ଦର ସବୁଠାରୁ ଆଦିରସାତ୍ମକ । କୃଷ୍ଣଙ୍କ ସହିତ ମିଳିତ ହେବାପରେ ରାଧା ତାଙ୍କ ପ୍ରେମିକଙ୍କୁ ଅନୁରୋଧ କରୁଛନ୍ତି, ତାଙ୍କ ବକ୍ଷ ଦେଶକୁ ଚନ୍ଦନରେ ପ୍ରଲେପିତ କରନ୍ତୁ, ତାଙ୍କ ନେତ୍ରରେ କଜ୍ଜ୍ୱଳ ଲଗାଇ ଦିଅନ୍ତୁ, ତାଙ୍କ କେଶ ସଜାଇ ଦିଅନ୍ତୁ ଏବଂ ତାଙ୍କ କଟୀରେ ଅଳଙ୍କାର ମଣ୍ଡିତ କରନ୍ତୁ । ରୁକ୍ମିଣୀ ଦେବୀ ଏହା ପରେ ତାଙ୍କର ମତ ପରିବର୍ତ୍ତନ କଲେ । ଏଥିରେ ସେ କୌଣସି ଅଶ୍ଳୀଳତା ଲକ୍ଷ୍ୟ କଲେନାହିଁ, ବରଂ ନୃତ୍ୟଶିଳ୍ପୀ ଏବଂ ଗୁରୁଙ୍କୁ ଯଥେଷ୍ଟ ପ୍ରଶଂସା କଲେ ।

ରୁକ୍ମିଣୀ ଦେବୀ ଏହି ନୃତ୍ୟ କାର୍ଯ୍ୟକ୍ରମରେ ଜୟଦେବଙ୍କ ସଂଗୀତ ଯଥାର୍ଥ ଓ ଚମତ୍କାର ଭାବରେ ରୂପାୟିତ ହୋଇଥିଲା ବୋଲି ଅନୁଭବ କଲେ । ପରଦିନ ସମ୍ବାଦପତ୍ରମାନଙ୍କରେ ନୃତ୍ୟଶିଳ୍ପୀଙ୍କ ପାଇଁ ରୁକ୍ମିଣୀ ଦେବୀଙ୍କ ପ୍ରଶଂସା ପ୍ରକାଶ ପାଇଲା । ଏହାପରେ ଓଡ଼ିଶୀ ନୃତ୍ୟ ପ୍ରତି ଯଥେଷ୍ଟ ଅନୁକୂଳ ମତ ପ୍ରଚାରିତ ହେଲା ।

୧୯୬୯ ଡିସେମ୍ବରରେ ବିଶିଷ୍ଟ ନୃତ୍ୟ ଆୟୋଜକ ୱାଇ.ଜି. ଦୋରାଇସ୍ୱାମୀଙ୍କ

ନିମନ୍ତ୍ରଣରେ ସୋନାଲ୍ ମାନସିଂ ଚେନ୍ନାଇର ସଂଗୀତ ଏକାଡେମୀରେ ନୃତ୍ୟ ପରିବେଷଣ କଲେ । ଏଥିରେ କେଳୁଚରଣ ନୃତ୍ୟ ସଂପର୍କରେ ବ୍ୟାଖ୍ୟା କରିଥିଲେ । ପ୍ରେକ୍ଷାଳୟ ଦର୍ଶକମାନଙ୍କ ଦ୍ୱାରା ପୂର୍ଣ୍ଣ ଥିଲା । କେଳୁଚରଣ ଏଥିରେ କେବଳ କଣ୍ଠସଙ୍ଗୀତ ସହ ପ୍ରାୟ ଦେଢ ଘଣ୍ଟା ନୃତ୍ୟ ପ୍ରଦର୍ଶନ କଲେ । ପ୍ରଥମେ ସେ ଭଙ୍ଗୀ ପ୍ରଦର୍ଶନ କରିବା ପରେ 'ପଶ୍ୟତି ଦିଶି ଦିଶି' ଅଭିନୟରେ ଦର୍ଶାଇଲେ । ସୋନାଲ୍ ଇଂରାଜୀରେ ତାହା ବ୍ୟାଖ୍ୟା କରିବା ଆରମ୍ଭ କଲେ । କିନ୍ତୁ ସେପରି କରିବାର ଆବଶ୍ୟକତା ନାହିଁ ବୋଲି ଦର୍ଶକମାନେ ଅନୁଭବ କଲେ । କେଳୁଚରଣଙ୍କର ଅଭିନୟରେ ନୃତ୍ୟର ଭାବ ବେଶ୍ ସ୍ପଷ୍ଟ ଥିଲା । କେଳୁଚରଣଙ୍କର ମନେ ଅଛି – ତାଙ୍କର ଅଭିନୟ ପରେ ତିନିଜଣ ଭଦ୍ର ମହିଳା ତାଙ୍କ ନିକଟକୁ ଆସି ତାଙ୍କ ମଥା ଉପରେ ହାତ ରଖି ତାମିଲ୍‌ରେ କହିଲେ, 'ଆଜି ସନ୍ଧ୍ୟାରେ ଆପଣଙ୍କ ନୃତ୍ୟ ମାଧ୍ୟମରେ ଆମେ ପ୍ରଭୁ ଜଗନ୍ନାଥଙ୍କ ଦର୍ଶନ ଲାଭ କଲୁ । ପ୍ରଭୁ ଆପଣଙ୍କୁ ଆଶୀର୍ବାଦ କରନ୍ତୁ ।'

ସେଦିନ ସନ୍ଧ୍ୟାରେ ସୋନାଲ୍‌ଙ୍କ ନୃତ୍ୟ କାର୍ଯକ୍ରମ ମଧ୍ୟ ବିଶେଷ ସଫଳ ହେଲା । ବିଶିଷ୍ଟ ଭାରତନାଟ୍ୟମ୍ ଗୁରୁ ରାମିୟା ପିଲାଇ କେଳୁଚରଣଙ୍କୁ ଦୁଇ ହାତରେ ଉପରକୁ ଉଠାଇ ଉଚ୍ଚ ସ୍ୱରରେ କହିଲେ, 'ଆପଣଙ୍କର ପଖଉଜ ବାଦନ କି ଚମତ୍କାର !'

ଏସବୁ ସଫଳତା ସତ୍ତ୍ୱେ ରୁକ୍ମିଣୀ ଦେବୀଙ୍କ ଭାରତନାଟ୍ୟମ୍ ପ୍ରଶିକ୍ଷଣର ପବିତ୍ର ପୀଠ 'କଳାକ୍ଷେତ୍ର'ରେ ଓଡ଼ିଶୀ ନୃତ୍ୟ ଶିକ୍ଷା ପ୍ରଦାନରେ ବିଳମ୍ବ ହୋଇଥିଲା । କେଳୁଚରଣ ଏବଂ ରମଣୀରଞ୍ଜନ ଜେନାଙ୍କ ଦ୍ୱାରା ତାଲିମ୍‌ପ୍ରାପ୍ତ ଚେନ୍ନାଇର କେତେକ ନୃତ୍ୟଶିକ୍ଷୀ ସଫଳତାର ସହିତ ସେମାନଙ୍କ ମଞ୍ଚ ଅଭିନୟ (ଆରେଙ୍ଗେଟ୍ରମ୍) ପ୍ରଦର୍ଶନ କରିବା ପରେ ଏହା ସଫଳ ହୋଇଥିଲା । ଏହି ନୃତ୍ୟଶିକ୍ଷୀମାନଙ୍କ ମଧ୍ୟରେ ଥିଲେ, ମିର୍ଥା, ରାଣୀ ସୁନନ୍ଦା, ମେରିୟା, ପଦ୍ମା ସୁକୁମାର, ଅଲାରମେଲ୍ ବଲ୍ଲୀ ଓ ମାଳବିକା ସାରୁକ୍‌କାଇ । ୧୯୭୮ରେ ରୁକ୍ମିଣୀ ଦେବୀ ରମଣୀଙ୍କୁ ଅନୁରୋଧ କଲେ – କଳାକ୍ଷେତ୍ର ପରିସରରେ ଥିବା ଘରଟିଏ ବ୍ୟବହାର କରି ତାଙ୍କର ନୃତ୍ୟଶିକ୍ଷା କାର୍ଯ୍ୟକ୍ରମ ପରିଚାଳନା ପାଇଁ । ସେତେବେଳକୁ ରମଣୀ ଚେନ୍ନାଇରେ ଚାରି ପାଞ୍ଚ ବର୍ଷ ରହି କେତେଜଣ ନୃତ୍ୟଶିକ୍ଷୀଙ୍କୁ ତାଲିମ୍ ଦେଇସାରିଥା'ନ୍ତି । ସେମାନଙ୍କ ମଧ୍ୟରୁ କେତେଜଣ ମଧ୍ୟ କଳାବିକାଶ କେନ୍ଦ୍ରରେ ଗ୍ରୀଷ୍ମକାଳୀନ ଶିବିରରେ ଯୋଗଦେଇ ସାରିଥା'ନ୍ତି ।

କେଳୁଚରଣ ଯେତେବେଳେ ସୋନାଲ୍‌ଙ୍କ ପାଇଁ 'କୁରୁ ଯଦୁନନ୍ଦନ' ସଙ୍ଗୀତର ନୃତ୍ୟରୂପ ସଂରଚନା କରୁଥିଲେ, ସେତେବେଳେ ସୋନାଲ୍‌ଙ୍କ ଶ୍ୱଶୁର ମାୟାଧର ମାନସିଂହ ଏଥିରେ କିଛି ଆପତ୍ତିଜନକ ଥିଲା ବୋଲି ମନେକଲେ । ଦିନେ ସେ କେଳୁଚରଣଙ୍କୁ ଭେଟି କହିଲେ, ଗୋଟିଏ ସମ୍ଭ୍ରାନ୍ତ ପରିବାରର ମହିଳା ହୁଏତ ଏହି ସଙ୍ଗୀତ ଉପରେ ଆଧାରିତ ଚରିତ୍ରରେ ଅଭିନୟ କରିବା ଯଥାର୍ଥ ହେବନାହିଁ । କାରଣ ଏଥିରେ ନାୟିକା ଉଲଗ୍ନ ଥିବାର ପରିକଳ୍ପନା କରାଯାଇଛି ।

କେଳୁଚରଣ କହିଲେ, ପ୍ରଥମେ ସେ ରିହର୍ସାଲ୍‌ଟି ଦେଖନ୍ତୁ । ଯଦି ତାଙ୍କର କିଛି ଆପତ୍ତି ଥାଏ, ତେବେ ସେ ସେହି କାର୍ଯ୍ୟକ୍ରମଟିକୁ ସ୍ଥଗିତ ରଖିବେ । ପ୍ରଥମ ପଦଟିର ନୃତ୍ୟରୂପ ଦେଖିବାପରେ ମାନସିଂହଙ୍କର ମନରେ କୌଣସି ଦ୍ୱିଧା ରହିଲା ନାହିଁ । ସେ ସଙ୍ଗୀତଟିର ସୌନ୍ଦର୍ଯ୍ୟ ଓ ଗାମ୍ଭୀର୍ଯ୍ୟ ସ୍ୱୀକାର କଲେ । ଏଥିରେ ଅନ୍ତର୍ନିହିତ ଭକ୍ତିଭାବ ଦୃଷ୍ଟିରୁ ସଙ୍ଗୀତରେ କୌଣସି ଅଶାଳୀନତା ନଥିବା ତାଙ୍କର ହୃଦ୍‌ବୋଧ ହେଲା ।

ଗ୍ରୀଷ୍ମକାଳୀନ ଶିକ୍ଷା ଶିବିରରେ ଏହି ସଙ୍ଗୀତଟିର ଅର୍ଥ ସଂପର୍କରେ କେଳୁଚରଣ ଭାରତ ଓ ଭାରତ ବାହାରୁ ଆସିଥିବା ନୃତ୍ୟଶିକ୍ଷୀମାନଙ୍କ ସହିତ ଆଲୋଚନା କରୁଥିଲେ । ତରୁଣତରୁଣୀମାନଙ୍କୁ ସେ ତାଙ୍କର ଅଭିନୟ ଅନୁକରଣ କରିବା ପାଇଁ କହୁଥିଲେ କେବଳ ।

'କୁରୁ ଯଦୁନନ୍ଦନ' ନୃତ୍ୟ ସଂରଚନାରେ କେଳୁଚରଣ ରାଧାଙ୍କର ଉପବେଶନ ଭଙ୍ଗୀ କୋଣାର୍କ ମନ୍ଦିରର ଅନୁରୂପ ପ୍ରତିମାରୁ ଗ୍ରହଣ କରିଥିଲେ । ପଞ୍ଚମ ଦଶକର ପ୍ରଥମ ଭାଗରେ ଅନ୍ନପୂର୍ଣ୍ଣା 'କ' ଦଳ ଛାଡ଼ିବା ଓ କଳାବିକାଶ କେନ୍ଦ୍ରରେ ଯୋଗଦେବା ମଧ୍ୟରେ ସେ କେତେଥର କୋଣାର୍କ ପରିଦର୍ଶନ କରିଥିଲେ । କୋଣାର୍କ ମୂର୍ତ୍ତିଗୁଡ଼ିକର ସୌନ୍ଦର୍ଯ୍ୟ ସଂପର୍କରେ ତାଙ୍କର ମା' ହିଁ ପ୍ରଥମେ ତାଙ୍କୁ ସଚେତନ କରିଥିଲେ । କେଳୁଚରଣ ସେହି ମୂର୍ତ୍ତିଗୁଡ଼ିକୁ ବହୁ ସମୟରେ ସ୍ୱପ୍ନରେ ଦେଖୁଥିଲେ ।

କୁଙ୍କୁମଙ୍କର ମା' ପାନ ଭାଙ୍ଗିବା ପାଇଁ ଗୁଆ କାଟିବା ବେଳେ କିମ୍ବା ଠାକୁରଙ୍କ ପୂଜା ପାଇଁ ଚନ୍ଦନ ବାଟିବା ବେଳେ କେଳୁଚରଣ କୋଣାର୍କର ସେହି ପ୍ରତିମାର ଭଙ୍ଗୀ ଲକ୍ଷ୍ୟ କରୁଥିଲେ । କୁଙ୍କୁମଙ୍କୁ ସେ ବାରମ୍ବାର କହୁଥିଲେ, ତାଙ୍କ ମା' ତଳେ ବସି ଦୁଇ ଆଣ୍ଠୁ ଉପରେ ମୁହଁ ରଖି ରିହର୍ସାଲ୍ ଦେଖିବା ସମୟରେ କେତେ କମନୀୟ ଦିଶନ୍ତି ।

ନିଜର ଚାରିପାଖରେ ଯାହା ଘଟିଯାଉଥିଲା, ସେଇଥିରୁ ନୃତ୍ୟ ପାଇଁ ପ୍ରେରଣା ପାଉଥିଲେ କେଳୁଚରଣ : ରାସ୍ତାରେ ଯାଉଥିବା ନାରୀମାନଙ୍କ ଦେହର ଚଳଣ, ସେମାନଙ୍କ ବକ୍ଷ ଦେଶର କମ୍ପନକୁ ସେ ହଂସ ଗତି ବା ମୟୂର ଗତିରେ ରୂପାୟିତ କରୁଥିଲେ । ସାଧାରଣ ଜୀବନର କର୍ମଧାରାରୁ ସେ ନୃତ୍ୟ ପାଇଁ ନୂତନ ଉପାଦାନ ସଂଗ୍ରହ କରିପାରୁଥିଲେ । ତାଙ୍କର କଳ୍ପନାଶକ୍ତି ଏତେ ପ୍ରଖର ଥିଲା ଯେ, ଯେ କୌଣସି ପରିସ୍ଥିତିରେ ନୃତ୍ୟ ପାଇଁ ସେ ଉପାଦାନ ସଂଗ୍ରହ କରିପାରୁଥିଲେ । ହାଟ ବଜାରର ବେପାରୀ, ନଦୀରେ ଡଙ୍ଗା ଚଳାଉଥିବା ନାବିକ, ଗାଆଁ ମେଳଣରେ ସାପୁଆ କେଳାର ସାପ ଖେଳ, ପିଠିରେ ଭାର ବୋହି ଚାଲିଥିବା ଶ୍ରମିକ – ସମସ୍ତେ ପାଲଟି ଯାଉଥିଲେ କେଳୁଚରଣଙ୍କ ନୃତ୍ୟର ବିଷୟବସ୍ତୁ । ତାଙ୍କ କଳ୍ପନାରେ ନାରୀମାନଙ୍କର ଏକ ସ୍ୱତନ୍ତ୍ର ଭୂମିକା ଥିଲା । ସେମାନଙ୍କ ଅନୁଭବ, ପ୍ରତିକ୍ରିୟା, ବ୍ୟକ୍ତିତ୍ୱ ଓ ଅଙ୍ଗଭାଷା କେଳୁଚରଣଙ୍କ ଅଭିନୟ ପାଇଁ ଯଥେଷ୍ଟ ସହାୟକ ହେଉଥିଲା । କେଳୁଚରଣଙ୍କ ନିଜ ଭାଷାରେ–

'ନାରୀମାନଙ୍କ ଗତିବିଧି ଲକ୍ଷ୍ୟ କରିବା ଓ ସେମାନଙ୍କ ଜୀବନଶୈଳୀ ବୁଝିବା ବିଶେଷ ଗୁରୁତ୍ୱପୂର୍ଣ୍ଣ । ଜଣେ ମହାନ ଶିଳ୍ପୀ ଏସବୁକୁ ନିଜ କଳାର ଅଙ୍ଗୀଭୂତ କରିପାରେ । ଗୀତଗୋବିନ୍ଦର ବିଭିନ୍ନ ପଦରେ ରାଧାଙ୍କ ଚରିତ୍ର ପ୍ରଦର୍ଶନରେ ଏହା ପ୍ରମାଣିତ ହୋଇଛି । ନାରୀମାନଙ୍କୁ ବୁଝିବା ପାଇଁ ସେମାନଙ୍କ ସାନ୍ନିଧ ଲାଭ କରିବା ମୋ ପାଇଁ ବିଶେଷ ଆବଶ୍ୟକ । ମୋ'ଠାରୁ ନାଚ ଶିଖୁଥିବା ଜଣେ ଶିଷ୍ୟାଙ୍କର ଭାଇ ଥରେ ମୋତେ କହିଥିଲେ, 'କେଳୁଚରଣ ସତରେ କେଡ଼େ ଭାଗ୍ୟବାନ । ସେ ତ ସବୁବେଳେ ନାରୀମାନଙ୍କ ଗହଣରେ ରହିଥା'ନ୍ତି ।' ମୁଁ ତାଙ୍କୁ କହିଲି, 'ତୁମର ଭଉଣୀ କ'ଣ ମୋଠାରୁ ନାଚ ଶିଖୁନାହାନ୍ତି ?' ଏହାପରେ ସେ ନୀରବ ରହିଲେ ଓ ମୋତେ କ୍ଷମା ମାଗିଲେ ।'

ସଂଗୀତ ନାଟକ ଏକାଡେମୀ ପୁରସ୍କାର ଲାଭ କଲାପରେ କେଳୁଚରଣ ଏକାଡେମୀର ଆର୍ଥିକ ସହାୟତାରେ ନିଜେ ଶିକ୍ଷାଦାନ କରିବାର ସୁଯୋଗ ଥିଲା । ସେ କିନ୍ତୁ ପ୍ରସ୍ତାବ ଦେଲେ, କଳାବିକାଶ କେନ୍ଦ୍ରକୁ ସହାୟତା ପ୍ରଦାନ କରାଯାଉ ଏବଂ ସେଠାରେ ସଂକ୍ଷିପ୍ତ ଗ୍ରୀଷ୍ମକାଳୀନ ନୃତ୍ୟ ତାଲିମ୍ ପ୍ରଦାନ କରାଯାଉ । ସେ ଚାହୁଁଥିଲେ କଳାବିକାଶ କେନ୍ଦ୍ରରେ ଦୁଇ ତିନି ମାସ ମଧ୍ୟରେ ବିଶେଷ ନୃତ୍ୟ ତାଲିମ୍ ପ୍ରଦାନ କରାଯିବ ଏବଂ ବର୍ଷର ଅବଶିଷ୍ଟ ସମୟ ସେ ଭାରତର ବିଭିନ୍ନ ସ୍ଥାନରେ – ବିଶେଷତଃ ଓଡ଼ିଶା ବାହାରେ – ଓଡ଼ିଶୀ ନୃତ୍ୟ ଶିଖାଇ ପାରିବେ । ସେହି କାରଣରୁ ଭୁବନେଶ୍ୱରର ସଂଗୀତ ମହାବିଦ୍ୟାଳୟରେ ଶିକ୍ଷାଦାନ କରିବାର ପ୍ରସ୍ତାବକୁ ସେ ଗ୍ରହଣ କରି ନଥିଲେ । ସଂଗୀତ ମହାବିଦ୍ୟାଳୟରେ ଶିକ୍ଷାଦାନ ପାଇଁ ସେ ପଙ୍କଜ ଚରଣ ଦାସଙ୍କ ନାମ ପ୍ରସ୍ତାବ କରିଥିଲେ ।



ଭୁବନେଶ୍ୱର ମିଶ୍ରଙ୍କ ସହିତ

୧୯୬୮ ମସିହାରେ କଳାବିକାଶ କେନ୍ଦ୍ରରେ ଗ୍ରୀଷ୍ମକାଳୀନ ନୃତ୍ୟଶିକ୍ଷା କାର୍ଯ୍ୟକ୍ରମ ଆରମ୍ଭ ହେଲା । ଏହା ପାଞ୍ଚରୁ ଛଅବର୍ଷ ଯାଏଁ ଚାଲିଲା । ପ୍ରତି କାର୍ଯ୍ୟକ୍ରମ ତିନି ମାସ ଧରି ଅନୁଷ୍ଠିତ ହେଉଥିଲା; ସାରାଦିନ ଶିକ୍ଷାଦାନ ହେଉଥିଲା । ଗୋଟିଏ କାର୍ଯ୍ୟକ୍ରମ ବା କୋର୍ସ୍ ପାଇଁ ପାଞ୍ଚ ହଜାରରୁ ଦଶ ହଜାର ଟଙ୍କା ପର୍ଯ୍ୟନ୍ତ ସହାୟତା ମିଳୁଥିଲା । କେଳୁଚରଣଙ୍କ ମାସିକ ପାରିଶ୍ରମିକ ଥିଲା ନଅଶହ ଟଙ୍କା । ସେ ତିନି ମାସ ଏହି ପାରିଶ୍ରମିକ ପାଉଥିଲେ । ଅବଶିଷ୍ଟ ଅର୍ଥରୁ ଛାତ୍ରଛାତ୍ରୀମାନଙ୍କୁ ମାସିକ ପଞ୍ଚସ୍ତରି ଟଙ୍କା ପ୍ରଦାନ କରାଯାଉଥିଲା । ନୃତ୍ୟ ପାଇଁ ହଲ୍‌ଟିଏ ନିର୍ମାଣ କରିବା ପାଇଁ ମଧ୍ୟ କିଛି ଅର୍ଥ ବ୍ୟବହାର କରାଯାଉଥିଲା ।

ଏହି ନୃତ୍ୟ ତାଲିମ୍ କାର୍ଯ୍ୟକ୍ରମକୁ ସଫଳ କରିବା ପାଇଁ ସଂଗୀତ ମହାବିଦ୍ୟାଳୟର କେତେକ ପୁରୁଷ ନୃତ୍ୟଶିକ୍ଷାର୍ଥୀଙ୍କୁ ମଧ୍ୟ ଏଥିରେ ଅନ୍ତର୍ଭୁକ୍ତ କରାଯାଇଥିଲା । ନାରୀଶିକ୍ଷାର୍ଥୀମାନଙ୍କ ମଧ୍ୟରେ ଥିଲେ – ସୋନାଲ୍, ଅପରାଜିତା, କୁକୁମିନା, ରତ୍ନା, ନନ୍ଦିତା ସାମୁଏଲ୍, ସ୍ୱାଧୀନା ବୋଷ୍, ପର୍‌ବିନ୍, ନସ୍‌ରୀନ୍, ରାଣୀ କର୍ଣ୍ଣା, ସ୍ନେହପ୍ରଭା, ମେନକା ଠକ୍‌କର୍, ଇତ୍ୟାଦି । କେହି କେହି କଳାବିକାଶ କେନ୍ଦ୍ରର ହଷ୍ଟେଲ୍‌ରେ ରହୁଥିଲେ; ଅନ୍ୟମାନେ ନିଜ ନିଜର ରହିବାର ବ୍ୟବସ୍ଥା କରିଥିଲେ । ସପ୍ତମ ଦଶକର ମଧ୍ୟଭାଗରୁ ହିଁ ଛାତ୍ରଛାତ୍ରୀମାନେ କେଳୁଚରଣଙ୍କ ନିଜ ବାସଗୃହରେ ରହିବାକୁ ଆରମ୍ଭ କଲେ ।

କଳାବିକାଶ କେନ୍ଦ୍ରର ଗ୍ରୀଷ୍ମକାଳୀନ ନୃତ୍ୟ ତାଲିମ୍ କାର୍ଯ୍ୟକ୍ରମ ଓଡ଼ିଶା ବାହାରର ଶିକ୍ଷାର୍ଥୀମାନଙ୍କୁ ମଧ୍ୟ ଆକର୍ଷଣ କଲା । ସେମାନଙ୍କ ମଧ୍ୟରେ ଅନ୍ୟତମ ପ୍ରଥମ ଶିକ୍ଷାର୍ଥୀ ଥିଲେ ମେନକା ଠକ୍‌କର୍ । ୧୯୬୪ ଡିସେମ୍ବରରେ ମୁମ୍ବାଇଠାରେ 'କୃଷ୍ଣଲୀଳା' ଓଡ଼ିଶୀ ନୃତ୍ୟନାଟିକା ପରିଦର୍ଶନ କରି ସେ ବାବୁଲାଲ୍ ଦୋଷୀଙ୍କ ନିକଟକୁ ପତ୍ର ଲେଖିଥିଲେ ମୁମ୍ବାଇକୁ ଜଣେ ଓଡ଼ିଶୀ ନୃତ୍ୟଗୁରୁଙ୍କୁ ପଠାଇବା ପାଇଁ । କେଳୁଚରଣ ସେତେବେଳେ ଅସୁସ୍ଥ ଥିବାରୁ ମୁମ୍ବାଇ ଯାଇପାରିଲେ ନାହିଁ । ତାଙ୍କ ସ୍ଥାନରେ ଗଲେ ଜଣେ ଅଭିଜ୍ଞ ଶିଷ୍ୟ ରମଣୀ ରଂଜନ ଜେନା । ରମଣୀ ମେନକାଙ୍କ ଘରେ ରହିଲେ ପ୍ରାୟ ଗୋଟିଏ ବର୍ଷ ଓ ତାଙ୍କୁ ଓଡ଼ିଶୀ ନୃତ୍ୟର ଶୈଳୀ ସଂପର୍କରେ ଶିକ୍ଷା ଦେଲେ । ରମଣୀ କେଳୁଚରଣଙ୍କ ସ୍ଥାନରେ କଳାବିକାଶ କେନ୍ଦ୍ରରେ ଶିକ୍ଷକ ଭାବରେ ନିଯୁକ୍ତ ହେବାପରେ ମେନକା ଓଡ଼ିଶା ଆସିବା ଆରମ୍ଭ କଲେ । ପ୍ରଥମ ଥର ସେ ଓଡ଼ିଶା ଆସିବା ବେଳକୁ ଗ୍ରୀଷ୍ମକାଳୀନ ନୃତ୍ୟ ତାଲିମ୍ କାର୍ଯ୍ୟକ୍ରମ ଆରମ୍ଭ ହୋଇ ନଥାଏ । ସେ କଳାବିକାଶ କେନ୍ଦ୍ର ପରିସରରେ ଗୋଟିଏ ଛୋଟ ବଖରାରେ ରହିଲେ । କେଳୁଚରଣ ସେହିଠାରେ ତାଙ୍କୁ ନୃତ୍ୟ ଶିଖାଇଲେ । କଟକରେ ପହଞ୍ଚିବାର ପ୍ରଥମ ରାତ୍ରିଟି କିନ୍ତୁ ଡାକ୍ତରଖାନାରେ କଟାଇବାକୁ ପଡ଼ିଥିଲା – ଲକ୍ଷ୍ମୀପ୍ରିୟା ଅସୁସ୍ଥ ଥିବାରୁ ସେ ତାଙ୍କର ଯତ୍ନ ନେଇଥିଲେ । ସ୍ତ୍ରୀମାନଙ୍କ ପାଇଁ ନିର୍ଦ୍ଦିଷ୍ଟ ଥିବା ୱାର୍ଡ୍‌ରେ ପୁରୁଷମାନଙ୍କ ପ୍ରବେଶ ନିଷିଦ୍ଧ ଥିବାରୁ ମେନକାଙ୍କ ବ୍ୟତୀତ ଆଉ କେହି ଲକ୍ଷ୍ମୀପ୍ରିୟାଙ୍କୁ ସାହାଯ୍ୟ କରିବା ପାଇଁ ନଥିଲେ ।

୧୯୬୭ ଗ୍ରୀଷ୍ମ ଋତୁରେ ରାଣୀ କର୍ଣ୍ଣା କେଳୁଚରଣଙ୍କ ନୃତ୍ୟ କ୍ଲାସ୍‌ରେ ଯୋଗ ଦେଲେ । ଏହା ପୂର୍ବରୁ ଅବଶ୍ୟ ସେ ଭାରତନାଟ୍ୟମ୍ ଓ କଥକରେ ବିଶେଷ ତାଲିମ୍ ନେଇସାରିଥିଲେ ।

ରାଣୀ କର୍ଣ୍ଣା କହନ୍ତି, '୧୯୫୬ରେ ତୃତୀୟ ଅନ୍ତର୍ବିଶ୍ୱବିଦ୍ୟାଳୟ ଯୁବ ଉତ୍ସବରେ ଦିଲ୍ଲୀରେ ମୁଁ ପ୍ରିୟମ୍ବଦାଙ୍କ ନୃତ୍ୟ ଦେଖିଥିଲି । ଓଡ଼ିଶୀ ନୃତ୍ୟ ଶୈଳୀର ସୌନ୍ଦର୍ଯ୍ୟ ମୋତେ ଅତ୍ୟନ୍ତ ମୁଗ୍ଧ କରିଥିଲା ।'

ସେ ପୁଣି କହନ୍ତି, 'କିନ୍ତୁ ୧୯୬୭ରେ ମୋର ବିବାହ ପରେ ମୁଁ ଓଡ଼ିଆ ବୋହୂଟିଏ ହୋଇ ଯେତେବେଳେ କଟକ ଆସିଲି, ସେତେବେଳେ କେଳୁବାବୁଙ୍କ ସହିତ ମୋର ଯୋଗାଯୋଗ ହେଲା । ସେ ମୋତେ ଶିଷ୍ୟା ଭାବରେ ଆନନ୍ଦର ସହିତ ଗ୍ରହଣ କଲେ । ତାହାର କାରଣ– ମୁଁ ଯେ କେବଳ ଆଉ ଦୁଇଟି ଶାସ୍ତ୍ରୀୟ ନୃତ୍ୟରେ ତାଲିମ୍ ନେଇସାରିଥିଲି ତା' ନୁହେଁ; ମୁଁ ମଧ ହୋଇସାରିଥିଲି ଜଣେ ଓଡ଼ିଆ ବୋହୂ । ସେ ମୋତେ 'ନୂଆବୋଉ' ବୋଲି ଡାକୁଥିଲେ । ସେତେବେଳକୁ ମୋର ପୁଅକୁ ଚାରିବର୍ଷ ହୋଇସାରିଥାଏ । ସେ ଥାଏ କେଳୁବାବୁଙ୍କ ପୁଅ ରତିକାନ୍ତ ବୟସର । କେଳୁବାବୁଙ୍କଠାରୁ ନୃତ୍ୟ ଶିଖିବା ପୂର୍ବରୁ ମୁଁ ଗୋଟିଏ ବର୍ଷ ଦିଲ୍ଲୀରେ ହରେକୃଷ୍ଣ ବେହେରାଙ୍କଠାରୁ ତାଲିମ୍ ନେଇସାରିଥିଲି । ତେଣୁ ଅକ୍ଟୋବର ୧୯୬୭ରେ ଦିଲ୍ଲୀର ସାପ୍ରୁ ହାଉସ୍‌ରେ ମୁଁ ପ୍ରଥମେ ମୋର ଓଡ଼ିଶୀ ନୃତ୍ୟ ପ୍ରଦର୍ଶନ କଲି । ସେହି ଅବସରରେ ଶଙ୍କରାଭରଣ ଓ କଲ୍ୟାଣ ରାଗରେ ମୁଁ ପଲ୍ଲବୀ ପରିବେଷଣ କଲି । ଏହା ସହିତ ମଙ୍ଗଳାଚରଣ, ବଟୁ, ଦଶାବତାର ମଧ । ସେଠାରେ ମୁଁ ନିଜକୁ ବିଶେଷ ଅପ୍ରସ୍ତୁତ ମନେକରୁଥିଲି । ଏପରିକି, ମଞ୍ଚ ଉପରକୁ ଯିବା ପାଇଁ ମୋ ମନରେ ଭୟ ହେଉଥିଲା । ଏପରି ପରିସ୍ଥିତିରେ କେଳୁବାବୁ ମୋତେ ଉତ୍ସାହିତ କରିଥିଲେ ଏବଂ ମୋ ଭିତରେ ଆତ୍ମବିଶ୍ୱାସ ସୃଷ୍ଟି କରିଥିଲେ । ତାଙ୍କର ସ୍ନେହ ମୁଁ କେବେ ଭୁଲିପାରିବି ନାହିଁ ।'

ଷଷ୍ଠ ଦଶକର ଶେଷ ଭାଗରେ ଯେଉଁମାନେ ଏହି ଗ୍ରୀଷ୍ମକାଳୀନ ନୃତ୍ୟ ତାଲିମ୍ କେନ୍ଦ୍ରରେ ଯୋଗଦେଇଥିଲେ, ସେମାନଙ୍କ ମଧରେ ଥିଲେ ଆର୍ଜେଣ୍ଟିନାର ମିର୍ତ୍ତା ବାର୍‌ଭି । ସେ ବୋଧହୁଏ ଥିଲେ କେଳୁଚରଣଙ୍କର ପ୍ରଥମ ବିଦେଶୀ ଶିଷ୍ୟା । ଏହା ପୂର୍ବରୁ ସେ ଚେନ୍ନାଇର କଳାକ୍ଷେତ୍ରରେ ଭାରତନାଟ୍ୟମ୍‌ରେ ପାଞ୍ଚବର୍ଷ ତାଲିମ୍ ନେଇସାରିଥିଲେ । ଦିଲ୍ଲୀରେ କେଳୁଚରଣଙ୍କ ଶିଷ୍ୟାମାନଙ୍କ ଦ୍ୱାରା ପରିବେଷିତ ଓଡ଼ିଶୀ ନୃତ୍ୟ ଦେଖି ସେ ନୃତ୍ୟଶୈଳୀ ଓ ସଂଗୀତରେ ମୁଗ୍‌ଧ ହୋଇ କେଳୁଚରଣଙ୍କ ଶିଷ୍ୟା ହେବାକୁ ଚାହିଁଲେ । ଏହାପରେ ସେ ଓଡ଼ିଶା ଓ ଦିଲ୍ଲୀରେ ଓଡ଼ିଶୀ ନୃତ୍ୟ ଶିକ୍ଷା କଲେ ।

୧୯୭୦ରେ ଏହି ଗ୍ରୀଷ୍ମକାଳୀନ ନୃତ୍ୟ ତାଲିମ୍ କେନ୍ଦ୍ରରେ ଦିଲ୍ଲୀର କେତେକ ତରୁଣୀ ଯୋଗ ଦେଲେ । ସେମାନଙ୍କ ମଧ୍ୟରେ ଥିଲେ – ଦର୍ଶନା, ବୀଣା, ନଳିନୀ ଏବଂ କୁଙ୍କୁମ୍ ଲାଲ୍ । ସେମାନେ ଦିଲ୍ଲୀରେ ହରେକୃଷ୍ଣ ବେହେରାଙ୍କ ଦ୍ୱାରା ୧୯୬୫ରେ ପ୍ରତିଷ୍ଠିତ

ନୃତ୍ୟ ନିକେତନରେ ଶିକ୍ଷାଲାଭ ଆରମ୍ଭ କରିଥିଲେ । ବେହେରା କଳାବିକାଶ କେନ୍ଦ୍ରରେ ଛଅବର୍ଷ କାର୍ଯ୍ୟ କରିବା ପରେ ଦିଲ୍ଲୀ ଚାଲିଗଲେ । ପ୍ରଥମେ ବଦ୍ରିନାଥ ଖୋସ୍‌ଲାଙ୍କ ଭଗତ୍‌ସିଂହ ମାର୍କେଟ୍‌ସ୍ଥିତ ପ୍ରଶସ୍ତ ବାସଗୃହରେ ସେ ନୃତ୍ୟ ଶିଖାଉଥିଲେ । ଖୋସ୍‌ଲାଙ୍କ ଝିଅ ଓ ଝିଆରୀ ମଧ୍ୟ ହରେକୃଷ୍ଣଙ୍କ ଶିଷ୍ୟା ଥିଲେ ।

ହରେକୃଷ୍ଣ ଥିଲେ ଉତ୍ତର ବାଲେଶ୍ୱରର ବାସିନ୍ଦା । ଓଡ଼ିଶା ସରକାରଙ୍କ ଦ୍ୱାରା ମାସିକ ପଞ୍ଚସ୍ତରି ଟଙ୍କା ବୃତ୍ତିଲାଭ କରି ବିର୍‌ଜୁ ମହାରାଜଙ୍କ ଠାରୁ କଥକ ଶିକ୍ଷାଲାଭ କରିବା ପାଇଁ ୧୯୬୪ରେ ସେ ଦିଲ୍ଲୀ ଗଲେ । ଓଡ଼ିଶୀ ନୃତ୍ୟର ପ୍ରସାର କରିବା ତାଙ୍କର ମୂଳ ସ୍ୱପ୍ନ ଥିଲା । ଖୁବ୍ ଶୀଘ୍ର ସେ କେତେଜଣ ଶିଷ୍ୟଶିଷ୍ୟା ଯୋଗାଡ଼ କଲେ । କଳାବିକାଶ କେନ୍ଦ୍ରରେ ନୃତ୍ୟଶିକ୍ଷା ସମାପ୍ତ କରିବା ପାଇଁ ତାଙ୍କୁ କଠୋର ପରିଶ୍ରମ କରିବାକୁ ପଡ଼ିଥିଲା । ପ୍ରଥମେ ସେ ବାଲେଶ୍ୱରର ନୃତ୍ୟ ସଂଗୀତ କଳା ମନ୍ଦିରରେ ତାଲିମ୍ ନେଇଥିଲେ ମଧ୍ୟ ସେଠାରେ ତାଙ୍କୁ ସାର୍ଟିଫିକେଟ୍ ମିଳି ନଥିଲା । କଟକରୁ ସେ ସାର୍ଟିଫିକେଟ୍ ଲାଭ କରିଥିଲେ । ସେ ବହୁବର୍ଷ କପର୍ଦ୍ଦକଶୂନ୍ୟ ଥିଲେ । ଏହି ସମୟରେ କେଳୁଚରଣ ତାଙ୍କୁ ବିଶେଷ ସହାୟତା ଯୋଗାଇ ଦେଇଥିଲେ । ହରେକୃଷ୍ଣ ଥିଲେ ମେଧାବୀ ଏବଂ ପରିଶ୍ରମୀ । ସେ ଶିକ୍ଷାଲାଭ କରିଥିବା ନୃତ୍ୟଶୈଳୀ ସଂପର୍କରେ ପୁଙ୍ଖାନୁପୁଙ୍ଖ ଲେଖିପାରୁଥିଲେ । କେଳୁଚରଣ ପଢିପାରିବେ ବୋଲି ସମଗ୍ର 'ଅଭିନୟ ଦର୍ପଣ' ସେ ଓଡ଼ିଆ ଲିପିରେ ଲେଖିଥିଲେ ।

ଷଷ୍ଠ ଦଶକର ପ୍ରଥମ ଭାଗରେ ହରେକୃଷ୍ଣ ବେହେରା ଓ ରମଣୀ ରଂଜନ ଜେନା ନିୟମିତ କଳାବିକାଶ କେନ୍ଦ୍ରରେ ଶିକ୍ଷାଗ୍ରହଣ କରୁଥିଲେ । ଉଭୟେ ଆସିଥିଲେ ବାଲେଶ୍ୱରରୁ । ଅଳ୍ପ କେତେଜଣ ପୁରୁଷ ଶିକ୍ଷାର୍ଥୀଙ୍କ ମଧ୍ୟରେ ଥିଲେ ସେମାନେ । ସେତେବେଳେ ବିଶ୍ୱାସ କରାଯାଉଥିଲା, ଯେତେ ଉତ୍କର୍ଷ ଲାଭ କଲେ ହେଁ ଜଣେ ପୁରୁଷ ନୃତ୍ୟଶିଳ୍ପୀ ନୃତ୍ୟକୁ ଜୀବିକା କରି ବଞ୍ଚିପାରିବ ନାହିଁ ।

ଓଡ଼ିଶୀ ନୃତ୍ୟଶୈଳୀର ଲାସ୍ୟ ପ୍ରକାଶଭଙ୍ଗୀ ଜଣେ ପୁରୁଷ ଶିଳ୍ପୀ ଅଙ୍ଗରେ ପରିସ୍ଫୁଟ ହେବା ସମ୍ଭବ ନୁହେଁ । ନାରୀମାନେ ମଞ୍ଚରେ ନୃତ୍ୟ କରିବାର ବିରୋଧ କରୁଥିବା ସାଧାରଣ ଜନତା କିନ୍ତୁ ଏହା ଭିତରେ ସେମାନଙ୍କ ମତ ବଦଳାଇ ସାରିଥିଲେ । ନାରୀ ନୃତ୍ୟଶିଳ୍ପୀଙ୍କୁ ସେମାନେ ଅଧିକ ପସନ୍ଦ କରୁଥିଲେ ।

ପୁରୁଷଶିଳ୍ପୀମାନେ ଭଲ ଗୁରୁ ହୋଇପାରିବେ କିମ୍ବା ନୃତ୍ୟନାଟିକାରେ ପୁରୁଷ ଭୂମିକାରେ ଭଲ ଅଭିନୟ କରିପାରିବେ ବୋଲି ବିଶ୍ୱାସ କରାଯାଉଥିଲା । କିନ୍ତୁ କୌଣସି ଓଡ଼ିଶୀ କାର୍ଯ୍ୟକ୍ରମ କେବଳ ପୁରୁଷଶିଳ୍ପୀମାନଙ୍କ ଦ୍ୱାରା ସଂରଚିତ ହୋଇପାରିବ, ଏହା ବିଶ୍ୱାସ କରାଯାଉ ନଥିଲା । ରମଣୀ କହନ୍ତି, 'ଜଣେ ଶିଳ୍ପୀ ଭାବରେ ଜୀବିକା ଅର୍ଜନ କରିବା ପାଇଁ ତାଙ୍କୁ କଠିନ ସଂଗ୍ରାମ କରିବାକୁ ପଡ଼ିଥିଲା । ଏପରିକି, ଧୀରେନ୍ଦ୍ରନାଥ ପଟ୍ଟନାୟକ, ଭୁବନେଶ୍ୱରର ମିଶ୍ରଙ୍କ ଭଳି ବ୍ୟକ୍ତିମାନେ ମଧ୍ୟ ତାଙ୍କୁ ଏଭଳି ଜୀବିକା ନିର୍ବାହ କରିବା ସମ୍ଭବ


ଲକ୍ଷ୍ମୀପ୍ରିୟା

ନୁହେଁ ବୋଲି କହିଥିଲେ ।' କଥକ ଗୁରୁ ରାମଗୋପାଳ ମିଶ୍ର ତାଙ୍କୁ ପରାମର୍ଶ ଦେଇଥିଲେ, ସେ ଓଡ଼ିଶା ଛାଡ଼ି ଲକ୍ଷ୍ନୌରେ କଥକ ଶିକ୍ଷା ଦେବା ସମାଧାନର ବାଟ ହୋଇପାରେ । ରାମଗୋପାଳ କଳାବିକାଶ କେନ୍ଦ୍ର ସହିତ ପରିଚିତ ଥିଲେ ।

କେଳୁଚରଣ କିନ୍ତୁ ଓଡ଼ିଶୀ ନଛାଡ଼ିବା ପାଇଁ ରମଣୀଙ୍କୁ ଉପଦେଶ ଦେଲେ । ୧୯୬୩ରେ ଭଦ୍ରକଠାରେ ରମଣୀଙ୍କର ପ୍ରଥମ ସୋଲୋ ଓଡ଼ିଶୀ କାର୍ଯ୍ୟକ୍ରମ ସଫଳ ହେଲା । ତାଙ୍କ ସହିତ ପଖଉଜ ବାଦନ କରିଥିଲେ କେଳୁଚରଣ । ଜଣେମାତ୍ର ଶିଳ୍ପୀ ସ୍ୱରଦାନ କରିଥିଲେ । ସେ ସମୟରେ ତାଙ୍କର ନୃତ୍ୟ ପରିବେଷଣ ମୋଟାମୋଟି ପାରମ୍ପରିକ ଥିଲା । ମଙ୍ଗଳାଚରଣରେ ସେ 'ନମାମି ବିଘ୍ନରାଜ', କଲ୍ୟାଣୀ ରାଗରେ ପଲ୍ଲବୀ 'ଲଳିତଲବଙ୍ଗଲତା' ଏବଂ ଶେଷରେ ସଂକ୍ଷିପ୍ତ ମୋକ୍ଷ ପରିବେଷଣ କରିଥିଲେ । ନିଜର ପୋଷାକ ଓ ଅଳଙ୍କାର ସେ ହିଁ ସ୍ଥିର କରିଥିଲେ । କାରଣ, ଏଯାଏଁ କେବଳ ନାରୀଶିଳ୍ପୀମାନଙ୍କ ପାଇଁ ପୋଷାକ ଓ ଅଳଙ୍କାର ପ୍ରସ୍ତୁତ ହେଉଥିଲା ।

ରମଣୀଙ୍କ ନୃତ୍ୟ ପରିବେଷଣ କେବଳ ତାଙ୍କ ପାଇଁ ନୁହେଁ, ସମସ୍ତ ପୁରୁଷଶିଳ୍ପୀମାନଙ୍କ ପାଇଁ ଥିଲା ଏକ ବିଶେଷ ଘଟଣା । ଶେଷରେ ତାଙ୍କର ସ୍ୱପ୍ନ ସଫଳ ହୋଇଥିଲା । ଜଣେ ଗୁରୁ ଓ ଶିଳ୍ପୀ ଭାବରେ ଏହାପରେ ସେ ଯଥେଷ୍ଟ ଉନ୍ନତି କରିଥିଲେ । ସପ୍ତମ ଦଶକର ଶେଷ ଭାଗରେ ବୋଧହୁଏ ନୃତ୍ୟଶିଳ୍ପୀ ଭାବରେ ସେ ଚରମ ସଫଳତା ଲାଭ କରିଥିଲେ । ଏହି ସମୟରେ ସେ ନିୟମିତ ତାଙ୍କର ମୁଖ୍ୟ ଶିଷ୍ୟା ମାଳବିକା ସାରୁକ୍କାଇଙ୍କ ସହିତ ଭାରତ ଓ ଭାରତ ବାହାରେ ନୃତ୍ୟ ପରିବେଷଣ କରିଥିଲେ ।

୧୯୬୮ରେ କେଳୁଚରଣ ନୃତ୍ୟ ନିକେତନରେ ତିନିମାସ କଟାଇଥିଲେ । ମାୟାଧର ରାଉତ ପ୍ରାୟ ଦୁଇବର୍ଷ ଶିକ୍ଷାଦାନ କରି ସେଠାରୁ ଅନ୍ୟତ୍ର ଚାଲିଯାଇଥିଲେ । ନୃତ୍ୟ ନିକେତନରେ ସୁପ୍ରତିଷ୍ଠିତ ଭାରତନାଟ୍ୟମ୍ ଓ କୁଚିପୁଡ଼ି ନୃତ୍ୟଶିଳ୍ପୀ ଯାମିନୀ କୃଷ୍ଣମୂର୍ତ୍ତି ତାଙ୍କଠାରୁ ନୃତ୍ୟ ଶିଖିଥିଲେ ।

ଯାମିନୀ ଥିଲେ ଖୁବ୍ ଖିଆଲି ଓ ନିଷ୍ଠାପର ଶିଷ୍ୟା । କେଳୁଚରଣ ତାଙ୍କ ସଂପର୍କରେ ଗୋଟିଏ ଘଟଣା ସ୍ମରଣ କରନ୍ତି :

'ଥରେ ମୁଁ ଯାମିନୀଙ୍କୁ ତାଙ୍କ ପିତାଙ୍କ ବାସଭବନରେ ଅଷ୍ଟପଦୀ 'କୁରୁ ଯଦୁନନ୍ଦନ' ଶିଖାଉଥିଲି । 'ମମ ରୁଚିରେ ଚିକୁରେ କୁରୁ ମଣ୍ଡନ' (ମୋର ମୁକ୍ତ କେଶ ସଜାଇଦିଅ, ହେ କୃଷ୍ଣ ।) ମୁଁ ବାରମ୍ବାର ସେହି ଅଭିନୟ ଦେଖାଇଲି, କିନ୍ତୁ ସେ ତାହା ପ୍ରକାଶ କରିପାରିଲେ

ନାହିଁ । ତାଙ୍କର ବାପା ସେଠାରେ ଉପସ୍ଥିତ ଥିଲେ । ସେ ମଧ୍ୟ ତାଙ୍କୁ ବୁଝାଇବାକୁ ଚେଷ୍ଟା କଲେ । ଯାମିନୀ କିନ୍ତୁ ଖୁବ୍ ବିଚଳିତ ହୋଇ ରୋଷେଇ ଘରକୁ ଧାଇଁଯାଇ ଗ୍ଲାସ୍ ଓ ପ୍ଲେଟ୍‌ସବୁ ଫିଙ୍ଗିବାକୁ ଲାଗିଲେ । ତାଙ୍କ ଭଉଣୀ ଆସି ମୋତେ ଏ ସଂପର୍କରେ କହିଲେ । ମୁଁ ତାଙ୍କୁ କହିଲି, 'ଯାମିନୀ ନିଶ୍ଚୟ ନୃତ୍ୟ ଠିକ୍ ଶିଖିପାରିବେ ।'

'ନିଜ ଗୃହରେ ଶିକ୍ଷାଲାଭ ସହିତ ଯାମିନୀ ମଧ୍ୟ କଳା ନିକେତନକୁ ଆସିବାକୁ ଲାଗିଲେ । ଦିଲ୍ଲୀରେ ସେ ଏହି ଅଷ୍ଟପଦୀ ସ୍ୱଚ୍ଛନ୍ଦ ଓ ସାବଲୀଳ ରୀତିରେ ପରିବେଷଣ କରିପାରିଥିଲେ । ଚେନ୍ନାଇରେ କିନ୍ତୁ ସେ ଏହା ପରିବେଷଣ କରିବା ସମୟରେ ମୁଁ ଉପସ୍ଥିତ ନଥିଲି । ସେ ତାଙ୍କର ନିଜର ମୃଦଙ୍ଗ ବାଦକଙ୍କୁ ସାଙ୍ଗରେ ନେଇଥିଲେ । କିଛିଦିନ ପରେ ମୁମ୍ବାଇରେ ତାଙ୍କ ସହିତ ମୋର ଦେଖାହେଲା । ସେ ମୋତେ ଅଶ୍ରୁପୂର୍ଣ୍ଣ ନେତ୍ରରେ ସମ୍ବାଦପତ୍ରମାନଙ୍କରେ ତାଙ୍କ ନୃତ୍ୟ ସଂପର୍କରେ ପ୍ରକାଶିତ ପ୍ରତିକୂଳ ମନ୍ତବ୍ୟମାନ ଦେଖାଇଲେ । ସେ କହିଲେ, ମୁଁ ତାଙ୍କ ସହିତ ନରହିଲେ ସେ ଆଉ ଓଡ଼ିଶୀ ନାଚିବେ ନାହିଁ । ଓଡ଼ିଶୀ ନୃତ୍ୟରେ ତାଙ୍କ ସହିତ ସହଯୋଗ କରିବା ପାଇଁ ମୋତେ ଆଉ ସୁଯୋଗ ମିଳି ନଥିଲା ।'

୧୯୬୯ ଅକ୍ଟୋବରରେ କେଳୁଚରଣ ଦିଲ୍ଲୀରେ ତାଙ୍କର ଓଡ଼ିଶୀ ନୃତ୍ୟ ସଂପର୍କରେ ଦ୍ୱିତୀୟ ଥର ପାଇଁ ବକ୍ତୃତା ଦେଇଥିଲେ । ଏହା ଅନୁଷ୍ଠିତ ହୋଇଥିଲା ନ୍ୟାସନାଲ୍ ମ୍ୟୁଜିୟମ୍ ଅଡିଟୋରିୟମ୍‌ରେ । ରାଣୀ କର୍ଣ୍ଣା ଓ ଡକ୍ଟର୍ ଏସ୍.କେ. ସାକ୍‌ସେନାଙ୍କ ସହଯୋଗରେ ବଦ୍ରିନାଥ ଖୋସ୍‌ଲା ଏହି ବକ୍ତୃତାର ଆୟୋଜନ କରିଥିଲେ । ସେ ନିଜେ ଏହାର ପରିଚାଳନା ମଧ୍ୟ କରିଥିଲେ । ଏ ବକ୍ତୃତାରେ କେଳୁଚରଣ ଓଡ଼ିଶୀ ନୃତ୍ୟଶୈଳୀର ବିଭିନ୍ନ ଦିଗ ଆଲୋଚନା କରିବା ସହିତ ଅଷ୍ଟପଦୀ 'ପଶ୍ୟତି ଦିଶି ଦିଶି' ନୃତ୍ୟ ପ୍ରଦର୍ଶନ କରିଥିଲେ ।

ଏହି ବକ୍ତୃତା ସଂପର୍କରେ ମୋହନ ଖୋକର୍ କୁହନ୍ତି, 'ଅଙ୍ଗଭଙ୍ଗୀ ପ୍ରଦର୍ଶନରେ କେଳୁଚରଣ ଏତେ ପାରଙ୍ଗମ ଯେ ଏଥିରେ ଆଶ୍ଚର୍ଯ୍ୟାନ୍ୱିତ ହେବାକୁ ପଡ଼େ... । ତାଙ୍କର ନୃତ୍ୟଶୈଳୀ ଯେପରି ଉନ୍ନତ, ନୃତ୍ୟ ସଂପର୍କରେ ବୁଝାମଣା ଓ ଦୃଷ୍ଟିଭଙ୍ଗୀ ସେହିପରି ଉନ୍ନତ । 'ପଶ୍ୟତି ଦିଶି ଦିଶି' ପ୍ରଦର୍ଶନ କେବଳ ସାବଲୀଳ ନଥିଲା, ଅନେକ ସମୟରେ ଏହା ଥିଲା ହୃଦୟସ୍ପର୍ଶୀ ।'[୧]

୧୯୭୦ ଜାନୁୟାରୀରେ ନୃତ୍ୟ ନିକେତନର ଛାତ୍ରଛାତ୍ରୀମାନଙ୍କ ସହିତ କେଳୁଚରଣ ରଫି ମାର୍ଗସ୍ଥିତ ଫାଇନ୍ ଆର୍ଟ୍‌ସ୍ ଥିଏଟର୍‌ରେ 'କାଞ୍ଚି ବିଜୟ' ନୃତ୍ୟନାଟିକା ପରିବେଷଣ କଲେ । ସେ ନିଜେ ଏହାର କୋରିଓଗ୍ରାଫି କରିଥିଲେ । ଏଥିରେ ରାଣୀ କର୍ଣ୍ଣା ମାଣିକ ଗଉଡୁଣୀ, ହରେକୃଷ୍ଣ ବେହେରା ଗଜପତି ସମ୍ରାଟ, କୁଙ୍କୁମ ଲାଲ୍ ମହାପ୍ରଭୁ ଜଗନ୍ନାଥ,

୧. ଦ ହିନ୍ଦୁସ୍ତାନ୍ ଟାଇମ୍ସ୍ (ନୂଆଦିଲ୍ଲୀ, ୬ ଅକ୍ଟୋବର, ୧୯୬୯) ।

ସୋନାଲ୍ ମାନସିଂ ପଦ୍ମାବତୀ ଭୂମିକାରେ ଅଭିନୟ କରିଥିଲେ । ମାହାରୀ ଭୂମିକାରେ ଥିଲେ ବୀଣା, ନଳିନୀ ଓ ଦର୍ଶନା ।

ଦିଲ୍ଲୀରେ କେଳୁଚରଣ ଖୋସ୍‌ଲାଙ୍କ ବାସଗୃହରେ କିମ୍ବା କୌଣସି ଛାତ୍ର ବା ଛାତ୍ରୀଙ୍କ ଘରେ ରହିଯାଉଥିଲେ । ୧୯୭୧ରେ ନୃତ୍ୟ ନିକେତନ ବନ୍ଦ ହୋଇଯିବା ଯାଏଁ ସେହି ଅନୁଷ୍ଠାନ ସହିତ ତାଙ୍କର ସଂପର୍କ ଥିଲା । ବିବାହ ପରେ ଖୋସ୍‌ଲାଙ୍କ ଝିଅ ବିଦେଶକୁ ଚାଲିଗଲେ; ଖୋସ୍‌ଲାଙ୍କ ଝିଆରୀ ମଧ୍ୟ ଚଳଚ୍ଚିତ୍ର ଜଗତରେ ପ୍ରବେଶ କଲେ । ଖୋସ୍‌ଲାଙ୍କର ତେଣୁ ନୃତ୍ୟ ନିକେତନ ଅନୁଷ୍ଠାନରେ ଆଉ ଆଗ୍ରହ ରହିଲା ନାହିଁ । ସେହି ବର୍ଷ ନଭେମ୍ବରରେ କୁଙ୍କୁମ ଲାଲ୍ ଦିଲ୍ଲୀରେ ମଞ୍ଚ ପ୍ରବେଶ କଲେ ।

ପୂର୍ବରୁ କେଳୁଚରଣ କୁଙ୍କୁମଙ୍କ ବାସଗୃହରେ ତିନି ମାସ କଟାଇଥିଲେ । ଏହା ଥିଲା ମଣ୍ଡି ହାଉସ୍ ନିକଟରେ କାମାନୀ ହଲ୍ ପଛରେ । ଏହି ସମୟରେ ନଳିନୀ, ସୋନାଲ୍ ଓ ଅନ୍ୟମାନେ ତାଙ୍କ ନୃତ୍ୟଶିକ୍ଷା କ୍ଲାସ୍‌ରେ ଯୋଗ ଦେଉଥିଲେ । ଏ.ଆଇ.ଏଫ୍.ଏ.ସି.ଏସ୍. ହଲ୍‌ରେ କୁଙ୍କୁମ ମଙ୍ଗଳାଚରଣ, ଶଙ୍କରାଭରଣ ଓ ସାବେରୀ ରାଗରେ ପଲ୍ଲବୀ ସହିତ 'ଯାହି ମାଧବ ଯାହି କେଶବ' ଏବଂ 'ବିଭୂଷଣ ପୁଷ୍ପେ' ଅଭିନୟ କାର୍ଯ୍ୟକ୍ରମ ପରିବେଷଣ କରିଥିଲେ ।

ଶଙ୍କରାଭରଣ ଓ ସାବେରୀ ରାଗରେ ପଲ୍ଲବୀର ସଂରଚନା ୧୯୬୫ ଓ ୬୭ରେ କୁଙ୍କୁମ ଦାସଙ୍କ କଟକ ବାସଗୃହରେ କରାଯାଇଥିଲା । ଏହି ସଂରଚନା କେଳୁଚରଣ, ଭୁବନେଶ୍ୱର ମିଶ୍ର ଓ ସଙ୍ଗୀତଜ୍ଞ ରାଖାଲ୍ ମହାନ୍ତି ଏକତ୍ର ବହୁ ପୁଙ୍ଖାନୁପୁଙ୍ଖ ଆଲୋଚନା ପରେ ପ୍ରସ୍ତୁତ କରିଥିଲେ । କେଳୁଚରଣ ସଂରଚନାର ଛନ୍ଦ ବିନ୍ୟାସ କରିଥିଲେ, ଭୁବନେଶ୍ୱର ମିଶ୍ର 'ତରିଜାମ୍' ରୀତିରେ ସୁଲଳିତ ସ୍ୱର ପ୍ରଦାନ କରିଥିଲେ ଏବଂ ରାଖାଲ୍ ମହାନ୍ତି ସଙ୍ଗୀତରେ ସହଯୋଗ କରିଥିଲେ । ପଲ୍ଲବୀର ଏହି ସଂରଚନା ଆଜି ପର୍ଯ୍ୟନ୍ତ ପିଢ଼ି ପରେ ପିଢ଼ି ଓଡ଼ିଶୀ ନୃତ୍ୟଶିକ୍ଷାର୍ଥୀମାନଙ୍କ ମଧ୍ୟରେ ଗୃହୀତ ହୋଇଆସିଛି । ଗୁରୁଙ୍କ ପରେ ଗୁରୁ ଶୁଦ୍ଧ ନୃତ୍ୟରୀତି ଭାବରେ ଏହାକୁ ଗୁରୁତ୍ୱ ପ୍ରଦାନ କରିଆସିଛନ୍ତି ।

ରାଗ ଆରବୀରେ ପରିବେଷିତ ଆଉ ଏକ ପଲ୍ଲବୀ ମଧ୍ୟ ବିଶେଷ ଜନପ୍ରିୟ ହୋଇଥିଲା । ରାଗ ଆରବୀକୁ ସାଧାରଣତଃ ରେ ରେ ପା ମା କୁହାଯାଏ, କାରଣ ଏହି ସ୍ୱର ସହିତ ପଲ୍ଲବୀ ଅଭିନୀତ ହୁଏ । ୧୯୬୮ରେ କେଳୁଚରଣ ଏହି ପଲ୍ଲବୀର ସଂରଚନା ଆରମ୍ଭ କଲେ । କିନ୍ତୁ ପ୍ରାୟ ଅଢେଇ ମାସ ସୋନାଲ୍‌ଙ୍କ ସହିତ ରୁଷ୍ ଭ୍ରମଣରେ ଯିବାରୁ ତାଙ୍କ କାର୍ଯ୍ୟରେ ବିଳମ୍ବ ଘଟିଲା । ପରେ କୁଙ୍କୁମ ଦାସ ମଧ୍ୟ ମସୁରୀରେ ପ୍ରଶାସନିକ ତାଲିମ୍ ନେବା ପାଇଁ ଚାଲିଗଲେ । ୧୯୭୧ରେ ଏହି ପଲ୍ଲବୀର ସଂରଚନା ସଂପୂର୍ଣ୍ଣ ହୋଇପାରିଲା । କେଳୁଚରଣଙ୍କ ଅନୁପସ୍ଥିତିରେ କୁଙ୍କୁମଙ୍କ ପିତା ତାଙ୍କ ଝିଅଙ୍କୁ ନାଚ ଶିଖାଇବା ପାଇଁ ପଙ୍କଜ ଚରଣଙ୍କୁ ନିମନ୍ତ୍ରଣ କଲେ ।

ଏହି ସମୟରେ ପଲ୍ଲବୀରେ ସଂଯୋଜିତ କେତେକ ଟର୍ସୋ ବ‌ ଅଙ୍ଗଚାଳନାର ପରିକଳ୍ପନା କରାଯାଇଥିଲା (ଖଣ୍ଡିଏ ନରମ କନାରେ କାଚ ଝର୍କା ପୋଛିବା ସହିତ ଏହି ଅଙ୍ଗଚାଳନାକୁ କେଳୁଚରଣ ତୁଳନା କରୁଥିଲେ) । ରୁଷ୍‌ରୁ ଫେରିବା ପରେ କେଳୁଚରଣ ଏହି ଅଙ୍ଗଚାଳନାର ପରିବର୍ଦ୍ଧନ କଲେ ଏବଂ ଏଥିରେ ଛନ୍ଦ, ଲାଳିତ୍ୟ ଓ କୋରିଓଗ୍ରାଫିର ସମନ୍ୱୟ କଲେ । ୧୯୭୨ରେ କୁଙ୍କୁମ ଲାଲ୍‌ଙ୍କ ଦ୍ୱାରା ଏହି ପଲ୍ଲବୀ ପରିବେଷିତ ହୋଇଥିଲା । ଏହା ପରଠାରୁ ପ୍ରାୟ ଅପରିବର୍ତ୍ତିତ ରହି ଏହା ଅଭିନୀତ ହୋଇଆସୁଛି ।

୧୯୭୧ ଦଶହରା ଛୁଟିରେ କେଳୁଚରଣ ଓ ଭୁବନେଶ୍ୱର ମିଶ୍ର ବାଗେଶ୍ରୀ ରାଗରେ ଅନ୍ୟ ଏକ ପଲ୍ଲବୀ ସଂରଚନା କଲେ – ଏହାର ନାମ ଗତିଭେଦ ପଲ୍ଲବୀ । ସେହି ବର୍ଷ ଡିସେମ୍ବର ମାସରେ ଦିଲ୍ଲୀରେ କୁଙ୍କୁମ ଦାସଙ୍କ ଦ୍ୱାରା ଏହା ପରିବେଷିତ ହେଲା । କେଳୁଚରଣଙ୍କ ନୃତ୍ୟ ସଂରଚନା ମଧ୍ୟରେ ଏହି ପଲ୍ଲବୀ ସବୁଠାରୁ ଜଟିଳ ଅଥଚ ଉତ୍କୃଷ୍ଟ । ଏଥିରେ ପାଞ୍ଚ ପ୍ରକାର ଗତି (ସମୟ ବିଭାଗର ସମୀକରଣ) କରାଯାଇଛି ।

ରୋଷନ୍ କୁମାରୀଙ୍କ ସହିତ କୁଙ୍କୁମ ଦାସ ମୁମ୍ବାଇର ବିର୍ଲା ମାତୃଶ୍ରୀ ହଲ୍‌ରେ ୧୯୭୨ରେ ଏହି ପଲ୍ଲବୀ ଯୁଗଳବନ୍ଦୀରେ ପରିବେଷଣ କଲେ । କଥକ ଶିଳ୍ପୀମାନଙ୍କୁ ସେମାନଙ୍କ ନୃତ୍ୟଶୈଳୀର ବିକାଶ ପାଇଁ ଏହା କେତେକ ପରିମାଣରେ ସାହାଯ୍ୟ କରିଥିଲା ।

ରାଗ ଖମାଜ ଓ ହଂସଧ୍ୱନି (୧୯୭୯), ବେଲାହାରୀ (୧୯୮୩), କିର୍‌ୱାନୀ (୧୯୮୧) ଓ ବିହାଗ (୧୯୮୮)ରେ ମିଳିତ ନୃତ୍ୟରେ କୁଙ୍କୁମ ଓ ରୋଷନ୍ ଅନ୍ୟ ନୃତ୍ୟଶିଳ୍ପୀଙ୍କ ସହିତ କେଳୁଚରଣ ଓ ଭୁବନେଶ୍ୱର ମିଶ୍ରଙ୍କ ଦିଗ୍‌ଦର୍ଶନରେ ପଲ୍ଲବୀ ପରିବେଷଣ କରିଥିଲେ । କେଳୁଚରଣ ଓ ଭୁବନେଶ୍ୱର ମିଶ୍ରଙ୍କ ମଧ୍ୟରେ ବୁଝାମଣାର ଅନ୍ତରଙ୍ଗ ସେତୁଟିଏ ଥିଲା ଯେପରି । ୧୯୯୩ରେ ଭୁବନେଶ୍ୱରଙ୍କ ମୃତ୍ୟୁପରେ କେଳୁଚରଣ ଆଉ ସେପରି ସହଯୋଗୀ ପାଇଲେ ନାହିଁ । କେଳୁଚରଣଙ୍କର ପରବର୍ତ୍ତୀ ସଂରଚନାରେ ପୂର୍ବର ଲାଳିତ୍ୟ ଓ ଛନ୍ଦର ସମନ୍ୱୟରେ ହ୍ରାସ ପାଇଲା । ପରବର୍ତ୍ତୀ ସଂରଚନାମାନଙ୍କରେ ଲାଳିତ୍ୟର ହ୍ରାସ ସହିତ ଛନ୍ଦର ବିସ୍ତୃତୀକରଣ ଘଟିଲା ।

ଦୁଃଖର ବିଷୟ, ଷଷ୍ଠ ଦଶକର ଶେଷ ବେଳକୁ ଈର୍ଷା, ହତାଶାବୋଧ ଏବଂ ସ୍ୱାର୍ଥପରତାରେ ଓଡ଼ିଶୀ ନୃତ୍ୟଜଗତ ଅତିଷ୍ଠ ହୋଇପଡ଼ିଲା । ଜୟନ୍ତିକା ଅନୁଷ୍ଠାନର ପ୍ରତିଶ୍ରୁତି ସମସ୍ତେ ଭୁଲିଗଲେ । ବ୍ୟକ୍ତିଗତ ଆକାଂକ୍ଷା ଓ ଅର୍ଥଲୋଭ ବହୁ ସମସ୍ୟା ସୃଷ୍ଟି କଲା । ମାୟାଧର ଓଡ଼ିଶା ବାହାରକୁ ଚାଲିଗଲେ । ତାଙ୍କ ଅବଦାନକୁ ଯଥାର୍ଥ ସ୍ୱୀକୃତି ନ ମିଳିବା ଏହାର କାରଣ ବୋଲି ସେ ମନେକଲେ ଏବଂ ପରୋକ୍ଷରେ ଏଥିପାଇଁ ସେ ଦାୟୀ କଲେ କେଳୁଚରଣଙ୍କୁ । ସେ ମନେକଲେ, କେଳୁଚରଣ ତାଙ୍କର ଛାତ୍ରଛାତ୍ରୀମାନଙ୍କୁ ତାଙ୍କଠାରୁ ଛଡ଼ାଇ ନେଲେ ଏବଂ ତାଙ୍କର ସୃଜନଶୀଳତାରେ ବ୍ୟାଘାତ ସୃଷ୍ଟି କଲେ ।

ହରେକୃଷ୍ଣ ବେହେରା ନିଜକୁ ପ୍ରତାରିତ ମନେ କଲେ,[୧] କାରଣ କେଳୁଚରଣ ହରେକୃଷ୍ଣଙ୍କୁ ଆରବୀ ପଲ୍ଲବୀ ନ ଶିଖିବା ପାଇଁ ପ୍ରବର୍ତ୍ତାଇଲେ ।

ହରେକୃଷ୍ଣ ଗାଆଁରୁ ଫେରି ଦେଖିଲେ, ଖୋସ୍‌ଲା ତାଙ୍କ ନୃତ୍ୟ ବିଦ୍ୟାଳୟଟି ବନ୍ଦ କରିଦେଇଛନ୍ତି । ସେ ତାଙ୍କର ଚାକିରୀ ହରାଇଲେ । ତାଙ୍କର ଛାତ୍ରଛାତ୍ରୀମାନେ କେଳୁଚରଣଙ୍କ ନିକଟରେ ତାଲିମ୍ ନେବା ଆରମ୍ଭ କରିଥିଲେ । ଆରବୀ ପଲ୍ଲବୀ ଶିକ୍ଷାକୁ ନେଇ ଉଭୟଙ୍କ ମଧ୍ୟରେ ଭୁଲ୍ ବୁଝାମଣା ସୃଷ୍ଟି ହେଲା । କେଳୁଚରଣ ହରେକୃଷ୍ଣଙ୍କୁ ଆରବୀ ପଲ୍ଲବୀ ଶିକ୍ଷା ନ ଦେବା ପାଇଁ କୁଙ୍କୁମଙ୍କୁ ପରାମର୍ଶ ଦେଲେ । କାରଣ ସେ ଚାହୁଁଥିଲେ ହରେକୃଷ୍ଣ ନିଜେ ତାଙ୍କଠାରୁ ଏହି ନୃତ୍ୟ ଶିକ୍ଷା କରନ୍ତୁ । ହରେକୃଷ୍ଣ କଥାଟା ସହଜରେ ଗ୍ରହଣ କଲେ ନାହିଁ । ସେହି ବର୍ଷ ସେ ଗାନ୍ଧର୍ବ ମହାବିଦ୍ୟାଳୟରେ ଚାକିରୀଟିଏ ପାଇଲେ । ସେଠାରେ ମାଧବୀ ମୁଦ୍‌ଗଲ୍ ତାଙ୍କଠାରୁ ଓଡ଼ିଶୀ ନୃତ୍ୟ ଶିକ୍ଷା କଲେ । ୧୯୭୪ରେ ମାଧବୀ ହରେକୃଷ୍ଣଙ୍କ ଅନୁମତିକ୍ରମେ କେଳୁଚରଣଙ୍କଠାରୁ ନୃତ୍ୟ ଶିକ୍ଷା କରିବା ଆରମ୍ଭ କଲେ । ଦୁଃଖର ବିଷୟ, ହରେକୃଷ୍ଣ ଏହା ପସନ୍ଦ କରିନଥିଲେ ।

୧୯୭୪ ଓ ୭୬ ମଧ୍ୟରେ କେଳୁଚରଣ ତ୍ରିବେଣୀ କଳା ସଙ୍ଗମରେ ନୃତ୍ୟଶିକ୍ଷା ପ୍ରଦାନ କରିବା ସମୟରେ ପୁଣି କେତେକ ସମସ୍ୟା ଦେଖାଗଲା । ଏହି ସମୟରେ କେଳୁଚରଣ ଦିଲ୍ଲୀରେ ସ୍କୁଲ୍ ହତାରେ ପ୍ରାୟ ଦୁଇମାସ ରହୁଥିଲେ । ମାୟାଧର ଓ ସୁରେନ୍ଦ୍ରନାଥ ଜେନାଙ୍କ ଛାତ୍ରଛାତ୍ରୀମାନେ ନୃତ୍ୟଶିକ୍ଷା ପାଇଁ କେଳୁଚରଣଙ୍କ ନିକଟକୁ ଆସୁଥିଲେ । ମାୟାଧର ଓ ସୁରେନ୍ଦ୍ର ଏଥିରେ ଆପତ୍ତି କରିବାରୁ କେଳୁଚରଣ ସ୍କୁଲ୍‌ର ନିର୍ଦ୍ଦେଶିକା ଶ୍ରୀମତୀ ଶ୍ରଦ୍ଧାରାଣୀଙ୍କୁ ପ୍ରସ୍ତାବ ଦେଲେ, ଗୁରୁମାନଙ୍କ ଲିଖିତ ଅନୁମତି ବିନା କାହାରିକୁ ସ୍କୁଲ୍‌ରେ ଗ୍ରହଣ କରାନଯାଉ । ଏହି ପ୍ରସ୍ତାବ ସହଜରେ ଅନ୍ୟମାନଙ୍କ ଦ୍ୱାରା ଗୃହୀତ ହୋଇ ନଥିଲା ଏବଂ କେଳୁଚରଣଙ୍କ ଜୀବନରେ କେତେକ ସମସ୍ୟା ସୃଷ୍ଟି କରିଥିଲା । ତରୁଣ ଗୁରୁମାନେ ଏହି ପ୍ରସ୍ତାବ ସହଜରେ ଗ୍ରହଣ କରିନେଲେ ମଧ୍ୟ ଅନ୍ୟମାନେ ଏଥିରୁ ନିଜକୁ ଦୂରେଇ ରଖିଲେ ।

ତ୍ରିବେଣୀରେ କେଳୁଚରଣଙ୍କଠାରୁ ନୃତ୍ୟଶିକ୍ଷା କରିଥିବା ଅନେକ ଛାତ୍ରଛାତ୍ରୀ ପୂର୍ବରୁ ବିଭିନ୍ନ ନୃତ୍ୟଶୈଳୀ ସହିତ ପରିଚିତ ଥିଲେ । ଯେପରି – ମଣିପୁରୀ (ଚାରୁ ସିଂ ଓ ଶରୋଜ୍ ଲୋୱେବ୍), ଭାରତନାଟ୍ୟମ୍ (ଜୟଲକ୍ଷ୍ମୀ ଓ ମିର୍ଣ୍ଣା ବାର୍‌ଭି), ମୋହିନୀଆଟ୍ଟମ୍ (ଭାରତୀ ଶିବାଜୀ), କଥକ (ମାଧବୀ ମୁଦ୍‌ଗଲ୍ ଓ ରାଣୀ କର୍ଣ୍ଣା) ତଥା ଆଧୁନିକ ନୃତ୍ୟ (ଶୀଲା ରାଜ୍) ।

୧୯୭୨ରେ ମୁମ୍ବାଇରେ ଆକସ୍ମିକ ଭାବରେ କେଳୁଚରଣଙ୍କୁ ଭେଟିଥିଲେ ମାଧବୀ ମୁଦ୍‌ଗଲ୍ । ମାଧବୀ ଭୁଲାଭାଇ ମେମୋରିଆଲ୍ ଇନ୍‌ଷ୍ଟିଚ୍ୟୁଟ୍‌ରେ ନୃତ୍ୟ ପ୍ରଦର୍ଶନ ପାଇଁ

୧. ଜୟନ୍ତିକା ସୋଭେନିର୍ (ନୂଆଦିଲ୍ଲୀ, ୧୯୮୫) ।

ଯାଇଥିଲେ । ହଠାତ୍ ସେ ଜାଣିଲେ, ତାଙ୍କର ପଖଉଜ ବାଦକ ହରେକୃଷ୍ଣ ଠିକ୍ ସମୟରେ ଦିଲ୍ଲୀରୁ ଆସିପାରି ନାହାନ୍ତି । ସେତେବେଳେ ମୁମ୍ବାଇରେ ଅଲ୍ ଇଣ୍ଡିଆ ରେଡ଼ିଓରେ କାର୍ଯ୍ୟ କରୁଥିଲେ ଭୁବନେଶ୍ୱର ମିଶ୍ର । ସେ ପଖଉଜ ବାଦନ କରିବାର ଥିଲା । ସେ କିନ୍ତୁ ମାଧବୀଙ୍କୁ କହିଲେ, କେଳୁଚରଣ ମୁମ୍ବାଇରେ ଅଛନ୍ତି । ମାଧବୀ ତାଙ୍କର ସାହାଯ୍ୟ ନେଇପାରନ୍ତି । ଶେଷ ମୁହୂର୍ତ୍ତରେ କୌଣସି ରିହର୍ସାଲ୍ ନକରି କେଳୁଚରଣ ସିଧା ମଞ୍ଚକୁ ଆସି ପଖଉଜ ବାଦନ କଲେ ।

ପରେ ୧୯୭୫ରେ ମାଧବୀ ଗୀତଗୋବିନ୍ଦର ହିନ୍ଦୀ ଗୀତିନାଟ୍ୟରେ କୃଷ୍ଣ ଭୂମିକାରେ ଅଭିନୟ କରିଥିଲେ । ଏହା ପଣ୍ଡିତ ମୋତିରାମ ସଙ୍ଗୀତ ନାଟକ ଏକାଡେମୀଦ୍ୱାରା ମୁମ୍ବାଇରେ ପରିବେଷିତ ହୋଇଥିଲା । ଏଥିରେ ସଙ୍ଗୀତ ନିର୍ଦ୍ଦେଶନା ଦେଇଥିଲେ ପଣ୍ଡିତ ଯଶରାଜ୍ । ଅନ୍ୟାନ୍ୟ କଳାକାରମାନଙ୍କ ମଧ୍ୟରେ ଥିଲେ ତେଜଶ୍ରୀ, ଜୟା ଧୀର୍ ଏବଂ ପ୍ରତିମା ବେଦୀ । ଏହି ଗୀତିନାଟ୍ୟ ଦଳ ବହୁ ଅଞ୍ଚଳରେ କାର୍ଯ୍ୟକ୍ରମ ପ୍ରଦର୍ଶନ କରି ଓଡ଼ିଶୀ ନୃତ୍ୟକୁ ବିଶେଷ ଜନପ୍ରିୟ କରାଇଥିଲେ ।

ମୁମ୍ବାଇରେ ପ୍ରଥମେ କେଳୁଚରଣଙ୍କ କ୍ଲାସ୍ ଅନୁଷ୍ଠିତ ହେଉଥିଲା ଚୌପାଟୀର ଯୋଗେନ୍ଦ୍ର ଦେଶାଇଙ୍କ ସ୍କୁଲ୍‌ରେ । ସେତେବେଳେ ଏହାକୁ ସଂସ୍କୃତି ଭବନ କୁହାଯାଉଥିଲା । କୌଣସି କର୍ମଶାଳା ବା ଆଲୋଚନା ପରେ କେଳୁଚରଣ ଛାତ୍ରଛାତ୍ରୀମାନଙ୍କୁ ଯେଉଁ ସଙ୍ଗୀତ କ୍ୟାସେଟ୍ ହସ୍ତାନ୍ତର କରୁଥିଲେ, ସେଥିରେ ତାଙ୍କ ସଂଯୋଜିତ ଏହି ପଦକ ଥିଲା –

'ଲାୟା ହେ କ୍ୟାସେଟ୍, ଚୌପାଟୀ ଯାଉଙ୍ଗା, ଭେଲ୍‌ପୁରି ଖାଉଙ୍ଗା, ନାଚୁଙ୍ଗା ବସନ୍ତ ପଲ୍ଲବୀ, ତା' କିଟ ଝମ୍, ତାରିକିଟ ଝମ୍ ।'

ପରେ ପ୍ରାୟ ଦୁଇବର୍ଷ ପାଇଁ ସେ ଜୟା ଧୀର୍‌ଙ୍କ ବାସଗୃହରେ ତାଙ୍କର ସଙ୍ଗୀତ ସ୍କୁଲ୍ ଚଳାଇଲେ; ପ୍ରତିମା ବେଦୀଙ୍କ ଜୁହୁସ୍ଥିତ ଓଡ଼ିଶୀ ଇନ୍‌ଷ୍ଟିଚ୍ୟୁଟ୍ ଏବଂ ୱାର୍ଡେନ୍ ରୋଡ୍‌ସ୍ଥିତ ସୋଲି ବାଟ୍‌ଲିୱାଲା ଇନ୍‌ଷ୍ଟିଚ୍ୟୁଟ୍ ସହିତ ସଂପୃକ୍ତ ହେଲେ । ୧୯୮୧ ପରଠାରୁ ବର୍ଷରେ ଦୁଇଥର ମାସିକିଆ ନୃତ୍ୟ କର୍ମଶାଳା ନରିମାନ୍ ପଏଣ୍ଟସ୍ଥିତ ନ୍ୟାସନାଲ୍ ସେଣ୍ଟର୍ ଫର୍ ଦ ପର୍‌ଫର୍ମିଙ୍ଗ୍ ଆର୍ଟ୍‌ସ୍‌ଠାରେ ପରିଚାଳନା କଲେ । ମୁମ୍ବାଇର ତାଙ୍କର ଅଧିକାଂଶ ଛାତ୍ରଛାତ୍ରୀ– ଝେଲମ୍, ଦେବୀ, ଉମା, ହେମ, ମିନଲ୍ ଏହିଠାରେ ନୃତ୍ୟଶିକ୍ଷା କରିଥିଲେ । କେହି କେହି ଅନ୍ୟ ଗୁରୁ ଶଙ୍କର ବେହେରା, ନଟବର ମହାରଣାଙ୍କଠାରୁ ପ୍ରାଥମିକ ଶିକ୍ଷାଲାଭ କରିବା ପରେ କେଳୁଚରଣଙ୍କଠାରୁ ତାଲିମ୍ ନେବାକୁ ଆସୁଥିଲେ । ଶଙ୍କର ଓ ନଟବର ମୁମ୍ବାଇରେ ସ୍ଥାୟୀ ଭାବରେ ବସବାସ କରୁଥିଲେ ।

ସପ୍ତମ ଦଶକର ଶେଷ ଭାଗକୁ କେଳୁଚରଣ ତାଙ୍କ ଗୃହ ହତା ମଧ୍ୟରେ ନୃତ୍ୟଶାଳାଟିଏ ନିର୍ମାଣ କରିସାରିଥିଲେ । ଏଥିରେ ଯେ ଅଧିକ ସଂଖ୍ୟକ ଛାତ୍ରଛାତ୍ରୀ ନୃତ୍ୟଶିକ୍ଷା କରିବା ପାଇଁ ସୁଯୋଗ ପାଇଲେ ତାହା ନୁହେଁ, ତାଲିମ୍ ନେବା ସମୟରେ

ସେମାନେ ମଧ ସେଠାରେ ରହିପାରୁଥିଲେ । ସେମାନଙ୍କ ରହିବା ପାଇଁ ଷ୍ଟୋର୍ ରୁମ୍ ଉପରେ ଆଉ ଗୋଟିଏ ବଖରା ମଧ ନିର୍ମିତ ହେଲା । ସେଥିପାଇଁ ଅବଶ୍ୟ ଷ୍ଟୋର୍ ରୁମ୍‌ର ଚାଳ ଉଠାଯାଇ କଂକ୍ରିଟ୍ ଛାତ ନିର୍ମିତ ହୋଇଥିଲା । ଏହି ବଖରାଟି ନିର୍ମିତ ହେବା ପୂର୍ବରୁ ଗିରିଧାରୀ, କିଶୋର, ଲିଙ୍ଗ, ମୁରଲୀ, ସମୀର ପ୍ରଭୃତି ଛାତ୍ରମାନେ ଗୁରୁଙ୍କ ଗୃହରେ ରାତ୍ରିରେ ରହିଯାଉଥିଲେ । ଛାତ୍ରୀମାନଙ୍କୁ କିନ୍ତୁ ସେମାନଙ୍କ ସଂପର୍କୀୟ କିମ୍ବା କଳାବିକାଶ କେନ୍ଦ୍ରର ଅତିଥିଶାଳାରେ ରହିବାକୁ ପଡୁଥିଲା । ପରେ ଷ୍ଟୋର୍ ରୁମ୍‌ର ଉପର ବଖରାରେ କେବଳ ଛାତ୍ରୀମାନେ ରହିବାର ବ୍ୟବସ୍ଥା ହେଲା । ଛାତ୍ରମାନଙ୍କୁ ରାତ୍ରିରେ ଗୁରୁଙ୍କ ଗୃହରେ ରହିବାର ଅନୁମତି ମିଳିଲା ନାହିଁ ।

ଏହି ଗୃହରେ ହିଁ ଓଡ଼ିଶୀ ନୃତ୍ୟର ମୂଳଭିତ୍ତି ଦୃଢ଼ ହେଲା । ଅତୀତର ସନ୍ଦେହର ଅନ୍ଧକାର ଘୁଞ୍ଚିଗଲା । ଓଡ଼ିଶୀ ନୃତ୍ୟ ପ୍ରତି ସମାଜରେ ଅନୁକୂଳ ମନୋଭାବ ପ୍ରକାଶିତ ହେଲା ।

ଶିକ୍ଷିତ ଘରର ଝିଅମାନେ ଅଧିକରୁ ଅଧିକ ଓଡ଼ିଶୀ ନୃତ୍ୟ ଶିଖିବା ପାଇଁ ଆଗେଇ ଆସିଲେ । ସେମାନଙ୍କର ସମ୍ମାନ ଯେପରି ସମ୍ପୂର୍ଣ୍ଣ ରକ୍ଷା କରାଯାଏ, କେଳୁଚରଣ ସେ ବିଷୟରେ ସତର୍କ ଥିଲେ । ସୋନାଲ୍ ମାନସିଂ ତାଙ୍କ ସ୍ୱାମୀଙ୍କୁ ଛାଡ଼ପତ୍ର ଦେବା ନିଷ୍ପତ୍ତି କରିବା ପରେ କେଳୁଚରଣଙ୍କ ପ୍ରତିକ୍ରିୟା ସ୍ପଷ୍ଟ ଥିଲା । ସୋନାଲ୍‌ଙ୍କୁ ସେ ଆଉ ଛାତ୍ରୀ ଭାବରେ ଗ୍ରହଣ କରିବାକୁ ପ୍ରସ୍ତୁତ ନ ଥିଲେ । ଓଡ଼ିଶୀ ନୃତ୍ୟ ଓ ପାରିବାରିକ ଜୀବନ ମଧରେ ସୁସଂପର୍କ ରହେନାହିଁ, ଏଭଳି ଧାରଣାଟିଏ ସୃଷ୍ଟି ହେବା ସେ ଚାହୁଁ ନ ଥିଲେ । ତେବେ ଅଳ୍ପ କେତେକ ବ୍ୟତିକ୍ରମକୁ ବାଦ୍ ଦେଲେ ବିବାହ ପରେ ଅଧିକାଂଶ ଛାତ୍ରୀ ଓଡ଼ିଶୀ ନୃତ୍ୟ ଶିକ୍ଷାରେ ଯୋଗ ଦେଉ ନଥିଲେ । ବିବାହ ପରେ ଛାତ୍ରୀମାନେ ନୃତ୍ୟ ଶିକ୍ଷାରୁ ଦୂରେଇ ଯିବା କେଳୁଚରଣଙ୍କୁ ଦୁଃଖ ଦେଉଥିଲା । ସୋନାଲ୍‌ଙ୍କ ପାଇଁ ଓଡ଼ିଶୀ ନୃତ୍ୟ ସଂପର୍କରେ ଭୁଲ୍ ଧାରଣା ସୃଷ୍ଟି ହେବା ସେ ଚାହୁଁ ନଥିଲେ ।

ସପ୍ତମ ଦଶକର ମଧ ଭାଗରେ ଓଡ଼ିଶୀ ନୃତ୍ୟ ଶିଖିବା ପାଇଁ ପ୍ରତିମା ବେଦୀ କଟକ ଆସିଲେ । ନୃତ୍ୟଶିକ୍ଷା ସମୟରେ ଜିନ୍‌ସ୍ ନ ପିନ୍ଧିବାକୁ ଓ ସିଗାରେଟ୍ ନ ଖାଇବାକୁ କେଳୁଚରଣ ପ୍ରତିମାଙ୍କୁ ଉପଦେଶ ଦେଲେ । ସମୟକ୍ରମେ ଅବଶ୍ୟ କେଳୁଚରଣ ଅଧିକରୁ ଅଧିକ ସହନଶୀଳ ହେଲେ ଓ ଛାତ୍ରଛାତ୍ରୀମାନଙ୍କ ବ୍ୟକ୍ତିଗତ ଜୀବନରେ ହସ୍ତକ୍ଷେପ କଲେନାହିଁ । କିନ୍ତୁ ଓଡ଼ିଶୀ ନୃତ୍ୟ ବିକାଶର ପ୍ରଥମ ଦୁଇ ଦଶକରେ ସେ ଛାତ୍ରଛାତ୍ରୀଙ୍କ ଜୀବନ ଶୈଳୀରେ ଅଧିକ ଶୃଙ୍ଖଳା ରକ୍ଷା କରିବା ଉପରେ ଗୁରୁତ୍ୱ ଦେଉଥିଲେ ।

କେଳୁଚରଣ ଯେତେ ସହନଶୀଳ ହୁଅନ୍ତୁ ପଛେ, ବିବାହିତ ଛାତ୍ରଛାତ୍ରୀମାନେ ପାରିବାରିକ ଜୀବନରେ ପରସ୍ପର ମଧରେ ଅଧିକ ବୁଝାମଣା ରକ୍ଷା କରିବା ଉପରେ ଗୁରୁତ୍ୱ ଦେଉଥିଲେ । ସ୍ୱାମୀ ସ୍ତ୍ରୀଙ୍କ ମଧରେ କଳହ ତୁଟାଇବାରେ କେବେ କେବେ ସେ ମଧସ୍ଥି

ମଧ୍ୟ କରୁଥିଲେ । ସଂଯୁକ୍ତା ଓ ତାଙ୍କର ସଂଗୀତଜ୍ଞ ସ୍ୱାମୀ ରଘୁନାଥଙ୍କ ମଧ୍ୟରେ ମତାନ୍ତର ହୋଇ ସେମାନେ ପ୍ରାୟ ଗୋଟିଏ ବର୍ଷ ଅଲଗା ଅଲଗା ରହୁଥିବା ସମୟରେ କେଳୁଚରଣ ପୁଣି ସେମାନଙ୍କୁ ଏକତ୍ର କରିପାରିଥିଲେ । ସେମାନେ ପରସ୍ପରକୁ ଛାଡ଼ିବେ ନାହିଁ ବୋଲି ଜଗନ୍ନାଥଙ୍କ ସମ୍ମୁଖରେ ପ୍ରତିଜ୍ଞା ମଧ୍ୟ କରିଥିଲେ । ତାଙ୍କର ଜଣେ ବଙ୍ଗାଳୀ ଛାତ୍ରୀ ସୁତପା ଦାସଗୁପ୍ତ ନବମ ଦଶକର ପ୍ରଥମ ଭାଗରେ ଘଟିଥିବା ଘଟଣାଟିଏ ସ୍ମରଣ ରଖିଛନ୍ତି । ସେତେବେଳେ କେଳୁଚରଣ ତାଙ୍କ ବାସଗୃହରେ ରହି ନୃତ୍ୟ ରିହର୍ସାଲ୍ କରୁଥା'ନ୍ତି । ସାମାନ୍ୟ ଭୁଲ୍ ବୁଝାମଣା ପାଇଁ ସୁତପାଙ୍କ ସ୍ୱାମୀ ଅଡ଼ି ବସିଲେ, ସେ ଆଉ ନୃତ୍ୟ ରିହର୍ସାଲ୍‌ରେ ଉପସ୍ଥିତ ରହିବେ ନାହିଁ । ଏପରି ନ କରିବା ପାଇଁ କେଳୁଚରଣ ଲୋତକପୂର୍ଣ୍ଣ ନେତ୍ରରେ ତାଙ୍କୁ ବୁଝାଇଲେ । ସୁତପାଙ୍କ ସ୍ୱାମୀ ଉପସ୍ଥିତ ନ ରହିଲେ, ସେ ନିଜେ ରିହର୍ସାଲ୍‌ରେ ଭାଗ ନେବେ ନାହିଁ ବୋଲି କହିଲେ । ସୁତପାଙ୍କ ସ୍ୱାମୀ ରିହର୍ସାଲ୍‌ରେ ଭାଗ ନେବେ ବୋଲି ପ୍ରତିଶ୍ରୁତି ଦେଲେ ଏବଂ ସେ ରିହର୍ସାଲ୍‌ରେ ପ୍ରଥମ ଧାଡ଼ିରେ ହସ ହସ ଭଙ୍ଗୀରେ ବସି ରହିବା ପରେ କେଳୁଚରଣ କାର୍ଯ୍ୟକ୍ରମରେ ଭାଗ ନେଲେ ।

ନିଜ ପରିବାରର ସୁଖ ସ୍ୱାଚ୍ଛନ୍ଦ୍ୟ ପ୍ରତି କେଳୁଚରଣ ସବୁବେଳେ ଦୃଷ୍ଟି ଦେଉଥିଲେ । ଲକ୍ଷ୍ମୀପ୍ରିୟା କୌଣସି କାରଣରୁ ସାମାନ୍ୟ ବିଚଳିତ ହୋଇପଡ଼ିଲେ କେଳୁଚରଣ ଆବଶ୍ୟକୀୟ ପ୍ରତିକାର କରୁଥିଲେ । କୌଣସି କାରଣରୁ ଲକ୍ଷ୍ମୀପ୍ରିୟା ଉଚ୍ଚ ସ୍ୱରରେ କଥା କହିଲେ କେଳୁଚରଣ ଯାହା କରୁଥା'ନ୍ତୁ ନା କାହିଁକି, ତାହା ବନ୍ଦ ରଖି ସ୍ତ୍ରୀଙ୍କ ନିକଟକୁ ଧାଇଁ ଯାଉଥିଲେ । ସ୍ତ୍ରୀଙ୍କ ସମସ୍ୟାର ସମାଧାନ ନ ହେବା ଯାଏଁ ସେ ନିଜ କାର୍ଯ୍ୟରେ ମନୋନିବେଶ କରିପାରୁ ନଥିଲେ । ପରିବାରରେ ଶାନ୍ତି ରକ୍ଷା କରିବା ଥିଲା ତାଙ୍କ ପାଇଁ ସବୁଠାରୁ ବଡ଼ କଥା । ସ୍ତ୍ରୀଙ୍କର ସବୁ ଇଚ୍ଛା ଓ ଖିଆଲ ପ୍ରତି ସେ ଦୃଷ୍ଟି ଦେଉଥିଲେ । ଘରର ସମସ୍ତ ଦାୟିତ୍ୱ ସେ ସ୍ତ୍ରୀଙ୍କ ଉପରେ ଛାଡ଼ି ଦେଇଥିଲେ; ଯୁକ୍ତିତର୍କ ବା ହସ୍ତକ୍ଷେପ କରୁ ନଥିଲେ । ଟ୍ରେନ୍‌ରେ ଯାତ୍ରା ସମୟରେ ସେ ସ୍ତ୍ରୀଙ୍କୁ ଯେପରି ସୁରକ୍ଷା ପ୍ରଦାନ କରୁଥିଲେ, ତାହା ଯଥାର୍ଥରେ ଦେଖିବାର କଥା । ସ୍ତ୍ରୀଙ୍କର ଶଯ୍ୟା ପ୍ରସ୍ତୁତ କରୁଥିଲେ; ସେ ନିଦରେ ଶୋଇବା ପର୍ଯ୍ୟନ୍ତ ତାଙ୍କ ପାଖରେ ବସିରହୁଥିଲେ; ଅନ୍ୟ ଯାତ୍ରୀମାନଙ୍କ ଯୋଗୁ ତାଙ୍କର ଯେପରି କୌଣସି ଅସୁବିଧା ନହୁଏ, ସେଥିପ୍ରତି ସତର୍କ ରହୁଥିଲେ ।

କୌଣସି ନୂତନ ନୃତ୍ୟ କାର୍ଯ୍ୟକ୍ରମର ଆୟୋଜନ କରିବା ସମୟରେ ଲକ୍ଷ୍ମୀପ୍ରିୟା ତାଙ୍କ ନିକଟରେ ଉପସ୍ଥିତ ରହୁଥିଲେ । ତାଙ୍କର ପ୍ରଥମ କାର୍ଯ୍ୟକ୍ରମ ସେ ସ୍ତ୍ରୀଙ୍କ ସମ୍ମୁଖରେ ହିଁ ପରିବେଷଣ କରୁଥିଲେ । ଆମେ ତାଙ୍କର ଛାତ୍ରଛାତ୍ରୀମାନେ ଅନେକ ସମୟରେ କହୁଥିଲୁ, ପୂର୍ବଜନ୍ମର କର୍ମଫଳରୁ ଗୁରୁମା' ଏ ଜନ୍ମରେ ଏଭଳି ଆଦର୍ଶ ସ୍ୱାମୀଟିଏ ପାଇଛନ୍ତି ।

ବର୍ତ୍ତମାନ କେଳୁଚରଣ ବିଭିନ୍ନ ସ୍ଥାନ ଭ୍ରମଣ କରି ବିଭିନ୍ନ ନୃତ୍ୟକେନ୍ଦ୍ରମାନଙ୍କରେ ନିଜ କାର୍ଯ୍ୟକ୍ରମ ପରିବେଷଣ କରିବା ପାଇଁ ସମୟ ପାଇଲେ । ଗ୍ରୀଷ୍ମ ଋତୁରେ ନିଜ

ବାସଗୃହରେ ଛାତ୍ରଛାତ୍ରୀମାନଙ୍କୁ ତାଲିମ୍ ଦେଇପାରୁଥିଲେ । ତାଙ୍କର କାର୍ଯ୍ୟ ଓ ଜୀବନଶୈଳୀ ମଧ୍ୟରେ ଯଥାର୍ଥ ସମନ୍ୱୟ ରହୁଥିଲା । ସେଥିପାଇଁ ନିର୍ଦ୍ଦିଷ୍ଟ ସମୟ ସୂଚୀ ମଧ୍ୟରେ ଶିକ୍ଷାଦାନ କରିବା ତାଙ୍କ ପକ୍ଷରେ ସମ୍ଭବ ହେଉଥିଲା ।

ତାଲିମ୍ ଦେବା ସମୟରେ ଘଣ୍ଟାର ସମୟକୁ ନୁହେଁ, ଅଧ୍ୟବସାୟକୁ ସେ ଅଧିକ ଗୁରୁତ୍ୱ ଦେଉଥିଲେ । କାର୍ଯ୍ୟକ୍ରମରେ ସେ ଏତେ ମଜ୍ଜିଯାଉଥିଲେ ଯେ ଦିନ ଓ ରାତି ମଧ୍ୟରେ ପାର୍ଥକ୍ୟ ତାଙ୍କୁ ଜଣାପଡୁ ନଥିଲା । କେହି ଜଣେ ବନ୍ଧୁ ନିକଟରେ ଥିଲେ ଅବଶ୍ୟ ସେ ସମୟ ସଂପର୍କରେ ସତର୍କ ରହୁଥିଲେ । ଥରେ ଅବିନାଶ ପଣ୍ଡିତ ଫଟୋ ଉଠାଇବା ପାଇଁ ଓଡ଼ିଶା ଆସିଥିଲେ । ସେହି ଅବସରରେ ସେ କେଳୁଚରଣଙ୍କ କର୍ମଶାଳାକୁ ଆସିଲେ । କେଳୁଚରଣ ତାଙ୍କ ଛାତ୍ରୀମାନଙ୍କୁ ଅଷ୍ଟପଦୀର ଗୋଟିଏ ଧାଡ଼ି ବାରମ୍ବାର ଶିଖାଉଥାନ୍ତି । କାରଣ, ଛାତ୍ରୀମାନେ ସେ ଧାଡ଼ିର ଅର୍ଥ ଠିକ୍ ବୁଝିପାରୁ ନଥାନ୍ତି । ଶେଷରେ କେଳୁଚରଣ କହିଲେ, 'ଆଜି ଏତିକି ଥାଉ । କାରଣ ମୋର ଜଣେ ଅତିଥି ଅଛନ୍ତି । ତାଙ୍କ ପାଇଁ ରାତ୍ରିଭୋଜନର ବ୍ୟବସ୍ଥା କରିବାକୁ ପଡ଼ିବ ।' ସେତେବେଳକୁ ପ୍ରାୟ ଅର୍ଦ୍ଧରାତ୍ରି ।

ଠାକୁରମାନଙ୍କର ସନ୍ଧ୍ୟା ଆଳତିର ସମୟରେ କିନ୍ତୁ କେବେ ବ୍ୟତିକ୍ରମ ହେଉ ନଥିଲା । କେଳୁଚରଣ ନିୟମିତ ଛାତ୍ରଛାତ୍ରୀମାନଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ଏଥିରେ ଘଣ୍ଟ ବଜାଉଥିଲେ । ଏହାପରେ ଭଜନ ଓ ପ୍ରାର୍ଥନା କରାଯାଉଥିଲା ।

ନୃତ୍ୟଶିକ୍ଷା କାର୍ଯ୍ୟକ୍ରମରେ ବାରମ୍ବାର ବିଭିନ୍ନ ସ୍ଥାନକୁ ଯାଉଥିବାରୁ କେହି କେହି ତାଙ୍କୁ ନାମ ଦେଲେ, 'ଜେଟ୍ ସେଟ୍ ଗୁରୁ' । ନୃତ୍ୟରେ ସେ 'କୁଇକ୍ ଫର୍ମୁଲା' ବା ଆଶୁ ସଫଳତାର ଯୁଗ ଆରମ୍ଭ କଲେ ବୋଲି ତାଙ୍କ ପ୍ରତି ଆକ୍ଷେପ କରାଗଲା । ତାଙ୍କ ବିରୋଧୀମାନେ କହିଲେ, ଅଳ୍ପ କେତୋଟି ନୃତ୍ୟ କ୍ଲାସ୍‌ରେ ଯୋଗ ଦେଲେ ସର୍ବସାଧାରଣରେ ଜଣେ ଅକ୍ଳେଶରେ କାର୍ଯ୍ୟକ୍ରମଟିଏ ପରିବେଷଣ କରିପାରିବ । ବାସ୍ତବରେ କେଳୁଚରଣ ତାହା ଚାହୁଁ ନଥିଲେ । ଶିକ୍ଷାଦାନରେ ସେ କଠୋର ଅଧ୍ୟବସାୟ ଏବଂ ନିଷ୍ଠା ଉପରେ ଗୁରୁତ୍ୱ ଦେଉଥିଲେ । ତେବେ ଅନେକ କିଛି ନିର୍ଭର କରୁଥିଲା ଛାତ୍ରଛାତ୍ରୀମାନଙ୍କ ଉପରେ । ସେମାନଙ୍କ ନିଷ୍ଠା ଏବଂ ସାଧନା ଉପରେ ସଫଳତା ନିର୍ଭର କରୁଥିଲା ।

ତାଙ୍କର ଅନୁଭୂତି ବ୍ୟାପକ ହେବା ସହିତ ଓଡ଼ିଶୀ ନୃତ୍ୟଶୈଳୀର ମୌଳିକ ରୀତି ଉପରେ ତାଙ୍କର ଧ୍ୟାନ ଅଧିକରୁ ଅଧିକତର ହେବାକୁ ଲାଗିଲା । ଅନ୍ୟାନ୍ୟ ଶାସ୍ତ୍ରୀୟ ନୃତ୍ୟରେ ତାଲିମ୍ ପାଇଥିବା ଶିଳ୍ପୀମାନଙ୍କ ପ୍ରଶ୍ନର ଉତ୍ତର ଦେବାକୁ ଯାଇ ଓଡ଼ିଶୀ ନୃତ୍ୟକୁ ଅଧିକରୁ ଅଧିକ ମାର୍ଜିତ କରିବା ପାଇଁ ସେ ଉଦ୍ୟମ କଲେ ।

କ୍ରମଶଃ ପାଦ ଚାଳନା ଓ ପଖାଉଜ ବାଦନ ମଧ୍ୟରେ ସେ ଅଧିକ ସମନ୍ୱୟ ରଖିବାକୁ ଶିଖିଲେ । ଶରୀରର କଟି ଉପରର ଅଂଶଦ୍ୱାରା ପ୍ରଦର୍ଶିତ ତ୍ରିଭଙ୍ଗ ଓ ଚଉକ ଠାଣି ଅଧିକ ଲାସ୍ୟମୟ ହେଲା । ଓଡ଼ିଶୀ ଘରାନା ବା ଶୈଳୀରେ କେଳୁଚରଣଙ୍କ ପ୍ରଭାବ ସ୍ପଷ୍ଟରୁ ସ୍ପଷ୍ଟତର

ହେଲା । ଅଷ୍ଟ ଦଶକର ପ୍ରଥମ ଭାଗ ବେଳକୁ କେଳୁଚରଣଙ୍କ ନୃତ୍ୟଶୈଳୀରେ ଏକ ପ୍ରକାରର ସଂପୂର୍ଣ୍ଣତା ଆସିଲା ।

ଯଦିଓ ଗୋଟିପୁଅ ନୃତ୍ୟରେ ମଧ୍ୟ ତ୍ରିଭଙ୍ଗ ଶୈଳୀ ପ୍ରଦର୍ଶିତ କରାଯାଏ, କେଳୁଚରଣଙ୍କ ଓଡ଼ିଶୀ ନୃତ୍ୟର ତ୍ରିଭଙ୍ଗରେ ଅଧିକ ଲାସ୍ୟ ଓ ଲାଳିତ୍ୟ ପ୍ରକାଶ ପାଇଲା । କଟି ଉପର ଅଂଶର ଦୋଳନ ଏବଂ କଟି ନିମ୍ନ ଅଂଶର ସ୍ଥିରତା ପ୍ରଦର୍ଶନରେ କେଳୁଚରଣ ଶାସ୍ତ୍ରୀୟ ଓଡ଼ିଶୀ ନୃତ୍ୟକୁ ସମୃଦ୍ଧ କରିଛନ୍ତି ।

ଷଷ୍ଠ ଦଶକର ମଧ୍ୟ ଭାଗ ଯାଏଁ ମୂଳ ପଦଚାଳନାର ସଂଖ୍ୟା ଥିଲା ଛଅ । ପ୍ରତି ପଦଚାଳନାରେ ତିନି ବା ଚାରି ପ୍ରକାରର ରୀତି ଥିଲା । ବର୍ତ୍ତମାନ ତ୍ରିଭଙ୍ଗୀ ଓ-ଚଉକ ଠାଣିରେ ପଦଚାଳନାର ରୀତି ହେଲା ଦଶ । ପଦଚାଳନାରେ ଅଧିକ ଭାବ ପ୍ରକାଶ ପାଇଲା । ଜୟନ୍ତିକା ଅନୁଷ୍ଠାନରେ ବଟୁ ଯେପରି ପରିବେଷିତ ହେଉଥିଲା, ବର୍ତ୍ତମାନ ତାହା ଅଧିକ ମାର୍ଜିତ ରୂପ ନେଲା ।

ସପ୍ତମ ଦଶକର ଆରମ୍ଭ ବେଳକୁ କେଳୁଚରଣ ନୂଆ କିଣିଥିବା ତାଙ୍କର ଭିକି ମୋପେଡ୍ ସହିତ ଦିଲ୍ଲୀରୁ ଫେରିଲେ । 'କାଞ୍ଚି ବିଜୟ' ଗୀତିନାଟ୍ୟ ପାଇଁ ଖୋସ୍‌ଲାଙ୍କଠାରୁ ପାଇଥିବା ଅର୍ଥ, ଛାତ୍ରଛାତ୍ରୀମାନଙ୍କ ଦ୍ୱାରା ପ୍ରଦତ୍ତ ପାରିଶ୍ରମିକ ଓ ନିଜ ସଞ୍ଚିତ ଅର୍ଥରେ ସେ ଏହା କିଣିପାରିଥିଲେ । ଫର ଫର ଧୋତି ଉଡ଼ାଇ, ନୂଆ ଭିକି ଆରୋହଣ କରି ସେ ଆନନ୍ଦରେ କଟକରେ ଘୂରି ବୁଲିବାର ଦେଖାଗଲା । ସେ ପ୍ରାୟ ପ୍ରାଇଭେଟ୍ ଟ୍ୟୁସନ୍ ବନ୍ଦ କରିଦେଇଥିଲେ; ଗ୍ରୀଷ୍ମ ଛୁଟିରେ କଳାବିକାଶ କେନ୍ଦ୍ରରେ ସ୍ଥାନୀୟ ଛାତ୍ରଛାତ୍ରୀମାନଙ୍କୁ ନୃତ୍ୟଶିକ୍ଷା ଦେଉଥିଲେ ।



୧୯୮୪ରେ ସୁଇଜରଲାଣ୍ଡରେ କେଳୁଚରଣ ଓ ସଂଯୁକ୍ତା

ସପ୍ତମ ଦଶକ ଆରମ୍ଭରେ ଯେଉଁ ଓଡ଼ିଆ ଛାତ୍ରଛାତ୍ରୀମାନେ ତାଙ୍କଠାରୁ ନୃତ୍ୟଶିକ୍ଷା କରୁଥିଲେ, ସେମାନଙ୍କ ମଧ୍ୟରେ ଥିଲେ ନନ୍ଦିତା ପଟ୍ଟନାୟକ, ସିକତା ଦାସ, ସବିତା ସାହୁ, ସରିତା ମହାପାତ୍ର, ପ୍ରୀତି ମହାପାତ୍ର, ଇତିଶ୍ରୀ ପଣ୍ଡା, ପ୍ରଣତି ପରିଡ଼ା, ପ୍ରଭାତୀ ପଣ୍ଡା ଓ ଗିରିଧାରୀ ନାୟକ । ସେମାନଙ୍କ ମଧ୍ୟରୁ ନନ୍ଦିତା, ଗିରିଧାରୀ, ପ୍ରଣତି ଓ ଇତିଶ୍ରୀ କେଳୁଚରଣଙ୍କ ଦ୍ୱାରା ଅଧିକ ତାଲିମ୍ ପ୍ରାପ୍ତ ହେବା ପାଇଁ କେନ୍ଦ୍ର ସରକାରଙ୍କ ଦ୍ୱାରା ବୃତ୍ତି ଲାଭ କଲେ ଏବଂ କଳାବିକାଶ କେନ୍ଦ୍ରର ଗ୍ରୀଷ୍ମକାଳୀନ ପ୍ରଶିକ୍ଷଣ ପରେ କେଳୁଚରଣଙ୍କ ଗୃହରେ ଅଧିକ ଶିକ୍ଷାଲାଭ କଲେ ।

ଏହି ସମୟରେ ଷଷ୍ଠ ଦଶକରେ ସଂରଚିତ ଗୀତଗୋବିନ୍ଦ, ଶକୁନ୍ତଳା, କୋଣାର୍କ ଓ କାଞ୍ଚି ବିଜୟ ଭଳି କେତେକ ନୃତ୍ୟନାଟିକା ପୁନର୍ବାର ଅଭିନୀତ ହେଲା । କଟକର ଶ୍ରୀରାମଚନ୍ଦ୍ରଭଞ୍ଜ ମେଡିକାଲ କଲେଜରେ ବିଜ୍ଞାନ ଓ ଚିକିତ୍ସା ବିଦ୍ୟା ଅଧିବେଶନରେ ଏଗୁଡ଼ିକ ପ୍ରଦର୍ଶିତ ହୋଇଥିଲା । ନିଶ୍ଚେତକ ବିଦ୍ୟାର ବିଶେଷଜ୍ଞ ଡକ୍ଟର ଅନଙ୍ଗ ଦ୍ୱିବେଦୀଙ୍କର ଅଭିନୟରେ ବିଶେଷ ଆଗ୍ରହ ଥିଲା ଏବଂ ତାଙ୍କ ପାଇଁ କେଳୁଚରଣଙ୍କର ଏହି ନୃତ୍ୟନାଟିକାଗୁଡ଼ିକ ପ୍ରଦର୍ଶିତ ହୋଇପାରିଥିଲା ।

୧୯୭୫ରେ ପାଥୋଲୋଜି ଓ ମାଇକ୍ରୋବାୟୋଲୋଜିର ଅଧିବେଶନରେ 'କୋଣାର୍କ' ନୃତ୍ୟନାଟିକା ମଞ୍ଚସ୍ଥ ହେବାର ଥିଲା । ଏଥିରେ ଡକ୍ଟର ଅନଙ୍ଗ ଦ୍ୱିବେଦୀ ବିଶୁ ମହାରଣା ଭୂମିକାରେ ଅଭିନୟ କରୁଥା'ନ୍ତି । ବିଶୁ ମହାରଣା ଥିଲେ କୋଣାର୍କର ମୁଖ୍ୟ ସ୍ଥପତି । ତାଙ୍କର ତତ୍ତ୍ୱାବଧାନରେ ନିର୍ମିତ ହେଉଥିଲା ମନ୍ଦିରଟି । ଅନଙ୍ଗ କିନ୍ତୁ ନାଟକ ମଞ୍ଚସ୍ଥ ହେବାର ମାତ୍ର ଗୋଟିଏ ସପ୍ତାହ ପୂର୍ବରୁ ବିଶୁ ମହାରଣା ଭୂମିକାରେ ଅଭିନୟ କରିବାକୁ ନିଜର ଅସାମର୍ଥ୍ୟ ପ୍ରକାଶ କଲେ । ବର୍ତ୍ତମାନ କେଳୁଚରଣ ନିଜେ ସେହି ଭୂମିକାରେ ଅଭିନୟ କରିବା ବ୍ୟତୀତ ତାଙ୍କର ଅନ୍ୟ ଉପାୟ ନଥିଲା । 'କୋଣାର୍କ' ନୃତ୍ୟ ନାଟିକା ପରବର୍ତ୍ତୀ ସମୟରେ ଯେତେଥର ମଞ୍ଚସ୍ଥ ହେଲା, କେଳୁଚରଣ ସେଥିରେ ବିଶୁ ମହାରଣା ଭୂମିକାରେ ଅଭିନୟ କଲେ । କେଳୁଚରଣ ଏତେ ଚମତ୍କାର ଅଭିନୟ କରୁଥିଲେ ଯେ ଅନ୍ୟ କେହି ହୁଏତ ସେପରି କରିପାରି ନଥା'ନ୍ତେ । 'କାଞ୍ଚି ବିଜୟ' ନାଟକରେ କାଞ୍ଚିର ସମ୍ରାଟ ଏବଂ 'ଗୀତ ଗୋବିନ୍ଦ' ନୃତ୍ୟନାଟିକାରେ ଜୟଦେବ ଭୂମିକାରେ ସେ ଅଭିନୟ କରିଥିଲେ ।

ଫେବୃୟାରୀ ୧୯୭୨ରେ କଲିକତାରେ ନୃତ୍ୟ ପ୍ରଦର୍ଶନ ପରେ, ବିବାହ ପରେ ପ୍ରାୟ ଦଶବର୍ଷ କୁଙ୍କୁମ ଦାସ ନୃତ୍ୟ କାର୍ଯ୍ୟକ୍ରମଠାରୁ ନିଜକୁ ଦୂରେଇ ନେଲେ । ସଂଯୁକ୍ତା କିନ୍ତୁ ପାରିବାରିକ ଜଞ୍ଜାଳ ଓ ଦୁଇଟି ସନ୍ତାନର ଜନନୀ ହେବା ସତ୍ତ୍ୱେ ବାରମ୍ବାର ତାଙ୍କର କାର୍ଯ୍ୟକ୍ରମ ପ୍ରଦର୍ଶନ କରୁଥିଲେ । ସେତେବେଳେ ତାଙ୍କ ପାଇଁ ଦୁଇଟି ଉଲ୍ଲେଖଯୋଗ୍ୟ ନୃତ୍ୟ କାର୍ଯ୍ୟକ୍ରମ ପ୍ରସ୍ତୁତ କରାଯାଇଥିଲା । ତୁଳସୀ ଦାସଙ୍କ ରାମଚରିତ ମାନସକୁ ଆଧାର କରି 'ସୀତାହରଣ' ଏବଂ ଶଙ୍କରାଚାର୍ଯ୍ୟଙ୍କ ରଚନାକୁ ଆଧାର କରି 'ଅର୍ଦ୍ଧନାରୀଶ୍ୱର ।'

'ସୀତାହରଣ' ସଂରଚିତ ହୋଇଥିଲା ୧୯୭୩ରେ ଦିଲ୍ଲୀରେ ଅନୁଷ୍ଠିତ 'ତୁଳସୀ ଦାସ ସମାରୋହ' ପାଇଁ । 'ଅର୍ଦ୍ଧନାରୀଶ୍ୱର' ୧୯୭୭ରେ ସଂରଚିତ ହୋଇଥିଲା । କେଳୁଚରଣ ସଂଯୁକ୍ତାଙ୍କ ସହିତ ବିଭିନ୍ନ କାର୍ଯ୍ୟକ୍ରମରେ ଯାଇପାରିଲେ ନାହିଁ । ତେଣୁ ତାଙ୍କର ସଂପର୍କୀୟ ଭାଇ ବନମାଳୀ ମହାରଣା ସଂଯୁକ୍ତାଙ୍କ ସହିତ ବିଭିନ୍ନ ସ୍ଥାନକୁ ଗଲେ ।

କେଳୁଚରଣ ଯଦିଓ ଶହ ଶହ ଛାତ୍ରଛାତ୍ରୀଙ୍କୁ ନୃତ୍ୟଶିକ୍ଷା ପ୍ରଦାନ କରିଥିଲେ, କୁଙ୍କୁମ ଓ ସଂଯୁକ୍ତାଙ୍କ ପ୍ରତି ତାଙ୍କର ମନୋଭାବ ଥିଲା ପିତୃସୁଲଭ ଓ ସ୍ନେହଶୀଳ । କୁଙ୍କୁମ ଓ ସଂଯୁକ୍ତାଙ୍କ ବ୍ୟକ୍ତିତ୍ୱ ଥିଲା ଭିନ୍ନ ଧରଣର । କୁଙ୍କୁମ ଥିଲେ କେତେକାଂଶରେ ମେଳାପୀ ଓ ସହଜ ପ୍ରକୃତିର । ସଂଯୁକ୍ତା ଅଧିକ ଗମ୍ଭୀର ଓ ପେଶାଦାର ମନୋବୃତ୍ତି ସଂପନ୍ନ । କେଳୁଚରଣ ଏମାନଙ୍କୁ ବିଭିନ୍ନ ନୃତ୍ୟନାଟିକାରେ ପୁରୁଷ ଓ ନାରୀ ଭୂମିକାରେ ଅଭିନୟ କରିବା ପାଇଁ ମନୋନୀତ କରୁଥିଲେ । ପାଞ୍ଚ ବର୍ଷ ବୟସରୁ ସେମାନଙ୍କୁ ସେ ଜାଣିଥିଲେ ଏବଂ ସେମାନଙ୍କୁ ନିଜ ପରିବାରର ସଦସ୍ୟ ଭାବରେ ଗ୍ରହଣ କରିଥିଲେ ।

ଷଷ୍ଠ ଦଶକର ମଧ୍ୟ ଭାଗରେ କେଳୁଚରଣ କୁଙ୍କୁମଙ୍କ ପାଇଁ ତାଙ୍କ ବାପାଙ୍କ ପୁରୁଣା ଧୋତି ହାତରେ ସିଲାଇ କରି କଷ୍ଟ୍ୟୁମ୍ (ପୋଷାକ) ତିଆରି କରିଥିଲେ । ସେତେବେଳେ ଭାଗିରଥୀ ସେଠାରେ ଉପସ୍ଥିତ ଥିଲେ । ସେ ଏଥିରେ ଆଶ୍ଚର୍ଯ୍ୟ ହୋଇଯାଇଥିଲେ । ପରେ ଭାଗିରଥୀ ଓଡ଼ିଶୀ ନୃତ୍ୟଶିକ୍ଷାର୍ଥୀମାନଙ୍କ ପାଇଁ କଷ୍ଟ୍ୟୁମ୍ ପ୍ରସ୍ତୁତ କଲେ । କଳାବିକାଶ କେନ୍ଦ୍ରର ଅନେକ ନୃତ୍ୟଶିକ୍ଷାର୍ଥୀଙ୍କୁ କେଳୁଚରଣ କଷ୍ଟ୍ୟୁମ୍ ପରିଧାନ କରିବାରେ ସହାୟତା କରୁଥିଲେ । ସେପର୍ଯ୍ୟନ୍ତ ଶାଢ଼ି ସିଲେଇକରି କଷ୍ଟ୍ୟୁମ୍ ପ୍ରସ୍ତୁତ କରିବା ଆରମ୍ଭ ହୋଇ ନଥିଲା । ସାଢେ ଚାରି ଗଜର ଶାଢ଼ିକୁ କଷ୍ଟ୍ୟୁମ୍ ଭାବରେ ବ୍ୟବହାର କରାଯାଉଥିଲା । କଷ୍ଟ୍ୟୁମ୍ ପରିଧାନ କରାଇବାର ଅନୁଭୂତିରୁ କେଳୁଚରଣ ବୁଝିପାରିଥିଲେ- ଶାଢ଼ିର କେଉଁ ଅଂଶ ଶରୀରର କେଉଁ ଅଂଶ ଆବୃତ୍ତ କରିବା ଯଥାର୍ଥ ହେବ । ଭାଗିରଥୀ ଥିଲେ କୁଙ୍କୁମଙ୍କ ପରିବାରର ଦରଜି । କେଳୁଚରଣଙ୍କ ସଂସ୍ପର୍ଶରେ ଆସି ତାଙ୍କ ଜୀବନର ଗତି ଯେ ବଦଳିଯିବ, ଏହା ସେ କଳ୍ପନା କରି ନଥିଲେ । କେତେକ ବର୍ଷ ପରେ କେଳୁଚରଣଙ୍କଠାରୁ ବାରମ୍ବାର ଗାଳି ଶୁଣିବା ପରେ, ଶେଷରେ ଭାଗିରଥୀ ଓଡ଼ିଶୀ କଷ୍ଟ୍ୟୁମ୍ ପ୍ରସ୍ତୁତ କରିବା ଭଲ ଭାବରେ ଶିଖିଗଲେ ଓ କେବଳ ତାହା କରି ଜୀବିକାର୍ଜ୍ଜନ କଲେ ।

ଶାଢ଼ିରେ ସିଲେଇ କରାଯାଇଥିବା ଓଡ଼ିଶୀ କଷ୍ଟ୍ୟୁମ୍ ପିନ୍ଧିବାର ପ୍ରଥମ ସୁଯୋଗ ମିଳିଥିଲା କୁଙ୍କୁମଙ୍କୁ । ସଂଯୁକ୍ତା କିନ୍ତୁ ୧୯୬୩ରେ ହାଇଦ୍ରାବାଦ୍‌ରେ ଅନୁଷ୍ଠିତ ସର୍ବଭାରତୀୟ ନୃତ୍ୟ ଆଲୋଚନାଚକ୍ରରେ ବେଙ୍ଗପାଟିଆ (ରୁପା ନିର୍ମିତ ବେଲ୍‌ଟ୍) ପିନ୍ଧିଲେ । ମହେଶ୍ୱର ମହାପାତ୍ରଙ୍କ ଲିଖିତ 'ଅଭିନୟ ଚନ୍ଦ୍ରିକା' ଗ୍ରନ୍ଥରେ ବେଙ୍ଗମୁଖ ନାମକ ଅଳଙ୍କାରର ଉଲ୍ଲେଖ ଅଛି । ଏହା କଟିରେ ପିନ୍ଧାଯାଏ । ସେଯାଏଁ କେହି ଏହି ଅଳଙ୍କାରଟି ସଂପର୍କରେ

ଜାଣିନଥିଲେ । ଦିନେ ଧୀରେନ୍ଦ୍ରନାଥ ପଟ୍ଟନାୟକ ପୁରୀର ହରିହର ଖୁଣ୍ଟିଆଙ୍କୁ ଏ ସଂପର୍କରେ ପଚାରିଲେ । ଖୁଣ୍ଟିଆ ଓଡ଼ିଶୀ ଶିଖାଇବାକୁ ଭୁବନେଶ୍ୱରର କଳାକେନ୍ଦ୍ରକୁ ଆସିବାର ଥିଲା । ମା'ଙ୍କର ପେଡ଼ିଟିକୁ ସାଙ୍ଗରେ ଆଣିବା ପାଇଁ ପଟ୍ଟନାୟକ ଖୁଣ୍ଟିଆଙ୍କୁ କହିଲେ । ଏହି ପେଡ଼ିରେ ଥିବା ଅଳଙ୍କାରଗୁଡ଼ିକ ମଧ୍ୟରେ ରୂପାର ବେଙ୍ଗପାଟିଆଟିଏ ଥିଲା । ଏହା ଭାଙ୍ଗି ଯାଇଥିଲା ଓ ଏହାର ରଙ୍ଗ କଳା ପଡ଼ିଯାଇଥିଲା । ପଟ୍ଟନାୟକ ଅନୁମାନ କଲେ, ଏହା 'ଅଭିନୟ ଚନ୍ଦ୍ରିକା'ରେ ଉଲ୍ଲିଖିତ ବେଙ୍ଗମୁଖ ହୋଇପାରେ । ସେ ଖୁଣ୍ଟିଆଙ୍କ ମା'ଙ୍କୁ କିଛି ଅର୍ଥ ଦେଇ ଏହା ନିଜ ପାଖରେ ରଖିଲେ । ଏହାର ପରଦିନ ସଂଯୁକ୍ତା ଓ ମାୟାଧର ହାଇଦ୍ରାବାଦ ଯିବାର ଥିଲା । ତାଙ୍କ ସହିତ ପଖଉଜରେ ସହାୟତା କରିବା ପାଇଁ କେଳୁଚରଣ ମଧ୍ୟ ଯିବା ପାଇଁ ପ୍ରସ୍ତୁତ ହେଉଥିଲେ । ସେହି ସମାରୋହରେ ଧୀରେନ୍ଦ୍ରନାଥ ପଟ୍ଟନାୟକ 'କରଣ' (ଓଡ଼ିଶୀ ନୃତ୍ୟରେ ବ୍ୟବହୃତ ବିଭିନ୍ନ ଚଳନ) ସଂପର୍କରେ ପ୍ରବନ୍ଧଟିଏ ପଢିବାର ଥିଲା । ରେଳଯାତ୍ରା ସମୟରେ କେଳୁଚରଣ ବେଙ୍ଗ୍‌ଟିଟି ସଜାଡ଼ି ଦେଲେ । ହାଇଦ୍ରାବାଦ୍‌ରେ ପହଞ୍ଚିବା ପରେ ହଳଦିରେ ବେଙ୍ଗପାଟିଆଟିକୁ ସଫା କରିଦେଲେ । ସେଦିନ ସନ୍ଧ୍ୟାରେ ନୃତ୍ୟ ପରିବେଷଣ ସମୟରେ ସଂଯୁକ୍ତା ପ୍ରଥମ ଥର ପାଇଁ ଏହି ଅଳଙ୍କାରଟିକୁ ପରିଧାନ କଲେ । ସେହିଦିନଠାରୁ ଏହା ଓଡ଼ିଶୀ କଷ୍ଟ୍ୟୁମ୍ ବା ପରିଧାନର ସବୁଠାରୁ ଆବଶ୍ୟକୀୟ ଅଳଙ୍କାର ଭାବରେ ବ୍ୟବହୃତ ହୋଇଆସୁଛି ।

ସଂଯୁକ୍ତା କ୍ରମେ ତାଙ୍କର ନୃତ୍ୟ କାର୍ଯ୍ୟକ୍ରମ ନିଜେ ପରିଚାଳନା କରିବାକୁ ଲାଗିଲେ । କୁଙ୍କୁମ କିନ୍ତୁ ଅଷ୍ଟମ ଦଶକର ପ୍ରଥମ ଭାଗରେ କେଳୁଚରଣଙ୍କଠାରୁ ନୃତ୍ୟଶିକ୍ଷା ଲାଭକରିବା ପରେ ମଧ୍ୟ ଗୁରୁଙ୍କ ଉପରେ ନିର୍ଭର କରିବା ଛାଡ଼ିଲେ ନାହିଁ । ପ୍ରତି କାର୍ଯ୍ୟକ୍ରମ ପାଇଁ ପରିଧାନ ଚୟନ କରିବା, ଘୁଙ୍ଗୁର ପିନ୍ଧିବା, ପଖଉଜ ସହାୟତାରେ ସେ ଗୁରୁଙ୍କ ସାହାଯ୍ୟ ଲୋଡ଼ିଲେ । କେଳୁଚରଣ ନିଜ ବାସଗୃହ ପରିସରରେ ନୃତ୍ୟଶାଳା ନିର୍ମାଣ କରିବା ପରେ ସମସ୍ତ ଛାତ୍ରଛାତ୍ରୀ ସେଠାକୁ ନୃତ୍ୟ ଶିକ୍ଷା କରିବାକୁ ଆସୁଥିଲେ । କେବଳ କେଳୁଚରଣ କୁଙ୍କୁମଙ୍କ ବାସଗୃହକୁ ଯାଇ ତାଙ୍କୁ ଶିକ୍ଷା ଦେଉଥିଲେ । ଅନ୍ତତଃ ୧୯୮୪ ଯାଏଁ ଏହିପରି ହେଉଥିଲା । ୧୯୮୪ରେ କୁଙ୍କୁମ ଭୁବନେଶ୍ୱରଠାରେ ଓଡ଼ିଶୀ ନୃତ୍ୟ ଗବେଷଣା କେନ୍ଦ୍ର ସ୍ଥାପନ କଲେ । କେଳୁଚରଣ ହେଲେ ଏହାର ମୁଖ୍ୟ ପରାମର୍ଶଦାତା ।

ଜୀବନରେ ଯେତେ ଉନ୍ନତି କରିଥିଲେ ମଧ୍ୟ ସଂଯୁକ୍ତା ତାଙ୍କ ଗୁରୁଙ୍କ ପ୍ରତି ସର୍ବଦା ଯଥୋଚିତ ସମ୍ମାନ ପ୍ରଦର୍ଶନ କରୁଥିଲେ । ଯେତେ କାର୍ଯ୍ୟ ଥିଲେ ମଧ୍ୟ ଗୁରୁ ନିମନ୍ତ୍ରଣ କଲେ ସେ ତତ୍‌କ୍ଷଣାତ୍ ତାଙ୍କ ନିକଟରେ ଉପସ୍ଥିତ ହେଉଥିଲେ । ସେ ଥିଲେ କେଳୁଚରଣଙ୍କର ସବୁଠାରୁ ପ୍ରତିଭାମୟୀ ସମ୍ବେଦନଶୀଳା ଶିଷ୍ୟା । ସଂଯୁକ୍ତାଙ୍କର ଛନ୍ଦ ଓ ଶୈଳୀ ସଂପର୍କରେ ଅସାଧାରଣ ବୁଝାମଣା ଥିଲା । ବିଳମ୍ବିତ ରାତ୍ରିଯାଏଁ କୌଣସି କ୍ଳାନ୍ତିବୋଧ ନ କରି ଗୁରୁ ଓ ଶିଷ୍ୟା ନୃତ୍ୟ ସଂରଚନା କରୁଥିଲେ । କେଳୁଚରଣ ପଦଚାଳନାର ନୂତନ ବିନ୍ୟାସ କଲେ

ସଂଯୁକ୍ତା ତାହାକୁ ଅକ୍ଳେଶରେ ଗ୍ରହଣ କରିନେଉଁଥିଲେ ।

ସଂଯୁକ୍ତା ନୃତ୍ୟ ଅଭ୍ୟାସ ପରେ ଭୁବନେଶ୍ୱର ଫେରିବାବେଳକୁ କେବେ କେବେ ପାହାନ୍ତା ହୋଇଯାଉଥିଲା । ରାତ୍ରିରେ ଏତେ ପରିଶ୍ରମ ପରେ ମଧ ସେ କ୍ଳାନ୍ତ ହୋଇପଡୁଛନ୍ତି ବୋଲି ଅଭିଯୋଗ କରୁ ନଥିଲେ । ବରଂ ତା'ପରଦିନ ସକାଳୁ ସକାଳୁ ସେ ନୃତ୍ୟ କ୍ଲାସ୍‌ରେ ଉପସ୍ଥିତ ହେଉଥିଲେ । ୧ ୯ ୯ ୭ ଜୁନ୍‌ରେ ସଂଯୁକ୍ତାଙ୍କ ଅକାଳ ପରଲୋକ କେଳୁଚରଣଙ୍କ ପ୍ରତି ଦାରୁଣ ଧକ୍‌କା ହୋଇଥିଲା । ତାଙ୍କର କନ୍ୟା ସଂଯୁକ୍ତା ଯେ ଆଉ ନାହାନ୍ତି, ବହୁଦିନ ଯାଏଁ ସେ ତାହା ବିଶ୍ୱାସ କରୁ ନଥିଲେ । ସଂଯୁକ୍ତାଙ୍କ ମୃତ୍ୟୁପରେ ସେ କହିଥିଲେ, 'ମୁଁ ଆଉ ଗୋଟିଏ ସଂଯୁକ୍ତା ସୃଷ୍ଟି କରିପାରିବି ନାହିଁ ।' ସଂଯୁକ୍ତା ଯେ ବିଭିନ୍ନ ଭାବରେ ଅତୁଳନୀୟ ଥିଲେ, ଏହା ସେ ସ୍ୱୀକାର କରିଥିଲେ ।

୧ ୯ ୬ ୭ରେ ସଂଯୁକ୍ତାଙ୍କ ସହିତ କେଳୁଚରଣ ପ୍ରଥମ ଥର ପାଇଁ ବିଦେଶ ଯାତ୍ରା କରିଥିଲେ । ଭାରତ ସରକାରଙ୍କ ସାଂସ୍କୃତିକ ଦଳର ସେମାନେ ଥିଲେ ଗୋଟିଏ ଅଂଶ । ଏହି ଦଳରେ ବିର୍‌ଜୁ ମହାରାଜଙ୍କ କଥକ ନୃତ୍ୟଶିଳ୍ପୀମାନଙ୍କ ସହିତ ଥିଲେ ଯାମିନୀ କୃଷ୍ଣମୂର୍ତ୍ତି, ଗୋପୀକୃଷ୍ଣ, ବିସ୍‌ମିଲ୍ଲା ଖାଁ, ଚଳଚ୍ଚିତ୍ର ଅଭିନେତା ରାଜ୍ କପୁର, ସୁନୀଲ ଦତ୍ତ, ନର୍ଗିସ ପ୍ରଭୃତି । ସେମାନଙ୍କର ଶେଷ କାର୍ଯ୍ୟକ୍ରମ ଥିଲା ତାସ୍‌କେଣ୍ଟରେ । ଏହା ତିନି ଦିନ ଧରି ଚାଲିଥିଲା ଏବଂ ଏଥିରେ ସମସ୍ତ ଶିଳ୍ପୀ ଭାଗ ନେଇଥିଲେ । ଏହି ସମୟରେ ହିଁ କେଳୁଚରଣଙ୍କ ଜନ୍ମ ତାରିଖ ୧ ଅଗଷ୍ଟ ୧ ୯ ୨ ୬ ବୋଲି ସ୍ଥିର କରାଯାଇଥିଲା । ସଂଯୁକ୍ତା ଯେତେବେଳେ ପାସ୍‌ପୋର୍ଟ ଅଫିସ୍‌ରେ ଦରକାରୀ କାଗଜପତ୍ର ଦାଖଲ କଲେ, ସେତେବେଳେ ସେ ଦେଖିଲେ, କେଳୁଚରଣଙ୍କ ଜନ୍ମ ତାରିଖର ପ୍ରମାଣପତ୍ର ନାହିଁ । ସଂଯୁକ୍ତା ତାଙ୍କରି ଜନ୍ମ ମାସକୁ କେଳୁଚରଣଙ୍କ ଜନ୍ମ ମାସ ବୋଲି ସ୍ଥିର କଲେ । କେଳୁଚରଣଙ୍କ ଜୀବନର ବିଭିନ୍ନ ଘଟଣାର ବିବରଣୀରୁ ଜଣାଗଲା, ସେ ୧ ୯ ୨ ୬ରେ ହିଁ ଜନ୍ମଲାଭ କରିଥିଲେ ।

କେଳୁଚରଣ ୧ ୯ ୬ ୮ ରେ ସୋନାଲ୍‌ଙ୍କ ସହିତ ଏବଂ ୧ ୯ ୭ ୦ରେ କୁଙ୍କୁମ ଦାସଙ୍କ ସହିତ ସୋଭିଏତ୍ ୟୁନିଅନ୍ ଯାଇଥିଲେ । ୧ ୯ ୮ ୭ରେ ଭାରତ ଉତ୍ସବରେ ଯୋଗ ଦେବା ପାଇଁ ପୁଣିଥରେ ଋଷିଆ ଯାଇଥିଲେ । ତାଙ୍କର ଦ୍ୱିତୀୟ ଋଷିଆ ଭ୍ରମଣ ସମୟରେ ତାଙ୍କ ସହିତ ଯାଇଥିଲେ କୁଙ୍କୁମଙ୍କ ମାଆ । ସେ କହନ୍ତି, 'କୌଣସି ବିଦେଶୀ ଭାଷାର ଗୋଟିଏ ଶବ୍ଦ ଜାଣି ନଥିଲେ ସୁଦ୍ଧା ଚିତ୍ର ସାହାଯ୍ୟରେ କେଳୁଚରଣ ନିଜକୁ ପ୍ରକାଶ କରିପାରୁଥିଲେ । ରେସ୍ତୋରାଁରେ କୁକୁଡ଼ା ଓ ଘୁଷୁରୀ ଛବି ଆଙ୍କି ସେ ଖାଦ୍ୟ ବରାଦ ଦେଉଥିଲେ । ସେହିପରି କାର୍‌ରେ ଯାତ୍ରା କରୁଥିବା ସମୟରେ ଓଡ଼ିଶୀ ଭଙ୍ଗୀର ଚିତ୍ର କରି ଓ ତରିଝମ୍ ଗାନ କରି ସେ ଡ୍ରାଇଭର୍‌କୁ ଓଡ଼ିଶୀ ନୃତ୍ୟ ସଂପର୍କରେ ବୁଝାଉଥିଲେ ।'

ଗୋଟିଏ ଟାଙ୍ଗୁଡ଼ିରେ ସିଲ୍‌କ୍ କନାରେ ଘୋଡ଼ାଇ ସେ ବିଦେଶକୁ ପାନ ନେଉଥିଲେ । ବିଦେଶକୁ ପାନ ନେବାର ଅନୁମତି ନ ଥିବାରୁ ଏହି ଟାଙ୍ଗୁଡ଼ିକୁ ସେ ଏକ

ସଂଗୀତ ଯନ୍ତ୍ର ବୋଲି କହୁଥିଲେ ।

ଆନନ୍ଦା ରାଧା, ଶରୋନ୍ ଲୋୱେନ୍‌ଙ୍କ ଭଳି ଆମେରିକାନ୍ ତଥା ବିଦେଶୀ ଛାତ୍ରଛାତ୍ରୀଙ୍କ ସଂସ୍ପର୍ଶରେ ଆସି ତଥା ବିଦେଶ ଭ୍ରମଣରେ ଯାଇ ସେ କିଛି କିଛି ଇଂରାଜୀ ଶିଖିଥିଲେ । କିନ୍ତୁ ତାଙ୍କୁ ଇଂରାଜୀ ବ୍ୟାକରଣ ପ୍ରାୟ ଜଣା ନଥିଲା । କେତୋଟି ଶବ୍ଦ, ଠାର ଓ ଭାବ ସେ ହୁଏତ ପ୍ରକାଶ କରିପାରୁଥିଲେ । ପିଲାଦିନେ ତ ସେ ଓଡ଼ିଆ ବର୍ଣ୍ଣମାଳା ସଂପୂର୍ଣ୍ଣ ଶିଖି ନଥିଲେ । ପରେ ଅବଶ୍ୟ ଇଂରାଜୀ ଅକ୍ଷର ସବୁ ଶିଖିନେଲେ ଓ କିଛି ଇଂରାଜୀ ଶବ୍ଦ ପଢ଼ିପାରୁଥିଲେ । ଓଡ଼ିଆ, ବଙ୍ଗଳା ଓ ହିନ୍ଦୀରେ କଥାବାର୍ତ୍ତା କରିବାରେ ଅବଶ୍ୟ ତାଙ୍କର ଅସୁବିଧା ହେଉ ନଥିଲା ।

ଆନୁଷ୍ଠାନିକ ଶିକ୍ଷାଲାଭ କରିନଥିଲେ ମଧ୍ୟ ଅସାଧାରଣ କଳ୍ପନା ଶକ୍ତି, ତୀକ୍ଷ୍ଣ ପର୍ଯ୍ୟବେକ୍ଷଣ ତଥା ଯେ କୌଣସି ପରିସ୍ଥିତିରେ ନିଜକୁ ଚଳାଇ ନେବାର କୌଶଳ ଫଳରେ ସେ ଜୀବନରେ ସଫଳତା ଲାଭ କରିଥିଲେ । ଯେ କୌଣସି ନୂତନ ଅନୁଭୂତିରୁ ସେ କିଛି ନା କିଛି ଶିଖିପାରୁଥିଲେ । ନିଜର ଅଭିଜ୍ଞତାକୁ ସେ କେବେ ଲୁଚାଉ ନଥିଲେ କିମ୍ବା ସେଥିପାଇଁ ଲଜ୍ଜିତ ବୋଧ କରୁ ନଥିଲେ; ନିଜର କୃତିତ୍ୱ ପାଇଁ ସେ କେବେ ଗର୍ବିତ ହେଉ ନଥିଲେ । ବୈଷୟିକ କ୍ଷେତ୍ରରେ ଉନ୍ନତ ଦେଶ ବା ପରିସ୍ଥିତିରେ କାର୍ଯ୍ୟ କରିବା ପାଇଁ ତାଙ୍କଠାରେ ଥିଲା ନମ୍ରତା ଓ ଆତ୍ମବିଶ୍ୱାସ । ଉଭୟ ଗ୍ରହଣଶୀଳତା ଏବଂ ନୂତନ ଆହ୍ୱାନର ମୁକାବିଲା କରିବା – ଏହି ଦୁଇଟି ଗୁଣ ଥିଲା ତାଙ୍କଠାରେ ।

ବାସ୍ତବବାଦୀ ମାନସିକତା ତଥା ଉତ୍ସୁକତା ପାଇଁ ସେ ନୂତନ ଯାନ୍ତ୍ରିକ କୌଶଳ – ବିଶେଷତଃ ଭିଡ଼ିଓ ଓ ଅଡ଼ିଓ ଯନ୍ତ୍ରପାତି ବ୍ୟବହାର କରିପାରୁଥିଲେ ।

ମୁଭି କ୍ୟାମେରା ବା ଚଳଚ୍ଚିତ୍ର ସହିତ ତାଙ୍କର ସଂପର୍କ ଥିଲା ପଞ୍ଚମ ଦଶକର ମଧ୍ୟଭାଗରୁ । କଲିକତାରେ ପ୍ରସ୍ତୁତ 'ମା' ଓଡ଼ିଆ ଚଳଚ୍ଚିତ୍ରର ସେ ଥିଲେ ନୃତ୍ୟ ନିର୍ଦ୍ଦେଶକ । ଏହାର ପ୍ରଯୋଜକ ଥିଲେ ଗୌର ଘୋଷ । ଲକ୍ଷ୍ମୀପ୍ରିୟା ଥିଲେ ଏହାର ନାୟିକା । ଏଥିରେ କେଳୁଚରଣ 'କେଳା–କେଳୁଣୀ' ଲୋକ ନୃତ୍ୟ ପରିବେଷଣ କରିଥିଲେ । ତାଙ୍କ ସହିତ କଳହ କରୁଥିବା ସ୍ତ୍ରୀ ଭୂମିକାରେ ଅଭିନୟ କରିଥିଲେ ଦୁଇଜଣ ବଙ୍ଗୀୟ ତରୁଣୀ । ଏହାପରେ ୧୯୫୮ରେ କୃଷ୍ଣଚନ୍ଦ୍ର ତ୍ରିପାଠୀ ପ୍ରସ୍ତୁତ କଲେ ଚଳଚ୍ଚିତ୍ର 'ମହାଲକ୍ଷ୍ମୀ ପୂଜା' । ଏଥିରେ 'ଦଶାବତାର' ନୃତ୍ୟ ପରିବେଷଣ କରିଥିଲେ ସଂଯୁକ୍ତା ଓ ଜୟନ୍ତୀ । ୧୯୬୪ରେ ଧୀର ବିଶ୍ୱାଳଙ୍କ ପ୍ରଯୋଜିତ 'ମାଣିକ ଯୋଡ଼ି' ଚଳଚ୍ଚିତ୍ରରେ କେଳୁଚରଣ ଏକ ଲୋକନୃତ୍ୟର ନିର୍ଦ୍ଦେଶନା ଦେଇଥିଲେ । ନୃତ୍ୟରେ ଭାଗ ନେଇଥିଲେ ମାୟାଧର ରାଉତ ଓ ଉର୍ବଶୀ ଯୋଶୀ । ୧୯୬୮ରେ ଚଳଚ୍ଚିତ୍ର 'ଅରୁନ୍ଧତୀ'ରେ ମିନତି ମିଶ୍ର ଓଡ଼ିଶୀ ଓ ଭାରତନାଟ୍ୟମ୍ ପରିବେଷଣ କରିଥିଲେ । ଏହାର ନିର୍ଦ୍ଦେଶନା ଦେଇଥିଲେ କେଳୁଚରଣ । ଏହି ଚଳଚ୍ଚିତ୍ର ପ୍ରସ୍ତୁତି ସମୟରେ ବଙ୍ଗଳା ଚଳଚ୍ଚିତ୍ର ନିର୍ଦ୍ଦେଶକ ତପନ ସିହ୍ନା ସେଠାରେ ଉପସ୍ଥିତ ଥିଲେ ।

ସେ ତାଙ୍କର ବଙ୍ଗଳା ଚଳଚ୍ଚିତ୍ର 'ନିର୍ଜନ ସୈକତେ' ପାଇଁ ନୃତ୍ୟ ନିର୍ଦ୍ଦେଶକ ହେବା ନିମନ୍ତେ କେଳୁଚରଣଙ୍କୁ ଅନୁରୋଧ କଲେ । ଏଥିରେ ମିନତି ମିଶ୍ର 'କଲ୍ୟାଣ ପଲ୍ଲବୀ' ପରିବେଷଣ କରିଥିଲେ ।

ଏସବୁ ବ୍ୟତୀତ କେଳୁଚରଣ ଅନ୍ୟ ଓଡ଼ିଆ ଚଳଚ୍ଚିତ୍ରମାନଙ୍କ ସହିତ ମଧ୍ୟ ସଂପୃକ୍ତ ଥିଲେ । ଯେପରି, ଗୋବିନ୍ଦ ତେଜ୍‌ଙ୍କ ଦ୍ୱାରା ପ୍ରସ୍ତୁତ 'ସୁଦାମା'ରେ ଓଡ଼ିଶୀ ନୃତ୍ୟ ପରିବେଷଣ, 'ବୋଇତ ବନ୍ଦାଣ' ଚଳଚ୍ଚିତ୍ର ପାଇଁ ଗୀତିନାଟ୍ୟ ପରିବେଷଣ, 'ତଅପୋଇ'ରେ ଲୋକନୃତ୍ୟ ପରିବେଷଣ, ୧୯୭୯ରେ କମଳଲୋଚନ ମହାନ୍ତିଙ୍କ ଦ୍ୱାରା ପ୍ରସ୍ତୁତ 'ଶ୍ରୀକୃଷ୍ଣ ରାସଲୀଳା'ରେ ଓଡ଼ିଶୀ ନୃତ୍ୟ ପରିବେଷଣ, ସଚ୍ଚିକାନ୍ତ ରାଉତଙ୍କ ନିର୍ମିତ ତଥା 'ପଦ୍ମାବତୀ' ଭୂମିକାରେ ଶର୍ମିଳା ବିଶ୍ୱାସଙ୍କ ଅଭିନୀତ 'ଜୟଦେବ' ଚଳଚ୍ଚିତ୍ରରେ ଗୀତଗୋବିନ୍ଦର ଅଷ୍ଟପଦୀ ପରିବେଷଣ, ଇତ୍ୟାଦି ।

ଚଳଚ୍ଚିତ୍ର ନିର୍ମାଣ ସମୟରେ କେଳୁଚରଣ କେବଳ କୋରିଓଗ୍ରାଫି ସଂପର୍କରେ ସୂଚନା ଦେଉ ନଥିଲେ, ସେ ମଧ୍ୟ କ୍ୟାମେରାର ସ୍ଥିତି, ସଂପାଦନା, ଶବ୍ଦ ରେକର୍ଡିଂ ପ୍ରଭୃତି ବିଷୟରେ ଯଥେଷ୍ଟ ସଚେତନ ରହୁଥିଲେ । ତାଙ୍କର ବିପୁଳ ଅନୁଭୂତି ଫଳରେ ସେ ଅନ୍ୟମାନଙ୍କୁ ଯଥାର୍ଥ ଦିଗ୍‌ଦର୍ଶନ ଦେଇପାରୁଥିଲେ ।

ସାଉଣ୍ଡ୍ ଏଡ଼ିଟିଂ ବା ଧ୍ୱନି ସଂପାଦନାରେ ତାଙ୍କର ଅସାଧାରଣ ଦକ୍ଷତା ଥିଲା । ଡବିଂରେ ସେ ପ୍ରତି ସେକେଣ୍ଡ୍ ବା ତାହାର ଭଗ୍ନାଂଶର ସଦ୍‌ବ୍ୟବହାର କରିପାରୁଥିଲେ । ଏକ ସମୟରେ ପଖଉଜ ବାଦନ କରିବା ଏବଂ ଶବ୍ଦ ସଂପାଦନା କରିବା ତାଙ୍କୁ ଜଣାଥିଲା । ସପ୍ତମ ଦଶକର ପ୍ରଥମ ଭାଗରେ ସଂଯୁକ୍ତାଙ୍କ ସହିତ ଫ୍ରାନ୍‌ସ ଯାଇଥିବା ସମୟରେ ସେ ପ୍ରଥମ ରେଭକ୍ସ (୧/୪ ଇଞ୍ଚ ସ୍ପୁଲ ରେକର୍ଡିଂ ମେସିନ୍) କିଣିଲେ । ଏଯାଏଁ ସେ କଳାବିକାଶ କେନ୍ଦ୍ର କିମ୍ବା ତାଙ୍କ ଛାତ୍ରଛାତ୍ରୀମାନଙ୍କଠାରୁ ମିଳିଥିବା ଟେପ୍‌ରେକର୍ଡର୍ ସାହାଯ୍ୟରେ ଧ୍ୱନି ସଂପାଦନା କରିବାର କୌଶଳ ଶିଖିଥିଲେ ।

ସପ୍ତମ ଦଶକର ଶେଷ ଭାଗରେ କଟକରେ ଅନୁଷ୍ଠିତ ଅଲ୍ ଇଣ୍ଡିଆ ମେଡିକାଲ୍ କନ୍‌ଫରେନ୍‌ସ୍‌ରେ ଅଭିନୀତ ନୃତ୍ୟନାଟିକାଗୁଡ଼ିକର ସଂଗୀତ କାର୍ଯ୍ୟକ୍ରମ ପ୍ରସ୍ତୁତ ହେଉଥିଲା କେଳୁଚରଣଙ୍କ ଶୟନ କକ୍ଷରେ ବିଳମ୍ବିତ ରାତ୍ରିରେ । ଗୋଟିଏ ମାତ୍ର ମାଇକ୍, ହଳେ କତୁରୀ, କିଛି ଟେପ୍ ସାହାଯ୍ୟରେ ସେ ସଂଗୀତ କାର୍ଯ୍ୟକ୍ରମର ସମୟ ସୀମା ନିର୍ଦ୍ଧାରିତ କରୁଥିଲେ ।

ବିଶିଷ୍ଟ ଚଳଚ୍ଚିତ୍ର ନିର୍ଦ୍ଦେଶକ କୁମାର ସାହାଣୀ ତାଙ୍କର ଫିଲ୍ମ 'ଭବାନ୍ତରଣ' ୧୯୯୦ ଡିସେମ୍ବରରେ ଓଡ଼ିଶାରେ ପ୍ରସ୍ତୁତ କରୁଥିବା ସମୟରେ କେଳୁଚରଣଙ୍କୁ ଜଣେ ବିଚକ୍ଷଣ ଧ୍ୱନି ସଂପାଦକ (ଏଡିଟର ଅଫ୍ ସାଉଣ୍ଡ) ବୋଲି ଉଲ୍ଲେଖ କରିଥିଲେ । ଏହି ଚଳଚ୍ଚିତ୍ରଟି ଥିଲା କେଳୁଚରଣଙ୍କ ଜୀବନ ସଂପର୍କରେ । କେଳୁଚରଣଙ୍କ ଜୀବନକୁ ଦୃଶ୍ୟରୂପ ଦେବାରେ ଏହା ହିଁ ଏଯାବତ୍ ପ୍ରଥମ ପ୍ରଚେଷ୍ଟା । ସାହାଣୀ ବୈଦେଶିକ ବ୍ୟାପାର ପ୍ରଚାର ବିଭାଗକୁ

ଏପରି ଚଳଚ୍ଚିତ୍ରଟିଏ ନିର୍ମାଣ କରିବାକୁ ଅନୁରୋଧ କରିଥିଲେ । ଏହି ଚଳଚ୍ଚିତ୍ରଟି ପ୍ରସ୍ତୁତ କରିବା ପାଇଁ ଲାଗିଥିଲା ନଅ ବର୍ଷ । କେଳୁଚରଣଙ୍କ ହୃଦଯନ୍ତ୍ରର ବାଇପାସ୍ ଅପରେସନ୍‌ର ଆଠମାସ ପରେ ଏହା ପ୍ରସ୍ତୁତ ହୋଇଥିଲା । ତଥାପି ତାଙ୍କର ନିଖୁଣ ଅଭିନୟ କଳା ଏଥିରେ ପ୍ରତିଫଳିତ ହୋଇଛି ।

●●●

# ମଞ୍ଚକୁ ପ୍ରତ୍ୟାବର୍ତ୍ତନ

ଅଷ୍ଟମ ଦଶକର ପ୍ରଥମ ଭାଗରେ କେଳୁଚରଣ ମୁମ୍ବାଇ, ଦିଲ୍ଲୀ, କୋଲ୍‌କାତାରେ ଜାତୀୟ କଳାକେନ୍ଦ୍ର, ଗାନ୍ଧର୍ବ ମହାବିଦ୍ୟାଳୟ ଓ ପଦାତିକ ଅନୁଷ୍ଠାନରେ ବିଭିନ୍ନ କର୍ମଶାଳା ଆୟୋଜନ କରିବା ସହିତ ଛାତ୍ରଛାତ୍ରୀମାନଙ୍କ ସହିତ କର୍ମଶାଳା ଶେଷରେ ମଞ୍ଚରେ ମଧ୍ୟ ଅଭିନୟ କରୁଥିଲେ । ଅଗଷ୍ଟ ୧୯୭୯ରେ ଏକ ମାସିକିଆ କର୍ମଶାଳା ଶେଷରେ ଗାନ୍ଧର୍ବ ମହାବିଦ୍ୟାଳୟ ମୁକ୍ତାକାଶ ରଙ୍ଗମଞ୍ଚରେ ସେ ନୃତ୍ୟ ପ୍ରଦର୍ଶନ କରିଥିଲେ । ଗୀତଗୋବିନ୍ଦର ରାଧାଙ୍କ ପ୍ରତି ପ୍ରେମ ନିବେଦନ 'ପ୍ରିୟେ ଚାରୁଶୀଳେ' ନୃତ୍ୟ ଅଭିନୟ ତାଙ୍କର ଦୁଇଜଣ ପ୍ରବୀଣା ଛାତ୍ରୀ ମାଧବୀ ଓ କୁକୁମ୍ ଲାଲ୍‌ଙ୍କ ସହିତ ପରିବେଷଣ କରିଥିଲେ । ଖମାଜ୍ ରାଗରେ ଏହାର ପଲ୍ଲବୀ ସଂଯୁକ୍ତା ସଂରଚନା କରିଥିଲେ । କୁକୁମ୍ ଲାଲ୍ ମଧ୍ୟ ଚମତ୍କାର ଭାବରେ 'ବାଧିଲା ଜାଣି କ୍ଷମା'ର ଅଭିନୟ ପ୍ରଦର୍ଶନ କରିଥିଲେ । ଏହି ଅଭିନୟ ୧୯୭୬ରେ ସଂରଚିତ ହୋଇଥିଲା ପ୍ରିୟମ୍ବଦା ମହାନ୍ତିଙ୍କ ଦ୍ୱାରା ।

ମୁକ୍ତାକାଶରେ ଅଭିନୟ ପ୍ରଦର୍ଶନ ଆରମ୍ଭ କରିବା ପରେ କେଳୁଚରଣଙ୍କୁ ଅଭିନୟ ପୂର୍ବରୁ ବ୍ୟାପକ ପ୍ରସ୍ତୁତି କରିବାକୁ ପଡୁଥିଲା । ଦିନେ ସନ୍ଧ୍ୟାରେ ସେ ଅଭିନୟ କରୁଥିବା



ନୂଆଦିଲ୍ଲୀର ଗାନ୍ଧର୍ବ ମହାବିଦ୍ୟାଳୟରେ କେଳୁଚରଣଙ୍କ ଶିକ୍ଷାଦାନ (୧୯୭୯)

ସମୟରେ ଆଲୋକସବୁ ଲିଭିଗଲା ଓ ପ୍ରାୟ ଦଶ ମିନିଟ୍ ସମୟ ମଞ୍ଚ ଅନ୍ଧକାରାଚ୍ଛନ୍ନ ରହିଲା । ଏହି ସମୟ କେଳୁଚରଣ ମଞ୍ଚ ଉପରେ ଗୋଟିଏ ମୁଦ୍ରାରେ ସ୍ଥିର ହୋଇ ରହିଥିଲେ । ଆଲୋକ ଫେରିଆସିବା ପରେ ସେ ଦର୍ଶକମାନଙ୍କୁ କ୍ଷମାଭିକ୍ଷା କଲେ । ସେ ଅନୁଭବ କଲେ ମଞ୍ଚ ପ୍ରସ୍ତୁତିରେ କିଛି ତ୍ରୁଟି ରହିଥିବାରୁ ଏଭଳି ଘଟିଲା ।

କୋଲ୍‌କାତାର ପଦାତିକ ନୃତ୍ୟ କେନ୍ଦ୍ରରେ ସେ କେବଳ ମୁକ୍ତାକାଶ ରଙ୍ଗମଞ୍ଚରେ ଅଭିନୟ କରି ନଥିଲେ, ବାସ୍ତବରେ ସେ ଏହି ରଙ୍ଗମଞ୍ଚ ପ୍ରତିଷ୍ଠା କରିଥିଲେ । ସେପ୍ଟେମ୍ବର ୧୯୮୦ରେ ସେ ପ୍ରଥମେ ଏହି ରଙ୍ଗମଞ୍ଚରେ ଓଡ଼ିଶୀ ନୃତ୍ୟ କର୍ମଶାଳା ଆରମ୍ଭ କଲେ । ପଦାତିକ ସହଯୋଗରେ ୧୯୮୪ ଯାଏଁ ଏହା ଅନୁଷ୍ଠିତ ହେଉଥିଲା । ଏହି ଅନୁଷ୍ଠାନର ଛାତ୍ରୀମାନଙ୍କ ସହିତ ଫେବୃୟାରୀ ୧୯୮୧ରେ ସେ 'ଗୀତଗୋବିନ୍ଦ' ନୃତ୍ୟନାଟିକାର କୋରିଓଗ୍ରାଫି ପ୍ରସ୍ତୁତ କରି ମଞ୍ଚସ୍ଥ କଲେ । ମାତ୍ର ପାଞ୍ଚ ଶହ ଟଙ୍କା ଅଟକଳ ମଧ୍ୟରେ ସେ ଏହାର ଆୟୋଜନ କରିଥିଲେ । ମଞ୍ଚ ନିର୍ମାଣ, ପୃଷ୍ଠଭୂମି ପ୍ରସ୍ତୁତି, ଆଲୋକ ସଜ୍ଜା, ପୋଷାକ ପ୍ରସ୍ତୁତି – ଏ ସମସ୍ତ ସେ ନିଜେ କରିଥିଲେ ଏବଂ ଏହା ଥିଲା ଆଲୋକ, ସୁତପା, ଦୀପିକା, ଶୁଭ୍ରା, ଦୀପ୍ତି, ଦୀପାନ୍ୱିତା, ପୌଶାଲୀଙ୍କର ପ୍ରଥମ ମଞ୍ଚ ଅଭିନୟ ।

କୋଲ୍‌କାତାର ନୃତ୍ୟଶିକ୍ଷାର୍ଥୀମାନେ କେଳୁଚରଣଙ୍କ କାର୍ଯ୍ୟଶୈଳୀର ପରିଚୟ ପାଇଲେ । କର୍ମଶାଳା ସକାଳ ନଅଟାରେ ଆରମ୍ଭ ହୋଇ ସନ୍ଧ୍ୟା ଆଠଟା ଯାଏଁ ଚାଲୁଥିଲା । ମଝିରେ କେବଳ ଗୋଟିଏ ଘଣ୍ଟା ଲଞ୍ଚ୍ ବ୍ରେକ୍ । ସେ ସମୟରେ ଟିଫିନ୍ କ୍ୟାରିଅର୍‌ରେ ଖାଦ୍ୟ ଆଣି ଦିଆଯାଉଥିଲା ।

କର୍ମଶାଳାର ଅନ୍ୟତମ ଛାତ୍ରୀ ସୁତପା କହନ୍ତି, 'ଏପରି କାର୍ଯ୍ୟକ୍ରମ ସହିତ ଆମେ ଆଗରୁ ଅଭ୍ୟସ୍ତ ନ ଥିଲୁ ।' କେଳୁଚରଣଙ୍କ କର୍ମଶାଳାରେ ଯୋଗଦେବା ପୂର୍ବରୁ ସେ ମୁରଲୀଧର ମାଝିଙ୍କଠାରୁ ଓଡ଼ିଶୀ ନୃତ୍ୟ ସମ୍ପର୍କରେ କିଛି ତାଲିମ୍ ନେଇଥିଲେ । ତାଙ୍କ ଭାଷାରେ, 'କେଳୁଚରଣଙ୍କ ତାଲିମ୍ ସତରେ କଠିନ । ଏହା ବୈଜ୍ଞାନିକ ପଦ୍ଧତିରେ କରାଯାଉଥିଲା । ସେ ଆମର ସମସ୍ତ ଶକ୍ତିର ନିୟୋଜନ କରୁଥିଲେ ଓ ପ୍ରତ୍ୟେକଙ୍କ ଠାରୁ ଯଥାସମ୍ଭବ ଅଧିକ କାର୍ଯ୍ୟ ଆଦାୟ କରୁଥିଲେ । ସମୟକ୍ରମେ ଆମେ ତାଙ୍କ କାର୍ଯ୍ୟଶୈଳୀରେ ଅଭ୍ୟସ୍ତ ହୋଇଗଲୁ ଏବଂ ସେ ଉପସ୍ଥିତ ଥିବା ସମୟରେ ସମୟ ଜାଣିବା ପାଇଁ ଘଣ୍ଟା ଦେଖୁ ନଥିଲୁ ।'

ପ୍ରତିମା ବେଦୀଙ୍କ ପରାମର୍ଶ କ୍ରମେ କେଳୁଚରଣଙ୍କଠାରୁ ନୃତ୍ୟ ଶିଖିବା ପାଇଁ ମୁମ୍ବାଇରୁ ଆସିଥିବା ବଙ୍ଗୀୟ ଭଦ୍ର ମହିଳା ଦେବୀ କହନ୍ତି :

'ଓଡ଼ିଶୀ ନୃତ୍ୟଶୈଳୀ ଥିଲା ମୋ ପାଇଁ ସମ୍ପୂର୍ଣ୍ଣ ନୂତନ । କୋଲକାତା କର୍ମଶାଳାରେ ଯୋଗଦେଇ କେଳୁଚରଣଙ୍କୁ ଏହା ମୁଁ କହିଥିଲି । ସେ ମୋତେ ପ୍ରାଥମିକ ତାଲିମ୍ ପାଇଁ ସକାଳ କ୍ଲାସ୍‌ରେ ଏବଂ ସିନିୟର୍‌ମାନଙ୍କ ପାଇଁ ଅନୁଷ୍ଠିତ ଅପରାହ୍ନ କ୍ଲାସ୍‌ରେ

ଯୋଗଦେବାକୁ କହିଲେ । ସନ୍ଧ୍ୟାରେ ମୁଁ ତାଙ୍କଠାରୁ ଗୀତଗୋବିନ୍ଦର ଅଷ୍ଟପଦୀ ଶିଖିଲି । କଠୋର ପରିଶ୍ରମରେ ମୋର ଆଣ୍ଠୁ ଦରଜ ହୋଇଗଲେ ମଧ ମୁଁ ଦିନକ ପାଇଁ ତାଙ୍କର କ୍ଲାସ୍‌ରେ ଅନୁପସ୍ଥିତ ରହୁ ନ ଥିଲି ।'

କୋଲ୍‌କାତାର ସଙ୍ଗୀତ ଗବେଷଣା ଏକାଡେମୀର କଳାମନ୍ଦିରରେ ଅନୁଷ୍ଠିତ ରଙ୍ଗମଞ୍ଚରେ କେଳୁଚରଣ ପ୍ରଥମଥର ପାଇଁ ଅଗଷ୍ଟ ୧୯୮୧ରେ ଅଭିନୟ କଲେ । ମଙ୍ଗଳାଚରଣ ନୃତ୍ୟ ପରେ ସେ 'କୁରୁ ଯଦୁନନ୍ଦନ' ଅଷ୍ଟପଦୀ ପରିବେଷଣ କଲେ । ତୁଳସୀ ଦାସଙ୍କ ଶ୍ରୀରାମଚରିତ ମାନସ ଉପରେ ଆଧାରିତ କୈବର୍ତ୍ତ ପ୍ରସଙ୍ଗରେ ସେ କୈବର୍ତ୍ତ ଭୂମିକାରେ ଅବତୀର୍ଣ୍ଣ ହୋଇଥିଲେ । ଗଙ୍ଗାନଦୀ କୂଳରେ ରାମ, ସୀତା ଓ ଲକ୍ଷ୍ମଣଙ୍କ ସହିତ ନାବିକ କୈବର୍ତ୍ତର କଥୋପକଥନ ଥିଲା ଏହାର ବିଷୟବସ୍ତୁ । ଏ ସମ୍ପର୍କରେ ସୁନୀଲ୍ କୋଠାରୀ ଲେଖିଛନ୍ତି :

'ନାବିକର ବିଭିନ୍ନ ମନୋଭାବ ସେ ଚମତ୍କାର ଭାବରେ ଦର୍ଶାଇଥିଲେ... । ବର୍ତ୍ତମାନ ସମୟର ମଞ୍ଚରେ ଏଭଳି ଅଭିନୟ ବିରଳ... । ତାଙ୍କର ବୟସ ପଚାଶ ଉପରେ; ମୁଣ୍ଡ ଚନ୍ଦା ହେବାକୁ ଆରମ୍ଭ କଲାଣି । ଶରୀର ଗଠନ ସେପରି ଆକର୍ଷଣୀୟ ନୁହେଁ; କୌଣସି ପ୍ରସାଧନ ମଧ ସେ ବ୍ୟବହାର କରନ୍ତି ନାହିଁ । ସାଧାରଣ ପୋଷାକ ପରିଧାନ କରି ପରିବେଶକୁ ସେ କବିତ୍ୱମୟ କରିଦେଲେ ତାଙ୍କର ଚଳନ ଓ ମୁଖଭଙ୍ଗୀ ଦ୍ୱାରା... । କୈବର୍ତ୍ତ ପ୍ରସଙ୍ଗର ପରିଣତିରେ ସେ ଏପରି ଭାବ ସୃଷ୍ଟି କଲେ ଯେ, ଅନେକେ ଲୋତକ ସମ୍ବରଣ କରିପାରିଲେ ନାହିଁ ।'

ସେହି ବର୍ଷ କେଳୁଚରଣ ପଦାତିକର ପ୍ରତିଷ୍ଠାତା ଓ ନିର୍ଦ୍ଦେଶକ ଶ୍ୟାମାନନ୍ଦ ଜାଲାନ୍‌ଙ୍କ ସହିତ କାଳିଦାସଙ୍କ 'ଶକୁନ୍ତଳା' ନାଟକ ହିନ୍ଦୀ ଭାଷାରେ ପରିବେଷଣ କଲେ । ମଧ୍ୟପ୍ରଦେଶର ଉଜ୍ଜୟିନୀଠାରେ କାଳିଦାସ ସମାରୋହରେ ଏହା ଅନୁଷ୍ଠିତ ହେଲା । ଅଭିନୟରେ ପ୍ରାୟ ଚାଳିଶି ଜଣ ଭାଗ ନେଇଥିଲେ । ଉଭୟ ଶବ୍ଦ ଓ ଅଙ୍ଗଭଙ୍ଗୀରେ ନାଟକର ଭାବ ପ୍ରକାଶ କରାଯାଇଥିଲା । ଏହି ଅବସରରେ ପ୍ରକାଶିତ ପୁସ୍ତିକାରେ ଶ୍ୟାମାନନ୍ଦ ଏ ସଂପର୍କରେ ଉଲ୍ଲେଖ କରିଛନ୍ତି । ସମସ୍ତ ମୁଖ୍ୟ ଚରିତ୍ରଙ୍କ ଅଭିନୟ କେଳୁଚରଣଙ୍କ ତତ୍ତ୍ୱାବଧାନରେ ହୋଇଥିଲା । ସେ ନିଜେ ଏଥିରେ ଦୁଇଟି ଚରିତ୍ର ସଂଯୋଗ କରିଥିଲେ – ବିଦୂଷକ ଓ କଞ୍ଚୁକୀ । ନାଟକଟିର ଗଢ଼ଣ ଓ ଛନ୍ଦ କେଳୁଚରଣ ସ୍ଥିର କରିଥିଲେ । ବନାରସ ଘରାନାର ଶାସ୍ତ୍ରୀୟ ସଙ୍ଗୀତ ଶିଳ୍ପୀ ଗିରିଜା ଦେବୀ ଏଥିରେ ସ୍ୱରଦାନ କରିଥିଲେ ।

ଏ ନାଟକରେ କେଳୁଚରଣଙ୍କ ଅବଦାନ ସମ୍ପର୍କରେ ଶ୍ୟାମାନନ୍ଦ ଲେଖିଛନ୍ତି :

'... ଗୁରୁଜୀଙ୍କ ଭୂମିକା ଥିଲା ଯଥାର୍ଥରେ ଆଶ୍ଚର୍ଯ୍ୟଜନକ । ପିଲାଦିନେ ସେ ଯାତ୍ରାରେ ଅଭିନୟ କରିବା ମୁଁ ଜାଣିଥିଲି । କିନ୍ତୁ, ମଣିଷର ଭାବଭଙ୍ଗୀ, ପ୍ରତି ଚରିତ୍ରର ଅନ୍ତର୍ନିହିତ ତଥା ବାହ୍ୟ ଚଳନର ଛନ୍ଦ ସଂପର୍କରେ ତାଙ୍କର ଯଥେଷ୍ଟ ବୁଝାମଣା ଥିଲା ।



ବୀରରସ ପ୍ରଦର୍ଶନ

ବେଳେବେଳେ ମୁଁ ଭାବୁଥିଲି, ସେ ଥିଲେ ଟିକେ ପୁରୁଣାକାଳିଆ ଓ ତାଙ୍କର ଦୃଷ୍ଟିଭଙ୍ଗୀ ଥିଲା ଗତାନୁଗତିକ । କିନ୍ତୁ ବେଳେବେଳେ ସେ ଏପରି ନୂତନତ୍ୱ ପ୍ରଣୟନ କରୁଥିଲେ ଯେ, ଆଧୁନିକ ରଙ୍ଗମଞ୍ଚ ପାଇଁ ତାହା ପ୍ରାସଙ୍ଗିକ ହୋଇଯାଉଥିଲା । ସବୁଠାରୁ ବଡ଼କଥା ଥିଲା ତାଙ୍କର ଖୋଲା ମନ ବା ଗ୍ରହଣଶୀଳତା । କେବେ କେବେ ଆମ ଭିତରେ ଖୁବ୍ ଯୁକ୍ତିତର୍କ ହେଉଥିଲା; ମୁଁ ମୋର ମତ ସ୍ପଷ୍ଟ ଓ କେବେ କେବେ କଡ଼ା ଭାବରେ ପ୍ରକାଶ କରୁଥିଲି । ସେ କେବେ ବି ଭୁଲ୍ ବୁଝୁ ନଥିଲେ । ମୋ ସହିତ ଏକମତ ନ ହେଲେ ସେ ତାହା ପ୍ରକାଶ କରୁଥିଲେ, ଏକମତ ହେଲେ ଆବଶ୍ୟକୀୟ ପରିବର୍ତ୍ତନ କରିବାକୁ ପଶ୍ଚାଦ୍‌ପଦ ହେଉ ନଥିଲେ । ତାଙ୍କର ଥିଲା ଅସାଧାରଣ ସୃଜନଶୀଳତା । ରଙ୍ଗମଞ୍ଚ ଅଭିନୟ ସମ୍ପର୍କରେ ତାଙ୍କର ତୀକ୍ଷ୍ଣ ଧାରଣା ଥିଲା । ସେ କେବଳ ମୁଦ୍ରା ଓ ଚଳନ ଶିଖାଉ ନଥିଲେ, ନୂତନ ଚରିତ୍ର କଳ୍ପନା କରୁଥିଲେ, ସେମାନଙ୍କର ବାହ୍ୟ ଓ ଅନ୍ତଃରୂପ ପ୍ରକାଶ କରିପାରୁଥିଲେ ।'

ନ୍ୟାସନାଲ୍ ସେଣ୍ଟର୍ ଫର୍ ପରଫରମିଙ୍ଗ୍ ଆର୍ଟସ୍ (ଏନ୍.ସି.ପି.ଏ)ର ପ୍ରଥମ କର୍ମଶାଳା ୧୯୮୧ ଡିସେମ୍ବରରେ ମୁମ୍ବାଇଠାରେ ଅନୁଷ୍ଠିତ ହୋଇଥିଲା । କୁଙ୍କୁମ୍ ଲାଲ୍ ଏନ୍.ସି.ପି.ଏ. ସହିତ କେଳୁଚରଣଙ୍କ ପରିଚୟ କରାଇ ଦେଇଥିଲେ । କେଳୁଚରଣଙ୍କ ସହଯୋଗରେ ପରିଚାଳିତ କାର୍ଯ୍ୟକ୍ରମ ଅତ୍ୟନ୍ତ ସଫଳ ହୋଇଥିଲା । ଦ୍ୱିତୀୟ କର୍ମଶାଳା ଶେଷରେ ୧୯୮୨ ଜୁନ୍‌ରେ ଏନ୍.ସି.ପି.ଏ. ପ୍ରାଙ୍ଗଣରେ ଟାଟା ଥିଏଟର୍ ହଲ୍‌ରେ ଗୁରୁ ଓ ତାଙ୍କ ଶିଷ୍ୟା କୁଙ୍କୁମ ପ୍ରଥମ କାର୍ଯ୍ୟକ୍ରମ ପ୍ରଦର୍ଶନ କରିଥିଲେ । ଅନ୍ୟ ଛାତ୍ରୀମାନେ ଚମତ୍କାର କୋରିଓଗ୍ରାଫି ସହ ମଙ୍ଗଳାଚରଣ, ବଟୁ ଓ ପଲ୍ଲବୀ ପରିବେଷଣ କରିଥିଲେ । କାର୍ଯ୍ୟକ୍ରମର

ଦ୍ୱିତୀୟ ଭାଗରେ କେଳୁଚରଣ ଅଷ୍ଟପଦୀ ଓ କୈବର୍ତ୍ତ ପ୍ରସଙ୍ଗ ପ୍ରଦର୍ଶନ କରିଥିଲେ । ଏହା ପରଠାରୁ ଏହି ଦୁଇ କାର୍ଯ୍ୟକ୍ରମ ନିୟମିତ ପ୍ରଦର୍ଶିତ ହୋଇଆସୁଛି । ଅଷ୍ଟପଦୀ ସମ୍ପର୍କରେ ପ୍ରକୃତି କଶ୍ୟପ କହନ୍ତି, 'କେଳୁଚରଣ ତାଙ୍କ ଅଭିନୟରେ ଏପରି ନିମଜ୍ଜିତ ହୋଇଥିଲେ ଯେ, କେଶବିନ୍ୟାସ କରିବା, ଚନ୍ଦନ ପ୍ରସ୍ତୁତ କରିବା କିମ୍ବା ପ୍ରେମିକ ପାଇଁ ପ୍ରତୀକ୍ଷା କରିବା ସମୟରେ ସେ ସ୍ୱୟଂ ମନେ ହେଉଥିଲେ ରାଧା ବା ତାଙ୍କର ସଖୀ । ସେ ଯେ ଜଣେ ଚନ୍ଦା, ବସନ୍ତମୁହାଁ ପୁରୁଷ ଥିଲେ, ଏହା କେହି କଳ୍ପନା କରିପାରୁ ନଥିଲେ ।'

ଏହି କାର୍ଯ୍ୟକ୍ରମରେ ସବୁଠାରୁ ଆକର୍ଷଣୀୟ ଥିଲା କୈବର୍ତ୍ତ ଚରିତ୍ର । ଏହି ଚରିତ୍ରଟିକୁ କେବଳ ଭାଷାରେ ପ୍ରକାଶ କରିବା କଠିନ । ଏହି ଚରିତ୍ରଟି ଅଭିନୟରେ ପ୍ରକଟିତ ହେଉଥିବା ସମୟରେ ନୃତ୍ୟଶିଳ୍ପୀ, ସାଧାରଣ ଦର୍ଶକ ଏବଂ ସମଗ୍ର ବାତାବରଣ ଅନ୍ୟ ଏକ ସ୍ତରକୁ ଉନ୍ନୀତ ହେଉଥିଲା । ଚିରନ୍ତନ ଆନନ୍ଦର ପରିବେଶ ସୃଷ୍ଟି ହେଉଥିଲା । ସମୟ ଓ ସ୍ଥାନର ସୀମାରେଖା ବିସ୍ମୃତ ହୋଇଯାଉଥିଲା । ୧୯୭୯ରେ ଉପାଲି ଅପରାଜିତାଙ୍କ ପାଇଁ କେଳୁଚରଣ ଏହି ନୃତ୍ୟନାଟିକାଟିର ସଂରଚନା କରିଥିଲେ । ଏହା ତାଙ୍କର ସବୁଠାରୁ ଅଧିକ ମୌଳିକ ସର୍ଜନା ବୋଲି କୁହାଯାଇପାରେ । କୈବର୍ତ୍ତର ଚରିତ୍ରରେ ଯେପରି ତାଙ୍କ ନିଜ ଜୀବନର ସରଳତା, ନମ୍ରତା ଏବଂ ଭକ୍ତିଭାବ ପ୍ରତିଫଳିତ ହୋଇଥିଲା ! କୈବର୍ତ୍ତ ଓ କେଳୁଚରଣଙ୍କୁ ଭିନ୍ନ ଭାବରେ ଦେଖିବା ସମ୍ଭବ ନୁହେଁ ।

କୋଲ୍‌କାତାର ଶ୍ରୀଶିକ୍ଷାୟତନ ହଲ୍‌ରେ ଉଭୟ କେଳୁନରଣ ଓ ଗିରିଜା ଦେବୀଙ୍କୁ 'ସଙ୍ଗୀତ ଶ୍ୟାମଳ' ପୁରସ୍କାର ପ୍ରଦାନ ଅବସରରେ କେଳୁଚରଣ ଅନ୍ୟ ଏକ ସ୍ମରଣୀୟ



ବୀରରସ ପ୍ରଦର୍ଶନ



ବୀରରସ ପ୍ରଦର୍ଶନ

କାର୍ଯ୍ୟକ୍ରମ ପରିବେଷଣ କରିଥିଲେ । ଏହା ଥିଲା ତୁଳସୀ ଦାସଙ୍କ ହିନ୍ଦୀ ଭଜନ 'ଜନନୀ ମେ ନା ଜୀଉଁ ବିନ୍ ରାମ୍'ର ନୃତ୍ୟାଭିନୟ । ଏଥିରେ କଣ୍ଠଦାନ କରିଥିଲେ ଗିରିଜା ଦେବୀ । ନିଜ ମାତାଙ୍କ ଦ୍ୱାରା ବନବାସକୁ ପ୍ରେରିତ ରାମଙ୍କଠାରୁ ବିଚ୍ଛିନ୍ନ ହେବାର ଦୁଃଖ ଅଧିକ ପ୍ରଭାବଶାଳୀ ଭାବରେ ହୁଏତ ଅନ୍ୟ କାର୍ଯ୍ୟକ୍ରମରେ ପ୍ରଦର୍ଶିତ ହୋଇପାରି ନଥା'ନ୍ତା । ଏଥିରେ ମଧ୍ୟ ବିନୟ ଭକ୍ତିଭାବ ମୂଳ ବିଷୟବସ୍ତୁ – ରାମଙ୍କ ପାଦୁକା ଭରତ ରାଜସିଂହାସନରେ ସ୍ଥାପନ କରିବାରେ ଏହା ପ୍ରକାଶିତ ।

ହୋଲି ପର୍ବ ସମୟରେ କୋଲ୍‌କାତାରେ ବିମଳ ପୋଦ୍ଦାରଙ୍କ ବାସଗୃହରେ ଅନୁଷ୍ଠିତ 'ଗୁଲାବ୍ ବାରି' କାର୍ଯ୍ୟକ୍ରମରେ ଗିରିଜା ଦେବୀ ଓ କେଳୁଚରଣ ମିଳିତ କାର୍ଯ୍ୟକ୍ରମ ପରିବେଷଣ କରୁଥିଲେ । ସେତେବେଳେ ରଙ୍ଗମଞ୍ଚରେ ଅପୂର୍ବ ବାତାବରଣ ସୃଷ୍ଟି ହେଉଥିଲା । ହୋଲି ପର୍ବର ସଙ୍ଗୀତ ଗାନ ସହିତ କଥକ ଓସ୍ତାଦ୍ ବିର୍‌ଜୁ ମହାରାଜ ମଧ୍ୟ କେଳୁଚରଣଙ୍କ ସହିତ ନୃତ୍ୟରେ ଭାଗ ନେଉଥିଲେ । କେଳୁଚରଣ ଓ ଗିରିଜା ଦେବୀଙ୍କ ସମ୍ପର୍କ ଲୋକନାଥ ମିଶ୍ରଙ୍କ ବାସଗୃହରେ ଅନୁଷ୍ଠିତ ଜୟନ୍ତିକାର ଆଲୋଚନା ସଭା ସମୟରୁ । ଥରେ ଅଲ୍ ଇଣ୍ଡିଆ ରେଡ଼ିଓ କାର୍ଯ୍ୟକ୍ରମରେ ଭାଗନେବା ପାଇଁ ଗିରିଜା ଦେବୀ କଟକ ଆସିଥିଲେ । ସେତେବେଳେ ସେ ଲୋକନାଥଙ୍କ ବାସଗୃହରେ ରହିଥିଲେ । କାରଣ, ଲୋକନାଥଙ୍କ ପତ୍ନୀ ବୀଣାପାଣି ଥିଲେ ତାଙ୍କର ଛାତ୍ରୀ । ଗିରିଜା ଦେବୀ ଓ କେଳୁଚରଣଙ୍କର ପରସ୍ପରଙ୍କ ପ୍ରତି ଯଥେଷ୍ଟ ଶ୍ରଦ୍ଧା ଓ ସମ୍ମାନ ଥିଲା । ପରେ ଗିରିଜା ଦେବୀଙ୍କ କନ୍ୟା ସୁଧା କେଳୁଚରଣଙ୍କର ଛାତ୍ରୀ ହେଲେ । ରାକ୍ଷୀ ପୂର୍ଣ୍ଣିମା ଅବସରରେ କେବେ କେବେ ଗିରିଜା

ଦେବୀ କେଳୁଚରଣଙ୍କ ନିକଟକୁ ରାକ୍ଷୀ ପଠାଉଥିଲେ ।

୧୯୮୨ ଡିସେମ୍ବରରେ ଏନ୍.ସି.ପି.ଏ. କର୍ମଶାଳାର ଛାତ୍ରଛାତ୍ରୀମାନଙ୍କ ସହିତ କେଳୁଚରଣ 'ଜଟାୟୁ ମୋକ୍ଷ' ନୃତ୍ୟନାଟିକା ପରିବେଷଣ କଲେ । ସେ ଏହାର ସଂରଚନା କରିଥିଲେ ଓ ଏଥିରେ ସଙ୍ଗୀତ ନିର୍ଦ୍ଦେଶନା ଦେଇଥିଲେ ରଘୁନାଥ ପାଣିଗ୍ରାହୀ । ସଂଯୁକ୍ତାଙ୍କ ଦ୍ୱାରା ପୂର୍ବରୁ ପରିବେଷିତ 'ସୀତା ହରଣ' ନୃତ୍ୟନାଟିକା ସହିତ ଏହାର ସାମଞ୍ଜସ୍ୟ ଥିଲେ ମଧ ରାବଣ ଓ ଜଟାୟୁ ପକ୍ଷୀଙ୍କ ମଧ୍ୟରେ ସଂଘର୍ଷ ଓ ଜଟାୟୁର ନାଟକୀୟ ଢଙ୍ଗରେ ମୃତ୍ୟୁ ଏହି ନୃତ୍ୟନାଟିକାକୁ ଆକର୍ଷଣୀୟ କରିଥିଲା । ପରେ ଏହି ନୃତ୍ୟନାଟିକାରେ ସଙ୍ଗୀତ ନିର୍ଦ୍ଦେଶନା ଦେଇଥିଲେ ପଣ୍ଡିତ ଯଶରାଜ୍ ଏବଂ ଏହା ପରିବେଷଣ କରିଥିଲେ ପ୍ରତିମା ବେଦୀ । ରାବଣଦ୍ୱାରା ବଧ ହେବା ପୂର୍ବରୁ ହଂସଗତି ରୀତିରେ ଜଟାୟୁର ଚଳନ ଏବଂ କୋମଳ ଲତା ପରି ଦୁଇ ବାହୁର ପତନ ଦର୍ଶକମାନଙ୍କୁ ମୋହିତ କରିଥିଲା ।

'ଜଟାୟୁ ମୋକ୍ଷ' ନୃତ୍ୟନାଟିକାରେ କେଳୁଚରଣ ଛଉ ନୃତ୍ୟର କେତେକ ରୀତି ପ୍ରବର୍ତ୍ତନ କରିବାରେ କୁଣ୍ଠିତ ହୋଇ ନଥିଲେ । ଏହାଦ୍ୱାରା ଓଡ଼ିଶୀ ନୃତ୍ୟଶୈଳୀ ଅଧିକ ବିସ୍ତୃତ ହୋଇଥିଲା । 'କୈବର୍ତ୍ତ ପ୍ରସଙ୍ଗ' ନୃତ୍ୟନାଟିକାରେ ଶ୍ରୀରାମଙ୍କ ପଦରେଣୁ ପଡ଼ିଥିବା ଭୂମିକୁ ସାଷ୍ଟାଙ୍ଗ ଆଲିଙ୍ଗନ କରିବା ଥିଲା ପ୍ରଚଳିତ ନୃତ୍ୟଶୈଳୀରେ ଏକ ବ୍ୟତିକ୍ରମ । କେତେ ବର୍ଷ ପରେ ୧୯୯୮ରେ ସେ ମୋ ପାଇଁ ମହାଭାରତର ଚରିତ୍ର ଏକଲବ୍ୟ ଉପରେ ଆଧାରିତ ଏକ ନୃତ୍ୟନାଟିକା ପ୍ରସ୍ତୁତ କଲେ । ନିମ୍ନବର୍ଗର ହୋଇଥିବାରୁ ଦ୍ରୋଣ ଏକଲବ୍ୟଙ୍କୁ ସମର ବିଦ୍ୟା ଶିଖାଇ ନଥିଲେ । ବିଭିନ୍ନ ଅସ୍ତ୍ର ଚାଳନା କରିବାର ପଦ୍ଧତି ପାଇଁ ସେ ଖୋର୍ଦ୍ଧାର ପାଇକ ଆଖଡ଼ାରୁ ପ୍ରେରଣା ପାଇଥିଲେ । ପାଇକ ଆଖଡ଼ାମାନଙ୍କରେ ଅସ୍ତ୍ରଚାଳନା ମୁଁ ପୂର୍ବରୁ ରେକର୍ଡ କରିଥିଲି ।

ବିଭିନ୍ନ ପ୍ରକାରର କଳା ମୂଳତଃ କ'ଣ ଅଭିନ୍ନ ନୁହେଁ ? କଳାର ବିଭିନ୍ନ ପ୍ରକାଶଭଙ୍ଗୀ ମଧ୍ୟରେ ସୀମାରେଖା କ'ଣ ଏତେ ସ୍ୱଷ୍ଟ ? ଆଠ ବର୍ଷର ପାଇକ ଅଭିନେତାର ଅସ୍ତ୍ରଚାଳନା ପଦ୍ଧତିର କୌଶଳ ଓ ଲାଳିତ୍ୟ ଲକ୍ଷ୍ୟକରି ସେ ଏହି ପ୍ରଶ୍ନ ପଚାରୁଥିଲେ ।

ସୃଜନଶୀଳତାରେ ସ୍ୱାଧୀନତା ସହିତ ପରଂପରା ପ୍ରତି ସମ୍ମାନ – ତା'ସହିତ ସୌନ୍ଦର୍ଯ୍ୟବୋଧର ସମନ୍ୱୟ– ଏହା ଥିଲା ଆମ ପ୍ରତି ଗୁରୁଙ୍କର ଶ୍ରେଷ୍ଠ ବାଣୀ । ଏହି ବାଣୀ ଅନୁସରଣ କଲେ ହିଁ ସୃଷ୍ଟି ହୋଇପାରିବ ମହାନ୍ କଳାକୃତି । ଥରେ ମୁଁ ତାଙ୍କୁ ପଚାରିଥିଲି, 'ଜଣେ ନୃତ୍ୟଶିଳ୍ପୀ କିପରି ଜାଣିବ ସେ ନିଜକୁ ପରଂପରା ମଧ୍ୟରେ ସୀମିତ ରଖିଛି କି ନାହିଁ ?' ଗୁରୁ ଏହାର ଉତ୍ତରରେ ଯାହା କହିଥିଲେ ତାହା ମୋ ପାଇଁ ସବୁଠାରୁ ମୂଲ୍ୟବାନ୍ ଶିକ୍ଷା । 'କୌଣସି ନିର୍ଦ୍ଦିଷ୍ଟ ଶୈଳୀ ପରଂପରାକୁ ସୀମିତ କରେନାହିଁ; ତୁମର ସୌନ୍ଦର୍ଯ୍ୟବୋଧ ହିଁ ନିର୍ଣ୍ଣିତ କରେ ପରଂପରାର ସୀମା । ଅଙ୍ଗଚାଳନା, ସଙ୍ଗୀତ, ଭାବ – ଏସବୁ ମଧ୍ୟରେ ଥାଏ ଏକ ଅନ୍ତର୍ନିହିତ ସଂହତି । ଏହି ସଂହତିର ଅଭାବ ହେଲେ ତୁମେ ଜାଣିପାରିବ କେଉଁଠି କିଛି

ତ୍ରୁଟି ରହିଯାଉଛି । ତୁମେ ସେହି ସଂହତିର ଅନୁସନ୍ଧାନ କରିବ ଓ ତାହା ଆବିଷ୍କାର କଲେ ସ୍ୱତଃ ଜାଣିପାରିବ ।'

ଶିକ୍ଷାଦାନ ପଦ୍ଧତିରେ କେଳୁଚରଣ ଥିଓରୀ ବା ତତ୍ତ୍ୱ ଅପେକ୍ଷା ବାସ୍ତବତା ଉପରେ ଅଧିକ ଗୁରୁତ୍ୱ ଦେଉଥିଲେ । ତତ୍ତ୍ୱରୁ ନୁହେଁ, ବାସ୍ତବ ଅନୁଭୂତିରୁ ସେ ଉଦାହରଣ ନେଉଥିଲେ । ନୃତ୍ୟ କିପରି ସାଧନା କରାଯାଏ, ତାହାର ପ୍ରକ୍ରିୟା ଛାତ୍ରଛାତ୍ରୀମାନେ ନିଜେ ଆଖିରେ ଦେଖି ଶିଖୁଥିଲେ । ତତ୍ତ୍ୱମୂଳକ ପ୍ରଶ୍ନର ହୁଏତ ସେ ଖୁବ୍ ସନ୍ତୋଷଜନକ ଉତ୍ତର ଦେଇପାରୁ ନ ଥିଲେ, କିନ୍ତୁ ତାଙ୍କର ବାସ୍ତବ ଅଭିନୟ ବା ଅଙ୍ଗଚାଳନା ଥିଲା ଏକାନ୍ତ ସ୍ପଷ୍ଟ ଓ ସାବଲୀଳ । ଛାତ୍ରଛାତ୍ରୀମାନଙ୍କ ସମ୍ମୁଖରେ ହିଁ ସେ ନୃତ୍ୟ ସଂରଚନା କରୁଥିଲେ । ଏହା ଫଳରେ ଛାତ୍ରଛାତ୍ରୀମାନେ ଯେ କେବଳ ନୃତ୍ୟ ବା ଅଭିନୟ ଶିଖୁଥିଲେ ତା ନୁହେଁ, ସୃଜନ ପ୍ରକ୍ରିୟାର ଭାଗିଦାର ହେଉଥିଲେ ।

ଏନ୍.ସି.ପି.ଏ. ଛାତ୍ରଛାତ୍ରୀମାନଙ୍କ ସହିତ କେଳୁଚରଣ ତାଙ୍କ ସଂରଚିତ ଦ୍ୱିତୀୟ ନୃତ୍ୟନାଟିକା ମେ' ୧୯୮୩ରେ ଟାଟା ଥିଏଟର୍ ହଲ୍‌ରେ ପରିବେଷଣ କଲେ । ଏହା କବିସୂର୍ଯ୍ୟ ବଳଦେବ ରଥଙ୍କ 'କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ' ଉପରେ ଆଧାରିତ ଥିଲା । ତାଙ୍କର ସମସ୍ତ ପ୍ରବୀଣ ଛାତ୍ରଛାତ୍ରୀ ଏଥିରେ ଅଭିନୟ କରିବାକୁ ସେ ଚାହୁଁଥିଲେ । ଭୁବନେଶ୍ୱରରୁ ଆସି କୁଙ୍କୁମ ଦାସ ଏଥିରେ କୃଷ୍ଣ ଭୂମିକାରେ ଅଭିନୟ କରିଥିଲେ । ଅଳ୍ପବୟସ୍କା ପ୍ରତିଭାମୟୀ କୋମଲ୍ ମହୁଆକର୍ ସୁନ୍ଦରୀ ଲାଜକୁଳୀ ରାଧା ଭୂମିକାରେ ଓ କୁଙ୍କୁମ୍ ଲାଲ୍ ଚତୁରୀ ସଖୀ ଭୂମିକାରେ ଅଭିନୟ କରିଥିଲେ । ଏଥିରେ କୃଷ୍ଣଙ୍କର ସାଙ୍ଗ ବିଦୂଷକ ମଧୁମଙ୍ଗଳ ଚରିତ୍ରଟି ସଂଯୋଗ କରାଯାଇଥିଲା । ଏହି ଚରିତ୍ରରେ ଅଭିନୟ କରିଥିଲେ କେଳୁଚରଣଙ୍କ ପୁତ୍ର ରତିକାନ୍ତ । କର୍ମଶାଳାର ଅନ୍ୟ ଛାତ୍ରଛାତ୍ରୀମାନେ ନର୍ତ୍ତକୀ ଓ ସଖୀ ଭୂମିକାରେ ଅଭିନୟ କରିଥିଲେ । ନୂଆଦିଲ୍ଲୀରେ କମନ୍‌ୱେଲ୍‌ଥ୍ ସରକାରଙ୍କ ମୁଖ୍ୟମାନଙ୍କ ସମ୍ମିଳନୀରେ ଏହି ନୃତ୍ୟନାଟିକା ପୁଣିଥରେ ପ୍ରଦର୍ଶିତ ହୋଇଥିଲା । ଏଥିରେ କୃଷ୍ଣ ଭୂମିକାରେ ରତିକାନ୍ତ, ରାଧା ଭୂମିକାରେ ଇତିଶ୍ରୀ, ମଧୁମଙ୍ଗଳ ଭୂମିକାରେ ଅନଙ୍ଗ ଦ୍ୱିବେଦୀ ଅଭିନୟ କରିଥିଲେ ।

'କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ'ର 'ଲୀଳାନିଧି ହେ', 'ଖେଳା ଲୋଳା', 'କ୍ଷମାନୁକମ୍ପାଧର', 'କି ହେଲାରେ' ଓ ଅନ୍ୟାନ୍ୟ ଗୀତସବୁ ଗୋଟିପୁଅ ରୀତିରେ ଗାନ କରାଯାଉଥିଲା । ସଙ୍ଗୀତ ସଂଯୋଜନା ବେଳେ କେଳୁଚରଣ ଅନେକ ସମୟରେ ତାଙ୍କ ପତ୍ନୀ ଲକ୍ଷ୍ମୀପ୍ରିୟାଙ୍କ ପରାମର୍ଶ ଲୋଡୁଥିଲେ । ଆମେ ଏହି ସମୟରେ କେବେ କେବେ ଗୁରୁମା'ଙ୍କ ନୃତ୍ୟ ପ୍ରତିଭାର ପରିଚୟ ପାଇଥିଲୁ । କେଳୁଚରଣ ବାରମ୍ବାର ଅନୁରୋଧ କଲେ, ସେ କିନ୍ତୁ ଗୋଟିଏ ଦୁଇଟି ମୁଦ୍ରା ପ୍ରଦର୍ଶନ କରୁଥିଲେ । ତାଙ୍କ ଯୌବନରେ ସେ ଯେ ଜଣେ ଅସାଧାରଣ ନୃତ୍ୟଶିଳ୍ପୀ ହୋଇଥିବେ, ତାହା ବୁଝିହେଉଥିଲା । ତେବେ ଅଭିନୟ ପ୍ରଦର୍ଶନ ବା ତାଙ୍କ ଅତୀତ ଜୀବନର ସ୍ମୃତିଚାରଣ କରିବା ପାଇଁ ଅତ୍ୟନ୍ତ କୁଣ୍ଠିତ ଥିଲେ ।

ଥରେ ଲକ୍ଷ୍ମୀପ୍ରିୟା ମୋତେ କହିଥିଲେ, 'ଓଡ଼ିଶୀ ନୃତ୍ୟ ଯେ ଆଜି ଏତେ ପ୍ରସିଦ୍ଧି ଲାଭ କରିଛି, ସେଥିପାଇଁ ମୁଁ ଖୁବ୍ ଆନନ୍ଦିତ । ମୋ ଯୌବନରେ ମୁଁ କେତେଥର ଯେ ମଞ୍ଚ ଛାଡ଼ି ଚାଲିଯିବାକୁ ଚାହିଁଛି ଓ କାନ୍ଦିଛି, ତାହା ଆଦୌ ଭୁଲି ନାହିଁ । ଲୋକେ ତ ମୋ ସାଙ୍ଗେ କଥା ହେଉ ନଥିଲେ । ମୋ ନିକଟକୁ ଆସିଲେ ଅଶୁଦ୍ଧ ହୋଇଯିବେ ଭାବି ଦୂରକୁ ଚାଲିଯାଉଥିଲେ । ସେତେବେଳେ ଜଣେ ନର୍ତ୍ତକୀକୁ ଏହିପରି ନ୍ୟୂନ ଦୃଷ୍ଟିରେ ସମସ୍ତେ ଦେଖୁଥିଲେ ।'

୧୯୮୩ ଅକ୍ଟୋବରରେ ପଦାତିକ ଅନୁଷ୍ଠାନର କ୍ଷୁଦ୍ର ଅଡିଟୋରିୟମ୍‌ରେ ଅଳ୍ପ କେତେଜଣ ଦର୍ଶକଙ୍କ ସମ୍ମୁଖରେ ନୃତ୍ୟ ପ୍ରଦର୍ଶନ କରିବା ପାଇଁ ଚେତନା ଜାଲାନ୍ ଲକ୍ଷ୍ମୀପ୍ରିୟାଙ୍କୁ ନିମନ୍ତ୍ରଣ କଲେ । କେଳୁଚରଣ ତାଙ୍କ ସହିତ ନୃତ୍ୟରେ ଭାଗନେଇଥିଲେ । ଯେଉଁମାନେ ତାଙ୍କର ନୃତ୍ୟ ଉପଭୋଗ କରିଥିଲେ, ସେମାନଙ୍କ ପାଇଁ ତାହା ଥିଲା ଏକ ସୌଭାଗ୍ୟ ।

ମୁମ୍ବାଇ ଅଲ୍ ଇଣ୍ଡିଆ ରେଡ଼ିଓରେ କାର୍ଯ୍ୟ କରୁଥିବା ଭୁବନେଶ୍ୱର ମିଶ୍ର ଚମ୍ପୂର ସଙ୍ଗୀତ ନିର୍ଦ୍ଦେଶନା ଦେଇଥିଲେ । ଏହି କାର୍ଯ୍ୟକ୍ରମ ପାଇଁ ବେଲାହାରୀ ରାଗରେ ଏକ ନୂତନ ପଲ୍ଲବୀ ସଂରଚିତ ହୋଇଥିଲା । ଏହି ପଲ୍ଲବୀକୁ ତରଙ୍ଗ ପଲ୍ଲବୀ ମଧ୍ୟ କୁହାଯାଏ । ଏଥିରେ ଶରୀର ଉପର ଅର୍ଦ୍ଧଭାଗ ତରଙ୍ଗ ଭଳି ଆନ୍ଦୋଳିତ ହୁଏ । ଭୁବନେଶ୍ୱରର ଓଡ଼ିଶୀ ଗବେଷଣା କେନ୍ଦ୍ର ଆନୁକୂଲ୍ୟରେ କେଳୁଚରଣ ପରେ ଚମ୍ପୂର ଚଉତିରିଶିଟି ଗୀତର ସ୍ୱର ସଂଯୋଜନା କରିଥିଲେ ।

୧୯୮୩ରେ ମୁମ୍ବାଇର ଏକ କର୍ମଶାଳାରେ ଭାରତନାଟ୍ୟମ୍ ନୃତ୍ୟଶିଳ୍ପୀ ମାଳବିକା ସାରୁକ୍କାଇ ଉପସ୍ଥିତ ଥିଲେ । ଆଗରୁ ସେ ମୁମ୍ବାଇରେ ଦୁଇ ତିନୋଟି କର୍ମଶାଳାରେ ଯୋଗ ଦେଇଥିଲେ । ଓଡ଼ିଶୀରେ କେଳୁଚରଣଙ୍କଠାରୁ ଅଧିକ ତାଲିମ୍ ନେବା ପାଇଁ ତାଙ୍କର ଆଗ୍ରହ ଥିଲା । ଚେନ୍ନାଇରେ ସେ ରମଣୀ ରଂଜନ ଜେନାଙ୍କଠାରୁ କିଛି ତାଲିମ୍ ନେଇସାରିଥିଲେ ।

ମାଳବିକାଙ୍କୁ ତାଲିମ୍ ଦେବାରେ ପ୍ରଥମେ କେଳୁଚରଣଙ୍କର ଆପତ୍ତି ନ ଥିଲା । କିନ୍ତୁ କର୍ମଶାଳା ଶେଷରେ କୌଣସି କାରଣରୁ ସେ ମାଳବିକାଙ୍କୁ ଛାତ୍ରୀ ଭାବରେ ଗ୍ରହଣ କରିବାକୁ ରୋକ୍‌ଠୋକ୍ ମନା କରିଦେଲେ । 'ଚମ୍ପୂ' ନୃତ୍ୟନାଟିକାରେ ମାଳବିକାଙ୍କର ସଖୀ ଭୂମିକାରେ ଅଭିନୟ କରିବାର ଥିଲା । ସେ କିନ୍ତୁ ମା'ଙ୍କ ଠାରୁ ଡାକରା ପାଇ ହଠାତ୍ ଚେନ୍ନାଇ ଚାଲିଗଲେ । କେଳୁଚରଣ ହୁଏତ ଏଥିରେ ବିବ୍ରତ ହୋଇପଡ଼ିଲେ ଓ ଭାବିଲେ, ମାଳବିକା ଗୋଟିଏ ଗୌଣ ଭୂମିକାରେ ଅଭିନୟ କରିବା ପାଇଁ ପ୍ରସ୍ତୁତ ନଥିଲେ । ସେ କହିଥିଲେ, ମାଳବିକାଙ୍କ ପୂର୍ବତନ ଗୁରୁ ରମଣୀ ଓ ତାଙ୍କ ଭିତରେ ସେ ଭୁଲ୍ ବୁଝାମଣା ଚାହୁଁ ନଥିଲେ । ଏହା ମଧ୍ୟ ହୋଇପାରେ, ଲକ୍ଷ୍ମୀପ୍ରିୟା କୌଣସି କାରଣରୁ ମାଳବିକାଙ୍କ ଉପରେ ଅସନ୍ତୁଷ୍ଟ ଥିଲେ । ପରିବାରରେ ଅଶାନ୍ତି ସୃଷ୍ଟି ନ କରିବା ପାଇଁ କେଳୁଚରଣ









କୈବର୍ତ୍ତର ବିଭିନ୍ନ ଭାବ ପ୍ରଦର୍ଶନ

ମାଳବିକାଙ୍କୁ ଛାତ୍ରୀ ଭାବରେ ଗ୍ରହଣ କରି ନଥିଲେ ।

ସପ୍ତମ ଦଶକର ପ୍ରଥମ ଭାଗରେ ସୋନାଲ୍‌ଙ୍କୁ ଛାତ୍ରୀ ଭାବରେ ଗ୍ରହଣ ନ କରିବା ପରେ ମାଳବିକାଙ୍କୁ ଗ୍ରହଣ ନ କରିବା କେଳୁଚରଣଙ୍କ ପକ୍ଷରେ ଥିଲା ଏକ ଗୁରୁତ୍ୱପୂର୍ଣ୍ଣ ସିଦ୍ଧାନ୍ତ । ସୋନାଲ୍ ଖୁବ୍ ଦୁଃଖିତ ହୋଇଥିଲେ ମଧ୍ୟ ଦୃଢ ଇଚ୍ଛାଶକ୍ତି ବଳରେ ଅନ୍ୟ ଗୁରୁମାନଙ୍କଠାରୁ ନୃତ୍ୟ ଶିଖି ପ୍ରତିଷ୍ଠିତ ହୋଇପାରିଲେ । କେଳୁଚରଣଙ୍କ ଛାତ୍ରୀ ହେବାରୁ ବଞ୍ଚିତ ହୋଇ ମାଳବିକା ଓଡ଼ିଶୀ ନୃତ୍ୟ ଛାଡ଼ିଦେଲେ ଓ କେବଳ ଭାରତନାଟ୍ୟମ୍‌ରେ ମନ ଦେଲେ ।

ତାଲିମ୍ ସମୟରେ ଆମେ ସମସ୍ତେ କେଳୁଚରଣଙ୍କ କ୍ଷଣକୋପୀ ଚରିତ୍ର ସହିତ ଅଭ୍ୟସ୍ତ ଥିଲୁ । ଏହାକୁ ଅତ୍ୟନ୍ତ ସାମୟିକ ଘଟଣା ଭାବରେ ଗ୍ରହଣ କରି ନେଉଥିଲୁ । ଆମେ ନିଷ୍କପଟ ଭାବରେ ଦୁଃଖପ୍ରକାଶ କଲେ, ସେ ସଙ୍ଗେ ସଙ୍ଗେ ଆମକୁ କ୍ଷମା କରିଦେଉଥିଲେ ।

ମାତ୍ର ଅଳ୍ପ କେତେଥର କେଳୁଚରଣଙ୍କ କ୍ଷଣକୋପୀ ସ୍ୱଭାବର ପରିଣତି ଗୁରୁ ଓ ଶିଷ୍ୟଶିଷ୍ୟାଙ୍କ ମଧ୍ୟରେ ସମ୍ପର୍କ ଛିନ୍ନ କରିଥିଲା । ୧୯୯୩ରେ ପ୍ରତିମା ବେଦୀ ଓ ୧୯୯୫ରେ କୁଙ୍କୁମ ଦାସଙ୍କ କ୍ଷେତ୍ରରେ ସେପରି ହୋଇଥିଲା । ପ୍ରତିମା ବେଦୀଙ୍କ ପାଇଁ ତାଙ୍କ ପରିବାରରେ କିଛି ସମସ୍ୟା ହୋଇଥିଲା । ତାଙ୍କ ପତ୍ନୀଙ୍କ ପାଇଁ ନୁହେଁ, ପୁତ୍ର ରତିକାନ୍ତଙ୍କ ପାଇଁ । ସ୍ୱାଭିମାନ ଯୋଗୁ କୁଙ୍କୁମଙ୍କ ସହିତ ମତାନ୍ତର ହେଲା । କେଳୁଚରଣ ଗୁରୁ ମୋହନସୁନ୍ଦର ଦେବ ଗୋସ୍ୱାମୀଙ୍କୁ ମଧ୍ୟ ସେହି କାରଣରୁ ଛାଡ଼ିଥିଲେ । ପରେ କଳାବିକାଶ କେନ୍ଦ୍ର ସହିତ ମଧ୍ୟ ସମ୍ପର୍କ ତୁଟାଇଥିଲେ । ନିଜ ସ୍ୱାଭିମାନରେ ଆଞ୍ଚ ଆସିଲେ କେଳୁଚରଣ ସହ୍ୟ କରିପାରୁ ନଥିଲେ । କେଳୁଚରଣ କିନ୍ତୁ ନିଜ ଛାତ୍ରଛାତ୍ରୀମାନଙ୍କୁ ସମ୍ପୂର୍ଣ୍ଣ ତାଲିମ୍ ଦେବା ପୂର୍ବରୁ ଛାଡୁ ନଥିଲେ । ସେ କହୁଥିଲେ, 'ଛାତ୍ରଛାତ୍ରୀମାନଙ୍କ ସହିତ ମୋର ସମ୍ପର୍କ ପିତାଙ୍କ ସହିତ ପୁତ୍ରକନ୍ୟାଙ୍କ ସମ୍ପର୍କ ଭଳି । ପୁତ୍ରକନ୍ୟାମାନଙ୍କୁ ସେମାନଙ୍କର ଆବଶ୍ୟକତା ଥିବାଯାଏଁ ପିତା ସାହାଯ୍ୟ କରନ୍ତି । ପିତା ଯେତେବେଳେ ବୁଝିପାରନ୍ତି ଯେ ପୁତ୍ରକନ୍ୟାମାନେ ସ୍ୱାଧୀନ ଭାବରେ ଚଳିପାରିବେ, ସେତେବେଳେ ସେ ନିଜକୁ ଦୂରେଇ ନିଅନ୍ତି ।'

କେଳୁଚରଣଙ୍କ ଶିକ୍ଷକସୁଲଭ ଗୁଣ ଥିଲା ଆଶ୍ଚର୍ଯ୍ୟଜନକ । ଛାତ୍ରଛାତ୍ରୀମାନଙ୍କଠାରେ ସ୍ୱର, ଭାବଭଙ୍ଗୀ, ପୋଷାକ ପରିଚ୍ଛଦ, ସବୁକିଛି ସେ ତୀକ୍ଷ୍ଣ ଭାବରେ ଲକ୍ଷ୍ୟ କରୁଥିଲେ । ସେମାନଙ୍କ ଅଙ୍ଗଭଙ୍ଗୀ, ଗତି ଓ ପ୍ରତିକ୍ରିୟାରୁ କେଳୁଚରଣ ସେମାନଙ୍କ ବ୍ୟକ୍ତିତ୍ୱ ନିର୍ଣ୍ଣୟ କରିପାରୁଥିଲେ । ଲାଜକୁଳା ଛାତ୍ରଛାତ୍ରୀମାନଙ୍କୁ ସେ ସହଜ ଭାବରେ ତାଲିମ୍ ଗ୍ରହଣ କରିବା ପାଇଁ ଉତ୍ସାହିତ କରୁଥିଲେ; ଅହଂକାର ସହ୍ୟ କରୁ ନଥିଲେ । କେହି ବିଚଳିତ ବା ବିମର୍ଷ ଥିଲେ ମଜାକଥା କହି ତାକୁ ଖୁସି କରାଇ ପାରୁଥିଲେ । ଛାତ୍ରଛାତ୍ରୀମାନଙ୍କ ମଧ୍ୟରେ ଈର୍ଷାଭାବ ସେ ପ୍ରଶ୍ରୟ ଦେଉ ନଥିଲେ ।

ଛାତ୍ରଛାତ୍ରୀମାନଙ୍କ ଭ୍ରମ ସଂଶୋଧନ ପାଇଁ ବେତରେ ପ୍ରହାର ଦେଉଥିଲେ; ଉପରକୁ ବେତ ଫିଙ୍ଗୁଥିଲେ କିମ୍ବା ଘୁଷୁରୀ, ଘୋଡ଼ା, ହାତୀ ଇତ୍ୟାଦି ଶବ୍ଦ ପ୍ରୟୋଗ କରି ଗାଳି ଦେଉଥିଲେ । କେହି କାନ୍ଦିବା ସେ ସହିପାରୁ ନଥିଲେ । ସେହିପରି କେହି କ୍ଳାନ୍ତିଭାବ ପ୍ରକାଶ କରିବା, ତାଲିମ୍‌କୁ ଲଘୁ ଭାବରେ ଗ୍ରହଣ କରିବା କିମ୍ବା ଅତ୍ୟଧିକ ଉତ୍ସାହିତ ହେବା ମଧ୍ୟ ସେ ପସନ୍ଦ କରୁ ନଥିଲେ ।

ସେ ଖୁବ୍ ଭଲ ଗପ କହିପାରୁଥିଲେ । ନୃତ୍ୟ ଶିଖାଇବା ଭିତରେ ତାଙ୍କର ଅତୀତର କଥା, ପୁରାଣ କାହାଣୀ ଓ ନିଜ ଜୀବନର ଦର୍ଶନ ବିଷୟରେ କହୁଥିଲେ । ସେ ଗପ କହୁଥିବା ସମୟରେ ଛାତ୍ରଛାତ୍ରୀମାନେ ଠିଆ ନ ରହି ଚଟାଣ ଉପରେ ବସିପଡୁଥିଲେ । ପୁଣି ହଠାତ୍ ସେ ଚଟାଣରେ ବେତ ପିଟିଦେଲେ ସମସ୍ତେ ଠିଆହୋଇ ପଡୁଥିଲେ ।

ଶ୍ରେଣୀଗୃହରେ ସେ ସମସ୍ତଙ୍କୁ ପିଲାଙ୍କ ପରି ବ୍ୟବହାର କରୁଥିଲେ । କାହାର କେତେ ବୟସ, ତାହା ବିଚାରକୁ ନେଉ ନଥିଲେ । ସୋନାଲ୍ କହନ୍ତି, 'ପ୍ରାୟ କୋଡ଼ିଏ ବର୍ଷ ପରେ ଥରେ ସେ ଓଡ଼ିଶା ଆସିଥିଲେ 'କୋଣାର୍କ' ନୃତ୍ୟନାଟିକାରେ ଭାଗନେବା ପାଇଁ । ଏହା କୋଣାର୍କ ଉତ୍ସବରେ ଓଡ଼ିଶୀ ଗବେଷଣା କେନ୍ଦ୍ର ଆନୁକୂଲ୍ୟରେ ଅନୁଷ୍ଠିତ ହେବାର ଥିଲା । ସେ ମଞ୍ଚର ଗ୍ରୀନ୍‌ରୁମ୍‌ରେ ବସିଥିବା ସମୟରେ ଟିକେ ଢୁଳାଇ ପଡ଼ିଲେ । ସଙ୍ଗେ ସଙ୍ଗେ ତାଙ୍କ ପିଠିରେ ଜୋର୍ ଥାପଡ଼ଟିଏ ବାଜିଲା । କେଳୁଚରଣ କହୁଥିଲେ, 'କ'ଣ ଝିଅ, ଏଠି ଶୋଇବାକୁ ଆସିଛୁ ?' କୋଡ଼ିଏ ବର୍ଷ ତଳେ କେଳୁଚରଣ ଠିକ୍ ତାହା ହିଁ କରୁଥିଲେ । ସଂଯୁକ୍ତାଙ୍କ ପରି ପ୍ରବୀଣା ଓ ଖିଆଲି ନର୍ତ୍ତକୀ ମଧ୍ୟ କେଳୁଚରଣଙ୍କ ନିକଟରେ ଅତ୍ୟନ୍ତ ନମ୍ରଭାବ ପ୍ରକାଶ କରୁଥିଲେ ।

କେବେ କିପରି କେଳୁଚରଣଙ୍କ ବ୍ୟବହାର ହୁଏତ କଠୋର ମନେ ହେଉଥିଲା । ତେବେ, ଅଧିକାଂଶ ସମୟରେ ତାହା ଯଥାର୍ଥ ଥିଲା । ଥରେ ସେ ମୋ ଉପରେ ଖୁବ୍ ଚିଡ଼ିଗଲେ । ଏପରି ହେବାର ବିଶେଷ କାରଣ ନଥିଲା । ତେବେ ସେ ତାଙ୍କ ମତରେ ଦୃଢ଼ ରହିଲେ, ମୁଁ ଯେତେ କ୍ଷମାଭିକ୍ଷା କଲେ ମଧ୍ୟ ସେ କର୍ମଶାଳାରେ ତାଲିମ୍ ନେବା ପାଇଁ ଆଉ ଅନୁମତି ଦେଲେନାହିଁ ।

'କାରଣ ଯାହାହେଉନା କାହିଁକି, ମୁଁ ତୁମକୁ ଆଉ ନୃତ୍ୟ ଶିଖାଇବି ନାହିଁ'– ସେ ମୋତେ ଏକାଧିକବାର କହିଲେ । ଏହା ଥିଲା ୧୯୮୫ର ଗ୍ରୀଷ୍ମ ଅବକାଶ । ମୁଁ ସେତେବେଳକୁ ଇଟାଲି ବାହାରେ ଓଡ଼ିଶାରେ କ୍ରମାଗତ ଛଅ ବର୍ଷ ରହିସାରିଥାଏ । ୟୁରୋପ୍‌ରେ ନୃତ୍ୟ ଅଭିନୟ କରିବା ପାଇଁ ମୋତେ ନିମନ୍ତ୍ରଣ ଥାଏ । ମୁଁ କିନ୍ତୁ ସ୍ଥିର କରିଥାଏ, ଗ୍ରୀଷ୍ମକାଳୀନ କର୍ମଶାଳା ଛାଡ଼ି ୟୁରୋପ୍ ଯିବି ନାହିଁ । କେଳୁଚରଣ ମୋତେ କର୍ମଶାଳାରୁ ବାହାର କରିଦେବା ପରେ ମୁଁ ୟୁରୋପ୍ ଯିବା କଥା ଭାବିଲି । ଏହା ମୋତେ ଯଥେଷ୍ଟ ସାହାଯ୍ୟ କରିଥିଲା । ମୋ ଦେଶ ଲୋକଙ୍କ ସହିତ ପୁଣି ଥରେ ମୋର ସମ୍ପର୍କ ସ୍ଥାପିତ



ଭୁବନେଶ୍ୱରଠାରେ ଶିକ୍ଷାଦାନ (୧୯୮୯)

ହେଲା; ବିଗତ ଛଅ ବର୍ଷ ସମୟ ମଧ୍ୟରେ ମୁଁ ଶିଖିଥିବା ନୃତ୍ୟକଳା ସଂପର୍କରେ ଅନ୍ୟମାନଙ୍କ ସହିତ ଆଲୋଚନା କଲି । ଆଶ୍ଚର୍ଯ୍ୟର କଥା, ମାସକ ପରେ ଫେରି ମୁଁ ଯେତେବେଳେ କେଳୁଚରଣଙ୍କ ନିକଟକୁ ଗଲି, ସେ ମୋତେ ୟୁରୋପ୍‌ରେ ମୋ ନୃତ୍ୟ ସଂପର୍କରେ ପଚାରିଲେ । ଆଗ କଥା ସେ ସମ୍ପୂର୍ଣ୍ଣ ଭୁଲିଯାଇଥିଲେ ।

ଶ୍ରେଣୀଗୃହରେ ଯଦିଓ ସେ କେବେ କେବେ ଅନ୍ୟମାନଙ୍କୁ ଗାଳି ଦେଉଥିଲେ, ମଜାକଥା କହିବାର ବି କମ୍‌ତି ନଥିଲା । ଅନ୍ୟମାନଙ୍କ ଗତିବିଧି ଓ ଢଙ୍ଗଢାଙ୍ଗର ସେ ନିଖୁଣ ଅନୁକରଣ କରିପାରୁଥିଲେ, ବିଶେଷତଃ ତାଙ୍କ ଛାତ୍ରଛାତ୍ରୀମାନଙ୍କର । ତାଙ୍କର ସବୁଠୁ ମଜା ଅଭିନୟ ଥିଲା, ଜନାକୀର୍ଣ୍ଣ ବସ୍‌ରେ ପାଇଖାନା ଯିବା ପାଇଁ ଲୋକଟିର ଢଙ୍ଗଢାଙ୍ଗ ।

ତାଙ୍କର ହାସ୍ୟରସବୋଧ ଥିଲା ପ୍ରଖର । ଯେ କୌଣସି ପରିସ୍ଥିତିରେ ସେ ଏହା ପ୍ରକାଶ କରିପାରୁଥିଲେ – ନିଜକୁ ମଧ୍ୟ ହାସ୍ୟରସର ଖୋରାକ ବନାଇ ଦେଉଥିଲେ । ୧୯୮୮ରେ ଦିଲ୍ଲୀରେ ସେ କ୍ଲାସ୍ ନେଉଥିବା ସମୟରେ 'ପଦ୍ମଭୂଷଣ' ଉପାଧି ଲାଭ କରିବାର ସମ୍ବାଦ ଆସିଲା । ଛାତ୍ରଛାତ୍ରୀମାନେ ତାଙ୍କୁ ଅଭିନନ୍ଦନ ଜଣାଇଲେ । କୋଲ୍‌କାତାରେ ଓ ଭୁବନେଶ୍ୱରର ଓଡ଼ିଶୀ ଗବେଷଣା କେନ୍ଦ୍ର ପକ୍ଷରୁ ମଧ୍ୟ ସେ ଅଭିନନ୍ଦିତ ହେଲେ । ସେତେବେଳେ କଟକରେ କୌଣସି ଛାତ୍ରଛାତ୍ରୀ ତାଙ୍କଠାରୁ ତାଲିମ୍ ନେଉ ନଥିଲେ । 'ପଦ୍ମଭୂଷଣ' ଲେଖାଥିବା ଗୋଟିଏ ଫୁଲତୋଡ଼ା ମୁଁ ତାଙ୍କ କଟକ ଘର କବାଟରେ ଝୁଲାଇ ଦେଲି । ସେ କେତେବେଳେ ଫେରିଲେ, ମୋତେ ଜଣା ନଥିଲା । ତା'ପରଦିନ ଯେତେବେଳେ ମୁଁ ତାଙ୍କ ଘରକୁ ଗଲି, ସେ ସେହି ଫୁଲତୋଡ଼ାଟି ମୁଖ ପାଖରେ ରଖି ନୃତ୍ୟ



ଲକ୍ଷ୍ମୀପ୍ରିୟା ଓ କେଳୁଚରଣ

କରିବାକୁ ଲାଗିଲେ ।

କେଳୁଚରଣଙ୍କ ଛାତ୍ରଛାତ୍ରୀମାନେ ଗ୍ରୀଷ୍ମକାଳୀନ ତାଲିମ୍ ଶିବିରରେ କଟାଇଥିବା ସମୟକୁ ଖୁବ୍ ମନେ ପକାନ୍ତି । ତାଲିମ୍ ନେଉଥିବା ସମୟରେ ନିଜ ନିଜର ସବୁ ସମସ୍ୟା ଓ ଅନ୍ୟାନ୍ୟ କାର୍ଯ୍ୟକୁ ସେମାନେ ଯେପରି କବାଟ ଆରପାଖେ ରଖିଦେଇ ଆସନ୍ତି । କେଳୁଚରଣ ଗୋଟିଏ ମୁଦ୍ରା ବା ଭଙ୍ଗୀ ଆଗରୁ ଯେତେଥର ପ୍ରଦର୍ଶନ କରିଥିଲେ ମଧ୍ୟ ପ୍ରତିଥର ସେଥିରେ କିଛି ନୂତନତା ଥାଏ । ଏହା ଆମକୁ ପ୍ରତିଥର ଆକର୍ଷଣୀୟ ଲାଗେ । ପ୍ରଚଣ୍ଡ ଗ୍ରୀଷ୍ମ ଋତୁ, ବର୍ଷା ପୂର୍ବରୁ ଗୁଳୁଗୁଳି ପରେ ଆସେ ଅସରା ଅସରା ବର୍ଷା । ଆମେ ତାଲିମ୍ ନେଉଥିବା ରୁମ୍‌ଟି ଭିତରେ କିନ୍ତୁ ତାହାର ଯେପରି କିଛି ପ୍ରଭାବ ପଡ଼େନାହିଁ । କେଳୁଚରଣ ତାଙ୍କର କ୍ଲାସ୍ ନିୟମିତ ନିଅନ୍ତି ।

ଗୃହ ଅଗଣାରେ ନିର୍ମିତ ମନ୍ଦିରରେ ସଂଧ୍ୟାର ଆଳତି, ଅର୍ଦ୍ଧବୃତ୍ତାକାରରେ ଚଟାଣରେ ବସି ଲକ୍ଷ୍ମୀପ୍ରିୟାଙ୍କ ଦ୍ୱାରା ପରିବେଷିତ ଖାଦ୍ୟ ଗ୍ରହଣ– ଏହା ଥିଲା ତାଲିମ୍ ସମୟର ନିୟମିତ କାର୍ଯ୍ୟକ୍ରମ । ମୁମ୍ବାଇ, ଦିଲ୍ଲୀ ଓ କୋଲ୍‌କାତାର ଛାତ୍ରଛାତ୍ରୀମାନେ ସେମାନଙ୍କ ସହରୀ ଆଦବକାଇଦା ଭୁଲି ଖୁବ୍‌ଶୀଘ୍ର ଓଡ଼ିଶାର ଖାଦ୍ୟ ଓ ଜୀବନଶୈଳୀରେ ଅଭ୍ୟସ୍ତ ହୋଇଯାଉଥିଲେ ।

ଲକ୍ଷ୍ମୀପ୍ରିୟା ଖୁବ୍ ସହଜ ଭାବରେ ଘରର କାର୍ଯ୍ୟ ସମ୍ଭାଳୁ ଥିଲେ । କେଳୁଚରଣ ଛାତ୍ରଛାତ୍ରୀମାନଙ୍କୁ ତାଲିମ୍ ଦେବା ସମୟରେ ଲକ୍ଷ୍ମୀପ୍ରିୟା ସେମାନଙ୍କ ଖାଇବା ଓ ରହିବା କଥା ବୁଝୁଥିଲେ । କର୍ମଶାଳାରେ ତାଲିମ୍ ନେଉଥିବା ଛାତ୍ରଛାତ୍ରୀଙ୍କର ସୀମା ନିର୍ଦ୍ଦିଷ୍ଟ ନଥିଲା ।

ତାଲିମ୍ ନେବା ପାଇଁ ନାମ ଲେଖାଇବାକୁ ପଡୁନଥିଲା । ଯେ କେହି ନିଜର ଆବଶ୍ୟକତା ଓ ସୁବିଧା ଦେଖି କର୍ମଶାଳାରେ ଯୋଗ ଦେଇ ପାରୁଥିଲେ ।

ସିନିୟର ଛାତ୍ରଛାତ୍ରୀମାନେ ଜୁନିୟର ବା ନବାଗତମାନଙ୍କ ସହିତ ତାଲିମ୍ ନେବା ଦେଖାଯାଉଥିଲା । ପ୍ରତିଭାବାନ୍ ନବାଗତମାନେ ସିନିୟର ବା ପୋଖତ ଛାତ୍ରଛାତ୍ରୀମାନଙ୍କ ସହିତ କାର୍ଯ୍ୟ କରୁଥିଲେ । ବିଳମ୍ବିତ ରାତ୍ରିରେ ସଂଯୁକ୍ତା କିମ୍ବା ଅନ୍ୟ କୌଣସି ସିନିୟର କଳାକାରଙ୍କ ପାଇଁ ନୂତନ କାର୍ଯ୍ୟକ୍ରମ ସଂଯୋଜିତ ହେଉଥିଲା । କେଳୁଚରଣ ନୂତନ କାର୍ଯ୍ୟକ୍ରମଟିଏ ସଂଯୋଜନା କରିବା ବେଳେ ତାହାକୁ ଲକ୍ଷ୍ୟ କରିବା ଯଥାର୍ଥରେ ଏକ ମୂଲ୍ୟବାନ ଅନୁଭୂତି ।

ବିଦେଶ ଭ୍ରମଣ ସମୟରେ କେଳୁଚରଣ ସାଧାରଣତଃ ପ୍ରଫୁଲ୍ଲ ରହୁଥିଲେ । ତାଙ୍କ ଚାରିପାଖରେ ଯାହା ଘଟୁଥିଲା, ତାହା ମନୋଯୋଗ ସହକାରେ ଲକ୍ଷ୍ୟକରି ବୁଝିବାକୁ ଚେଷ୍ଟା କରୁଥିଲେ; ତାଙ୍କ ଅନୁଭୂତିର ପରିସରକୁ ବଢାଉଥିଲେ ।

୧୯୯୫ରେ ଫ୍ରାନ୍ସର ସଂସ୍କୃତି ବିଭାଗଠାରୁ 'ଅଫିସର୍ ଅଫ୍ ଦ ଅର୍ଡର୍ ଅଫ୍ ଆର୍ଟ୍ ଆଣ୍ଡ୍ କଲ୍‌ଚର୍' ଉପାଧି ଲାଭ କରିବା ଅବସରରେ ଫ୍ରାନ୍ସର ଜଣେ ସାମ୍ବାଦିକଙ୍କୁ ସେ କହିଥିଲେ, 'ଜଣେ ନୃତ୍ୟଶିଳ୍ପୀର ଆବଶ୍ୟକତା ତିନୋଟି– ଛନ୍ଦ, ଶରୀର ଓ ଆତ୍ମା । ଜଣେ ଗୁରୁ ପାଇଁ ଏହି ତିନୋଟି ଓ ଏହାଠାରୁ ଅଧିକ କିଛିର ପ୍ରୟୋଜନ । ସେଥିପାଇଁ ତା'ର ଶିଖିବା ବା ଗବେଷଣା କରିବାର ଶେଷ ନଥାଏ ।'



ରବିଶଙ୍କରଙ୍କ ସାନ୍ ଡିଏଗୋ (ଆମେରିକା) ବାସଭବନରେ

ବିଦେଶ ଯାତ୍ରାରେ ଯାଉଥିବା ଶିକ୍ଷୀମାନେ ଖାଦ୍ୟ ବିଷୟରେ ବିଶେଷ ସଚେତନ ରହୁଥିଲେ । କିନ୍ତୁ କେବଳ ଗୋରୁ ମାଂସକୁ ବାଦ୍ ଦେଲେ କେଳୁଚରଣ ଅନ୍ୟ ଯେ କୌଣସି ଖାଦ୍ୟ ଗ୍ରହଣ କରୁଥିଲେ ।

ଅଗଷ୍ଟ ୧୯୮୭ରେ ରୁଷ୍‌ରେ ଅନୁଷ୍ଠିତ ଭାରତ ଉତ୍ସବରେ ଯୋଗଦେବା ଅବସରରେ ସେ ଜଣେ ବିଶାଳକାୟ ରୁଷୀୟ ମହିଳାଙ୍କ ସହିତ ଆନନ୍ଦରେ ନୃତ୍ୟ କରିଥିଲେ । ଧୋତିକୁ ସ୍କାର୍ଟ୍ ଭଳି ଟେକି ଧରି ରଷ୍ ଲୋକନୃତ୍ୟ ଅନୁକରଣ କରି ସେ ଘୂରି ଘୂରି ନାଚିଥିଲେ ଓ ଅନ୍ୟମାନଙ୍କୁ ତାଙ୍କ ସହିତ ଯୋଗଦେବା ପାଇଁ ଉତ୍ସାହିତ କରିଥିଲେ । ତାଙ୍କର ଛାତ୍ରଛାତ୍ରୀମାନେ ଏହା ମନେ ପକାନ୍ତି ।

ମୁମ୍ବାଇର ଜଣେ ଛାତ୍ରୀ ଝେଲମ୍ କହନ୍ତି, 'ଥରେ ଗୁରୁଙ୍କ ନିକଟରେ ଠିଆହୋଇ ମୁଁ ଜଣେ ଖୁବ୍ ସୌମ୍ୟଦର୍ଶନ ରୁଷୀୟ ଯୁବକକୁ ଅନାଇଥିଲି । ଗୁରୁଜୀ ଆମ ଦୁହିଁଙ୍କ ଆଡେ କିଛି ସମୟ ଚାହିଁବା ପରେ ମୁଁ କାହିଁକି ସେ ଯୁବକକୁ ଏପରି ଅନାଇଛି ବୋଲି ପଚାରିଲେ । ସେ ଯୁବକ ଖୁବ୍ ସୁନ୍ଦର ବୋଲି ଉତ୍ତରରେ ମୁଁ କହିଲି । ଗୁରୁଜୀ ସଙ୍ଗେ ସଙ୍ଗେ କହିଲେ, 'ମୁଁ କ'ଣ ସୁନ୍ଦର ନୁହେଁ ?'

୧୯୮୮ ଗ୍ରୀଷ୍ମ ଋତୁରେ ଦକ୍ଷିଣ ଇଟାଲିର ଗୋଟିଏ କ୍ଷୁଦ୍ର ଗ୍ରାମରେ ଆମର କାର୍ଯ୍ୟକ୍ରମଟିଏ ପ୍ରଦର୍ଶିତ ହେବାର ଥାଏ । ଏଥିପାଇଁ ନିର୍ମିତ କାଠର ମଞ୍ଚଟି ବିଭିନ୍ନ ସ୍ଥାନରେ ଭାଙ୍ଗି ଯାଇଥିବା ଦେଖି ଆମେ ବିଚଳିତ ହୋଇପଡିଲୁ । ତା' ପୂର୍ବଦିନ ବ୍ରାଜିଲିଆନ୍ ନୃତ୍ୟଶିକ୍ଷୀମାନଙ୍କ ନୃତ୍ୟ ଫଳରେ ସେପରି ହୋଇଥିଲା । ଆମ କାର୍ଯ୍ୟକ୍ରମର ଆୟୋଜକମାନେ କ'ଣ କରିବେ ଜାଣିପାରିଲେ ନାହିଁ । ସେଦିନ ଛୁଟି ଥିବାରୁ କାମ କରିବା ପାଇଁ ଲୋକ ମିଳିବା ସହଜ ନଥିଲା । ଆୟୋଜକମାନେ ଇଟାଲିୟାନ୍‌ରେ କଥାଭାଷା ହେଉଥିଲେ ହେଁ କେଳୁଚରଣ ସେମାନଙ୍କ ସମସ୍ୟାଟି ଠିକ୍ ବୁଝିଲେ । ଆଦୌ ସମୟ ନଷ୍ଟ ନକରି ସେ ଗୋଟିଏ ହାତୁଡ଼ି ଓ କଣ୍ଟା ଆଣି ମଞ୍ଚ ମରାମତିରେ ଲାଗି ପଡ଼ିଲେ ।

ଅଷ୍ଟମ ଦଶକରେ ବିଦେଶ ଭ୍ରମଣ ସମୟରେ ଛାତ୍ରଛାତ୍ରୀମାନଙ୍କୁ ପଖାଉଜ ବାଦନରେ ସହାୟତା ବ୍ୟତୀତ କେଳୁଚରଣ ନୃତ୍ୟ କାର୍ଯ୍ୟକ୍ରମରେ ମଧ୍ୟ ଭାଗ ନେଲେ । ନୃତ୍ୟ ସମାଲୋଚକମାନେ ଏଥିରେ ଆଶ୍ଚର୍ଯ୍ୟାନ୍ୱିତ ହେଲେ । ତିରିଶି ବର୍ଷ ହୋଇଗଲେ ଯେଭଳି ଅଙ୍ଗଭଙ୍ଗୀ ପ୍ରକାଶ କରିବା କଠିନ ହୁଏ, ଷାଠିଏ ବର୍ଷ ଅତିକ୍ରମ କରିସାରିଥିବା ଜଣେ ପୁରୁଷ ଏପରି ଲାଳିତ୍ୟ ସହ ଅଙ୍ଗଭଙ୍ଗୀ ପ୍ରଦର୍ଶନ କରିବା ସେମାନଙ୍କୁ ଚକିତ କରିଦେଇଥିଲା ।

ଡିସେମ୍ବର ୧୯୮୫ରେ 'ମ୍ୟାରିବ୍‌ସ୍କୋ' ପତ୍ରିକାରେ ବିଗ୍‌ମୋର୍ ଲେଖିଥିଲେ, 'ମହାପାତ୍ରଙ୍କ କାର୍ଯ୍ୟକ୍ରମ ବାସ୍ତବିକ୍ ଆଶ୍ଚର୍ଯ୍ୟଜନକ । ତାଙ୍କୁ ଦେଖି ଲିଜେନ୍‌ସ୍କି (ଚମତ୍କାର



ବାରାଣସୀରେ କେଳୁଚରଣ ଓ କୁକୁମ୍ ଦାସ

ଶରୀର ଓ ଅଙ୍ଗଚାଳନାରେ ଓସ୍ତାଦ୍) ଓ ଚାପ୍‌ଲିନ୍ ମନେପଡ଼ିଲେ । ମୁଁ ଯେତେ ଶ୍ରେଷ୍ଠ ଅଭିନେତା ଦେଖିଛି, ସେମାନଙ୍କ ମଧ୍ୟରେ ଅଙ୍ଗଚାଳନାରେ ମହାପାତ୍ର ଅନ୍ୟତମ ।'

ସେପ୍ଟେମ୍ବର ୧୯୯୬ରେ ଆମେରିକା ଭ୍ରମଣ ସମୟରେ ତାଙ୍କର ସତୁରିତମ ଜନ୍ମଦିବସ ପାଳନ ଅବସରରେ ଜେନିଫର୍ ଡନିଙ୍ଗ୍ 'ନ୍ୟୁୟର୍କ ଟାଇମ୍‌ସ୍'ରେ ତାଙ୍କୁ କିମ୍ବଦନ୍ତୀ ପୁରୁଷ ଲିଜେନ୍‌ସ୍କିଙ୍କ ସହିତ ତୁଳନା କରି ଲେଖିଥିଲେ, 'ତାଙ୍କର ଅଭିନୟ ଥିଲା ଅନାବିଳ ନୃତ୍ୟ । ସେ ଯେପରି ହସ୍ତରେ ଅମୃତ ଧାରଣ କରିଥିଲେ । ତାଙ୍କର ଉପସ୍ଥିତି ଲିଜେନ୍‌ସ୍କିଙ୍କ ଅଙ୍ଗଭଙ୍ଗୀ ସ୍ମରଣ କରାଇ ଦେଉଥିଲା ।'

୧୯୮୨ରେ ଲଣ୍ଡନ୍‌ରେ ଓ ୧୯୮୬ରେ ପ୍ୟାରିସ୍‌ରେ ଅନୁଷ୍ଠିତ ଭାରତ ଉତ୍ସବରେ କେଳୁଚରଣ ତାଙ୍କର ଦୁଇଜଣ ସିନିୟର୍ ଛାତ୍ରୀ, ସଂଯୁକ୍ତା ଓ କୁଙ୍କୁମଙ୍କ ସହିତ ଯୁଗଳ ନୃତ୍ୟ ପରିବେଷଣ କରିଥିଲେ । ଏହା ଥିଲା 'ଯାହି ମାଧବ ଯାହି କେଶବ' ଏବଂ 'ପ୍ରିୟେ ଚାରୁଶୀଳେ' ଅଷ୍ଟପଦୀ । ଅକ୍ଟୋବର ୧୯୮୧ରେ କେଳୁଚରଣ କୁଙ୍କୁମ ଦାସଙ୍କ ସହିତ ବାରାଣସୀରେ ଏହି ନୃତ୍ୟ ପରିବେଷଣ କରିଥିଲେ । ଲଣ୍ଡନ୍ ଓ ପ୍ୟାରିସ୍‌ରେ ଏଥିରେ କେତେକ ପରିବର୍ତ୍ତନ କରିଥିଲେ ।

ନିଜର ଚନ୍ଦା ମୁଣ୍ଡ ହେତୁ ପ୍ରଥମେ ପ୍ରଥମେ ନୃତ୍ୟ ପରିବେଷଣ ସମୟରେ ଟିକେ ଅପ୍ରସ୍ତୁତ ମନେ କରୁଥିଲେ ଓ କଳା ୱିଗ୍ (ପରଚୂଳ) ଲଗାଉଥିଲେ । ଏହା ଫଳରେ ସେ ଅପେକ୍ଷାକୃତ ତରୁଣ ମନେ ହେଉଥିଲେ । କିନ୍ତୁ ତାଙ୍କର ସିନିୟର ଛାତ୍ରଛାତ୍ରୀମାନେ ଏହା ପସନ୍ଦ ନ କରିବାରୁ କେଳୁଚରଣ ଆଉ ପରଚୂଳ ବ୍ୟବହାର କଲେ ନାହିଁ ।

ସେହି କାର୍ଯ୍ୟକ୍ରମରେ କେଳୁଚରଣ ତାଙ୍କର ଦୁଇଜଣ ଛାତ୍ରୀ, ଅଳକା ଓ ପ୍ରଣତିଙ୍କ ସହିତ 'କୁରୁ ଯଦୁନନ୍ଦନ' ପରିବେଷଣ କରିଥିଲେ । ଏହା ବିଭିନ୍ନ ମଞ୍ଚରେ ପରବର୍ତ୍ତୀ ସମୟରେ ପ୍ରଦର୍ଶିତ ହୋଇଥିଲା । ଉଚ୍ଚ ମଞ୍ଚରେ ନିଶ୍ଚଳ (ପ୍ରୋଜେନ୍) ଅଙ୍ଗଭଙ୍ଗୀ ତାଙ୍କର ଅଭିନୟକୁ ଚିତ୍ରପ୍ରତିମ ଦର୍ଶାଉଥିଲା ।

କ୍ରମେ କେଳୁଚରଣଙ୍କ ଛାତ୍ରଛାତ୍ରୀ ସଂଖ୍ୟା ବଢ଼ିଲା; ତାଙ୍କୁ ଅଧିକରୁ ଅଧିକ କାର୍ଯ୍ୟକ୍ରମ ପରିବେଷଣ କରିବାକୁ ପଡ଼ିଲା । ପୂର୍ବରୁ ପ୍ରସ୍ତୁତ କରିଥିବା ଏକକ (ସୋଲୋ) ନୃତ୍ୟକୁ ସେ ମିଳିତ ନୃତ୍ୟରେ ରୂପାନ୍ତରିତ କଲେ । 'ବଟୁ' ଓ 'ଦଶାବତାର' ମିଳିତ ନୃତ୍ୟ ଭାବରେ ବିଭିନ୍ନ ରୂପରେ ପ୍ରଦର୍ଶିତ ହେଲା । କିନ୍ତୁ ଏହାର ସଙ୍ଗୀତ ଓ ମୌଳିକତା ଅକ୍ଷୁଣ୍ଣ ରହୁଥିଲା । ପଲ୍ଲବୀ କିମ୍ବା ବିଶୁଦ୍ଧ ନୃତ୍ୟ ବିଭିନ୍ନ ଶିଳ୍ପୀଙ୍କ ଦ୍ୱାରା ପରିବେଷିତ ହେଉଥିଲେ ମଧ୍ୟ ଏକ ନିର୍ଦ୍ଦିଷ୍ଟ ପଦ୍ଧତି ଅନୁସରଣ କରାଯାଉଥିଲା । ଅଭିନୟରେ କିନ୍ତୁ ବିଭିନ୍ନ ଚରିତ୍ର ବିଭିନ୍ନ ନାଟକୀୟ ଭଙ୍ଗୀ ପ୍ରଦର୍ଶନ କରୁଥିଲେ ।

ଓଡ଼ିଶୀ ଗବେଷଣା କେନ୍ଦ୍ର ସହିତ କେଳୁଚରଣଙ୍କ ସମ୍ପର୍କ ୧୯୮୪ରୁ । ଭାରତୀୟ ଡାକ ସେବାର ଅଧିକାରୀ ତଥା କେଳୁଚରଣଙ୍କ ସିନିୟର ଛାତ୍ରୀ କୁଙ୍କୁମ ଦାସଙ୍କର ଏହି

କେନ୍ଦ୍ର ମାନସ ସନ୍ତାନ । ୧୯୮୪ରେ କୁଙ୍କୁମ ଓଡ଼ିଶା ସରକାରଙ୍କ ସଂସ୍କୃତି ବିଭାଗର ନିର୍ଦ୍ଦେଶିକା ଥିଲେ । ବିବାହ ପରେ କେତେ ବର୍ଷ ସେ ନୃତ୍ୟରୁ ଅବ୍ୟାହତି ନେଇଥିଲେ । କିନ୍ତୁ କେଳୁଚରଣଙ୍କ ସହିତ ସବୁ ସମୟରେ ସମ୍ପର୍କ ରକ୍ଷା କରୁଥିଲେ ।

୧୯୭୨ରେ କୁଙ୍କୁମଙ୍କ ବିବାହ ପୂର୍ବରୁ କେଳୁଚରଣ ତାଙ୍କ ପାଇଁ 'ଆହେ ନୀଳ ଶଇଳ'ର ନୃତ୍ୟରୂପ ପ୍ରସ୍ତୁତ କରିଥିଲେ । ମହାପ୍ରଭୁ ଜଗନ୍ନାଥଙ୍କ ପାଇଁ ମୁସଲିମ୍ କବି ସାଲବେଗଙ୍କ ରଚିତ ଏହି ଜଣାଣରେ ଭଗବାନ ବିଷ୍ଣୁଙ୍କ ଗଜ ଉଦ୍ଧାରଣ, କୌରବମାନଙ୍କ କବଳରୁ ଦ୍ରୌପଦୀଙ୍କ ସମ୍ମାନ ରକ୍ଷା ତଥା ହିରଣ୍ୟକଶିପୁ ଅତ୍ୟାଚାରରୁ ପ୍ରହ୍ଲାଦର ଉଦ୍ଧାର ବର୍ଣ୍ଣିତ । ୧୯୭୮ରେ କୁଙ୍କୁମ ପୁଣି ନୃତ୍ୟ କାର୍ଯ୍ୟକ୍ରମ ଆରମ୍ଭ କଲେ । ଅଷ୍ଟାଦଶ ଶତାବ୍ଦୀର କବି ବିଶ୍ୱନାଥ ଖୁଣ୍ଟିଆଙ୍କ 'ବିଚିତ୍ର ରାମାୟଣ'ର ଗୋଟିଏ ଗୀତକୁ ଆଧାର କରି କାର୍ଯ୍ୟକ୍ରମଟିଏ ପ୍ରସ୍ତୁତ କରିବା ପାଇଁ କୁଙ୍କୁମଙ୍କ ପିତା କେଳୁଚରଣଙ୍କୁ ଅନୁରୋଧ କଲେ । କେଳୁଚରଣ ଏହି ଗ୍ରନ୍ଥରୁ 'ହେମ ହରିଣୀ' ଓ 'ହେ ବନଗିରି, ହେ ଲତାଗିରି' (ରାବଣ ଅପହରଣ କରିନେଉଥିବା ସମୟରେ ସୀତାଙ୍କ ବିଳାପ)ର ସମନ୍ୱୟରେ ପଚିଶି ମିନିଟ୍‌ର ନୃତ୍ୟନାଟିକାଟିଏ ପ୍ରସ୍ତୁତ କଲେ ।

୧୯୭୯ରେ ପୁଣି କେଳୁଚରଣ ହଂସଧ୍ୱନି ରାଗରେ ଏକ ପଲ୍ଲବୀ ସଂରଚନା କଲେ । ଭଗବଦ୍‌ଗୀତାର କୃଷ୍ଣ-ଅର୍ଜ୍ଜୁନ ସଂଳାପର ସେ କୋରିଓଗ୍ରାଫି ମଧ କରିଥିଲେ । ସେହିବର୍ଷ ଏହା ମୁମ୍ବାଇରେ ପ୍ରଦର୍ଶିତ ହୋଇଥିଲା । ଏହାର ଚମତ୍କାର ସଙ୍ଗୀତ ନିର୍ଦ୍ଦେଶନା ଦେଇଥିଲେ ଭୁବନେଶ୍ୱର ମିଶ୍ର । ପରେ ୧୯୮୪ରେ ଭୁବନେଶ୍ୱରର ମୁକ୍ତେଶ୍ୱର ଉତ୍ସବରେ ଏହି ଭଗବଦ୍‌ଗୀତା କାର୍ଯ୍ୟକ୍ରମ କୁଙ୍କୁମ (କୃଷ୍ଣ ଭୂମିକାରେ), ସଂଯୁକ୍ତା (ଅର୍ଜ୍ଜୁନ ଭୂମିକାରେ) ଯୁଗଳ ନୃତ୍ୟ ରୂପେ ପରିବେଷିତ ହୋଇଥିଲା ।

ବେଶ୍ କେତେବର୍ଷ ନୃତ୍ୟ ପ୍ରଦର୍ଶନରୁ ଦୂରେଇ ରହିବା ଫଳରେ ନୃତ୍ୟଶିଳ୍ପୀ ଭାବରେ ପ୍ରତିଷ୍ଠା ଅର୍ଜ୍ଜନ କରିବା ପାଇଁ କୁଙ୍କୁମଙ୍କର ହୁଏତ କିଛି ଅସୁବିଧା ହୋଇଥିଲା । ଏହା ମଧ୍ୟରେ ବହୁ ତରୁଣତରୁଣୀ ଓଡ଼ିଶୀ ନୃତ୍ୟ କ୍ଷେତ୍ରରେ ପ୍ରବେଶ କରିସାରିଥିଲେ । କିନ୍ତୁ ଜଣେ ପ୍ରଶାସିକା ଭାବରେ ତଥା ସରକାରୀ ସଂସ୍ଥା ସହିତ ସମ୍ପର୍କ ଦୃଷ୍ଟିରୁ ଓଡ଼ିଶୀ ନୃତ୍ୟ ସମ୍ବନ୍ଧରେ ଗବେଷଣା ଏବଂ ତଥ୍ୟ ସଂଗ୍ରହ କରିବା ପାଇଁ ଭିତ୍ତିଭୂମି ପ୍ରସ୍ତୁତ କରିବା ତଥା ଅର୍ଥ ଯୋଗାଡ଼ କରିବା ତାଙ୍କ ପକ୍ଷରେ ସହଜ ହୋଇଥିଲା । ବହୁ ଆଲୋଚନା ସଭାର ଆୟୋଜନ କରିଥିଲେ ମଧ 'ଜୟନ୍ତିକା' ଅନୁଷ୍ଠାନ ଏ ଦିଗରେ ଆଗେଇ ପାରି ନଥିଲେ ।

ମୂଳରୁ କେଳୁଚରଣ ଏଭଳି କେନ୍ଦ୍ରଟିଏ ସ୍ଥାପନ କରିବାରେ ଯଥେଷ୍ଟ ଉତ୍ସାହୀ ଥିଲେ ଏବଂ ମାସିକ ଚାରି ହଜାର ଟଙ୍କା ଅନରାରିୟମ୍‌ରେ ଏଥିରେ ଯୋଗଦେବା ପାଇଁ ପ୍ରସ୍ତୁତ ହେଲେ । ଓଡ଼ିଶୀ ନୃତ୍ୟର ବିକାଶରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିବା ସଙ୍ଗୀତ ନିର୍ଦ୍ଦେଶକ ଭୁବନେଶ୍ୱର ମିଶ୍ର ଏବଂ ଗାୟକ ବାଳକୃଷ୍ଣ ଦାଶ ମଧ ଏହି କେନ୍ଦ୍ରରେ ଯୋଗଦାନ କଲେ ।



ଓଡ଼ିଶୀ ଗବେଷଣା କେନ୍ଦ୍ରରେ ଗୁରୁ ପଙ୍କଜଙ୍କ ସହିତ (୧୯୮୬)

ଏହି କେନ୍ଦ୍ରରେ ଦଶ ବର୍ଷ କାର୍ଯ୍ୟ କରିବା ମଧ୍ୟରେ କେଳୁଚରଣ ତାଙ୍କର ସମସ୍ତ ଶକ୍ତି ଓ ପ୍ରତିଭାର ସଦୁପଯୋଗ କରିଥିଲେ । କେନ୍ଦ୍ର ବାହାରେ ମଧ ତାଙ୍କର କାର୍ଯ୍ୟକ୍ରମ ଚାଲୁ ରଖିଥିଲେ । କେନ୍ଦ୍ରରେ ତାଲିମ୍ ନେଉଥିବା ଛାତ୍ରଛାତ୍ରୀମାନଙ୍କୁ ନେଇ ପ୍ରାୟ ଦୁଇବର୍ଷ ମଧ୍ୟରେ ସେ ଏକ ନୃତ୍ୟଦଳ ଗଠନ କଲେ । ଏହି ଦଳ ରାଜ୍ୟ ଭିତରେ ଓ ବାହାରେ ନିୟମିତ କାର୍ଯ୍ୟକ୍ରମ ପ୍ରଦର୍ଶନ କରୁଥିଲେ । ପୁରୁଣା କାର୍ଯ୍ୟକ୍ରମରେ କେତେକ ପରିବର୍ତ୍ତନ କରିବା ସହିତ କେତେକ ନୂତନ କାର୍ଯ୍ୟକ୍ରମ ସେ ଗ୍ରହଣ କଲେ । ଯେପରି, କଳାବିକାଶ କେନ୍ଦ୍ର ଦ୍ୱାରା ପୂର୍ବରୁ ଅଭିନୀତ ହେଉଥିବା 'କୃଷ୍ଣ ଗାଥା', 'ଏକଲବ୍ୟ' ନୃତ୍ୟ ନାଟିକାଟିର ସେ ପରିକଳ୍ପନା ଓ କୋରିଓଗ୍ରାଫି କରିଥିଲେ । ଏଥିରେ ସେ ଦ୍ରୋଣ ଏବଂ କୁକୁମ ଆଦିବାସୀ ରାଜପୁତ୍ର ଜାରା ଭୂମିକାରେ ଅଭିନୟ କରିଥିଲେ । ଷଷ୍ଠ ଦଶକରେ କଳାବିକାଶ କେନ୍ଦ୍ରରେ କେଳୁଚରଣଙ୍କ ନିକଟରେ ତାଲିମ୍ ପାଇଥିବା କେତେଜଣ ପୁରୁଷ ନୃତ୍ୟଶିଳ୍ପୀ ପୁଣି ଥରେ କେଳୁଚରଣଙ୍କଠାରୁ ନୃତ୍ୟଶୈଳୀରେ ତଥା କାର୍ଯ୍ୟକ୍ରମ ସଂଯୋଜନାରେ ଅଧିକ ତାଲିମ୍ ପାଇବା ପାଇଁ ଓଡ଼ିଶୀ ଗବେଷଣା କେନ୍ଦ୍ରରେ ଯୋଗଦାନ କଲେ । ବର୍ତ୍ତମାନ ସେମାନେ ନିଜେ ବିଭିନ୍ନ ସ୍ଥାନରେ ନୃତ୍ୟ ଶିକ୍ଷକର କାର୍ଯ୍ୟ କରୁଥିଲେ ।

ସରକାରଙ୍କ ଦ୍ୱାରା ପ୍ରାୟୋଜିତ କୋଣାର୍କ ନୃତ୍ୟ ଉତ୍ସବ ପାଇଁ କେଳୁଚରଣ କେନ୍ଦ୍ରରେ କାର୍ଯ୍ୟ କରୁଥିବା ସମୟରେ 'ଚନ୍ଦ୍ରଭାଗା' (୧୯୮୯), 'ଚନ୍ଦ୍ରିକା' (୧୯୯୦), 'ଦଶାନନ' (୧୯୯୧), 'କୋଣାର୍କ' (୧୯୯୩), 'ଯାଜ୍ଞସେନୀ' (୧୯୯୪) ପ୍ରଭୃତି ନୃତ୍ୟନାଟିକା ପ୍ରସ୍ତୁତ କରିଥିଲେ ।

ଓଡ଼ିଶୀ ନୃତ୍ୟର ଶୈଳୀ ଓ ପଦ୍ଧତି ସମ୍ପର୍କରେ ତଥ୍ୟ ସଂଗ୍ରହ କରି ଏହାର ଏକ ସଠିକ୍ ବ୍ୟାକରଣ ପ୍ରସ୍ତୁତ କରିବା କୁକୁମଙ୍କର ଲକ୍ଷ୍ୟ ଥିଲା । ସେଥିପାଇଁ ବିଭିନ୍ନ ତଥ୍ୟ ସଂଗ୍ରହ କରାଯାଇ ତାହାର ମୌଳିକତା ନିର୍ଦ୍ଧାରଣ ସହିତ ନାମକରଣ କରାଗଲା । ତଥ୍ୟ ସଂଗ୍ରହ ସହିତ ଓଡ଼ିଶୀ ନୃତ୍ୟର ସଂପୂର୍ଣ୍ଣ ନୋଟେସନ୍ (ସ୍ୱରଲିପି) ପ୍ରସ୍ତୁତ କରିବା ପାଇଁ ଉଦ୍ୟମ କରାଗଲା । ଏଭଳି କରିବାରେ କେଳୁଚରଣଙ୍କର ବିଶେଷ ଅବଦାନ ଥିଲା । ପଦ, ହସ୍ତ ଓ ଅଙ୍ଗଚାଳନା ସମ୍ପର୍କରେ ସେ ପୁଙ୍ଖାନୁପୁଙ୍ଖ ବିବରଣୀ ପ୍ରଦାନ କରିଥିଲେ ।

ସମୟ କ୍ରମେ ଓଡ଼ିଶୀ ଗବେଷଣା କେନ୍ଦ୍ରରେ ପଙ୍କଜ ଚରଣ ଦାସ ଏବଂ ମହାଦେବ ରାଉତଙ୍କ ଭଳି ଗୁରୁମାନେ ସାମୟିକ ଭାବରେ ଯୋଗଦାନ କଲେ । କିନ୍ତୁ କେଳୁଚରଣଙ୍କ ନୃତ୍ୟଶୈଳୀ ବିଶେଷ ଭାବରେ ଅନୁସୃତ ହେଲା । ଏହା ବିବାଦ ସୃଷ୍ଟି କଲା ଓ ଏହି କାରଣରୁ ଏଠାରେ ପ୍ରସ୍ତୁତ ହୋଇଥିବା ନୃତ୍ୟଶୈଳୀର ବ୍ୟାକରଣ ବ୍ୟାପକ ଭାବରେ ପ୍ରସାରିତ ହୋଇପାରିଲା ନାହିଁ ।

୧୯୮୭ରେ କେଳୁଚରଣ ତାଙ୍କ ପତ୍ନୀଙ୍କ ସହିତ କଟକ ଛାଡ଼ି ଭୁବନେଶ୍ୱରର ଏକ ସରକାରୀ ବାସଗୃହରେ ରହିବା ପାଇଁ ସ୍ଥିର କଲେ । ପାରିବାରିକ ଅସୁବିଧା ହେତୁ

ସେ ଏପରି ସିଦ୍ଧାନ୍ତ ନେଲେ । ତାଙ୍କ ବୋହୂ ଓ ପତ୍ନୀଙ୍କ ମଧ୍ୟରେ ମତାନ୍ତର ହେବାରୁ ପରିବାରରେ ଶାନ୍ତି ରକ୍ଷା ପାଇଁ ସେ ଏପରି ସିଦ୍ଧାନ୍ତ ନେଲେ । ତାଙ୍କର ପୁଅ ଓ ବୋହୂ କଟକ ବାସଗୃହରେ ରହିଲେ ।

କଟକ ବାସଗୃହ ଛାଡ଼ିବାର ଦୃଶ୍ୟ ବାସ୍ତବିକ ଦୁଃଖଦାୟକ ଥିଲା । ପ୍ରଭୁ ଜଗନ୍ନାଥ ଓ ଅନ୍ୟାନ୍ୟ ପ୍ରତିମାମାନ କ୍ଷୁଦ୍ର ମନ୍ଦିରରୁ ବାହାରକୁ ଆଣି ବାକ୍ସରେ ରଖାଗଲା ଏବଂ ଗୋଟିଏ ପଦ୍ମିନୀ କାର୍‌ରେ ସୁଟ୍‌କେଶ୍, ବ୍ୟାଗ୍, ରୋଷେଇ ସରଞ୍ଜାମ ସହିତ ଭୁବନେଶ୍ୱର ଅଣାଗଲା । ମନେ ହେଉଥିଲା, ପଦ୍ମିନୀ କାର୍‌ଟି କେଉଁ ଦୂର ଦେଶକୁ ଯାଉଥିବା ଯାଯାବରମାନଙ୍କ କାରାଭାନ୍ । କେବଳ ସେହି ବର୍ଷ ଗ୍ରୀଷ୍ମ ଅବକାଶରେ ସ୍ଥାନୀୟ ଛାତ୍ରଛାତ୍ରୀମାନଙ୍କୁ ତାଲିମ୍ ଦେବା ବ୍ୟତୀତ କେଳୁଚରଣ ଆଉ ସେ ଗୃହକୁ ଫେରି ନଥିଲେ । କଟକ ବାସଗୃହରେ ତାଙ୍କ ପାଦର ଶବ୍ଦ କିମ୍ବା କ୍ଷୁଦ୍ର ମନ୍ଦିରରେ ଠାକୁରଙ୍କ ଆଳତି ସମୟରେ ଛାତ୍ରଛାତ୍ରୀମାନଙ୍କ ଜଣାଣ ଆଉ ଶୁଭି ନଥିଲା । କେଳୁଚରଣ ଓ ତାଙ୍କ ପତ୍ନୀ ବାସଗୃହ ଛାଡ଼ିବା ସମୟରେ କେବଳ ତାଙ୍କ ବୋହୂଙ୍କ ବ୍ୟତୀତ ଅନ୍ୟ କେହି ଲୋତକ ସମ୍ବରଣ କରିପାରି ନଥିଲେ । କେଳୁଚରଣ କିନ୍ତୁ ଥିଲେ ସଂପୂର୍ଣ୍ଣ ଅବିଚଳିତ ।

'ଯେଉଁଠାରେ ଜଗନ୍ନାଥ, ସେହିଠାରେ ମୋର ଘର,' ଏହା ଥିଲା ତାଙ୍କର ଉକ୍ତି । ସେ ଠିକ୍ ଜାଣିଥିଲେ, ସେ ଯେଉଁଠାକୁ ଗଲେ ମଧ୍ୟ ତାଙ୍କ ଛାତ୍ରଛାତ୍ରୀମାନେ ତାଙ୍କୁ ଅନୁସରଣ କରିବେ । ମାତ୍ର ଅଳ୍ପ କେତେମାସ ମଧ୍ୟରେ ଶୂନ୍ୟ ସରକାରୀ ବାସଗୃହଟି ନୃତ୍ୟଗୀତରେ ଚଞ୍ଚଳ ହୋଇଉଠିଲା । ଗୃହ ସମ୍ମୁଖରେ କ୍ଷୁଦ୍ର ଉଦ୍ୟାନ, ଗୋଟିଏ ରୁମ୍ କୋଣରେ କ୍ଷୁଦ୍ର ମନ୍ଦିରଟିଏ – ନୃତ୍ୟ ତାଲିମ୍ ପାଇଁ ସ୍ଥାନର ଅଭାବ ହେଲାନାହିଁ ।

ପାରିବାରିକ ଅଶାନ୍ତି ଓ କଠୋର ପରିଶ୍ରମ ଫଳରେ ତାଙ୍କ ସ୍ୱାସ୍ଥ୍ୟରେ ଅବନତି ଘଟିଲା । ୧୯୮୯ରେ ମୃଦୁ ହୃଦଘାତ କାରଣରୁ ତାଙ୍କୁ ଭୁବନେଶ୍ୱର କ୍ୟାପିଟାଲ୍ ହସ୍‌ପିଟାଲ୍‌ର ଇଣ୍ଟେନ୍‌ସିଭ୍ କେୟାର୍ ୟୁନିଟ୍‌ରେ ଭର୍ତ୍ତି କରାଗଲା । ସେ ଅସୁସ୍ଥ ଥିବା ସମୟରେ ଓଡ଼ିଶୀ ଗବେଷଣା କେନ୍ଦ୍ରର ଛାତ୍ରଛାତ୍ରୀମାନେ ପାଳି କରି ତାଙ୍କର ଯତ୍ନ ନେଉଥିଲେ । ତା'ପରବର୍ଷ ଏପ୍ରିଲ୍ ମାସରେ ସେ ହୃଦ୍ ପରୀକ୍ଷା ପାଇଁ କୋଲ୍‌କାତାର ବିର୍ଲା ହାର୍ଟ୍ ସେଣ୍ଟର୍‌କୁ ଗଲେ । ସେଠାରେ ହୃଦ୍‌ରୋଗ ବିଶେଷଜ୍ଞ ଡକ୍ଟର ଦେବୀ ଶେଟ୍ଟୀ ସଙ୍ଗେ ସଙ୍ଗେ ତାଙ୍କର ଟ୍ରିପଲ୍ ବାଇପାସ୍ ସର୍ଜରୀ କଲେ । ଏ ସମ୍ବାଦ ପ୍ରଚାରିତ ହେବା ପରେ ବିଭିନ୍ନ ମହଲରୁ ତାଙ୍କ ସମ୍ପର୍କରେ ଜାଣିବା ପାଇଁ ଉତ୍ସୁକତା ପ୍ରକାଶ ପାଇଲା । ତାଙ୍କ ଅପରେସନ୍‌ର ସମସ୍ତ ଖର୍ଚ୍ଚ ବହନ କରିବା ପାଇଁ ସେ ସମୟର ଓଡ଼ିଶାର ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ ତାଙ୍କ ନିକଟକୁ ଏକ ଲକ୍ଷ ଚାଳିଶି ହଜାର ଟଙ୍କାର ଗୋଟିଏ ଚେକ୍ ପଠାଇଦେଲେ ।

ଅପରେସନ୍ ପରେ ପ୍ରାୟ ଚାରିମାସ କେଳୁଚରଣ ବେଶ୍ ଶୃଙ୍ଖଳିତ ଜୀବନଯାପନ

କଲେ । ଆଉ ଚା' ଖାଇଲେ ନାହିଁ, ପାନ ମଧ୍ୟ କମ୍ ଖାଇଲେ । ଠିକ୍ ସମୟରେ ଭୋଜନ ଗ୍ରହଣ କଲେ । ମଧ୍ୟରାତ୍ରି ପରେ ନିୟମିତ ବିଶ୍ରାମ ଗ୍ରହଣ କଲେ ।

ଗୋଟିଏ ଗ୍ରୀଷ୍ମ ଅବକାଶରେ ମୁଁ ତାଙ୍କ ସହିତ 'ନବରସ' କାର୍ଯ୍ୟକ୍ରମ ପ୍ରସ୍ତୁତ କରିଥିଲି । ଏହା ଶିବଙ୍କ କାହାଣୀ ଉପରେ ଆଧାରିତ ଥିଲା । କେଳୁଚରଣ ଏଯାଏଁ 'ନବରସ' ବିଷୟବସ୍ତୁ ଉପରେ କାହାଣୀଟିଏ ପାଉ ନଥିଲେ । ଭାରତୀୟ ସୌନ୍ଦର୍ଯ୍ୟ ତତ୍ତ୍ୱ ଅନୁସାରେ 'ନବରସ'ରେ ସବୁ ମୌଳିକ ଭାବ ପ୍ରକାଶିତ ହୋଇପାରେ । କୁମାର ସାହାଣୀ ସେହି ବର୍ଷ କେଳୁଚରଣଙ୍କ ଉପରେ ଯେଉଁ ଚଳଚ୍ଚିତ୍ରଟି ନିର୍ମାଣ କଲେ, କେଳୁଚରଣ ସେଥିରେ ଏହି 'ନବରସ' ପରିବେଷଣ କରିଥିଲେ । ଏ ଚଳଚ୍ଚିତ୍ରରେ ନୃତ୍ୟରେ ତାଙ୍କର ସହାୟତା କରିଥିଲେ ପଣ୍ଡିତ ଚୌରସିଆ ।

ପ୍ରଥମ ହୃଦ୍‌ଘାତର ମାସକ ପୂର୍ବରୁ ୧୯୮୯ ଜୁଲାଇ ଶେଷରେ କେଳୁଚରଣଙ୍କ ଛାତ୍ରୀ ପ୍ରତିମା ବେଦୀ ବାଙ୍ଗାଲୋର୍‌ରେ ତାଙ୍କ ପାଇଁ ଗୋଟିଏ ସମ୍ବର୍ଦ୍ଧନା ସଭାର ଆୟୋଜନ କରିଥିଲେ । ଏହିଠାରେ ପ୍ରତିମା ସେ ପରିକଳ୍ପନା କରିଥିବା 'ନୃତ୍ୟଗ୍ରାମ' ସମ୍ପର୍କରେ ଘୋଷଣା କଲେ । ସେ ଯୋଜନା କରିଥିଲେ, ଏହି ଗ୍ରାମରେ ଅଳ୍ପ କେତେଜଣ ଛାତ୍ରଛାତ୍ରୀଙ୍କୁ ମାଗଣାରେ ସାତ ପ୍ରକାର ଶାସ୍ତ୍ରୀୟ ନୃତ୍ୟ ସମ୍ପର୍କରେ ତାଲିମ୍ ଦିଆଯିବ । ଏପ୍ରିଲ୍ ୧୯୯୦ରେ ପ୍ରଥମ ଗୁରୁକୁଳ 'ଓଡ଼ିଶୀ' ଉଦ୍‌ଘାଟିତ ହେଲା । ସ୍ୱାସ୍ଥ୍ୟଗତ କାରଣରୁ କେଳୁଚରଣ ଏଥିରେ ଯୋଗଦାନ କରିପାରି ନଥିଲେ । ପ୍ରଥମେ ସେ ଜଣେ ଛାତ୍ରଙ୍କୁ ଓ ପରେ ତାଙ୍କର ପୁତ୍ର ରତିକାନ୍ତଙ୍କୁ ଶିକ୍ଷକ ଭାବରେ ସେଠାକୁ ପଠାଇଲେ । ୧୯୯୩ ଯାଏଁ ସେ ମଝିରେ ମଝିରେ ସେଠାରେ କର୍ମଶାଳାରେ ଯୋଗ ଦେଉଥିଲେ । ପରେ ପ୍ରତିମା ଓ ରତିକାନ୍ତଙ୍କ ମଧ୍ୟରେ କୌଣସି କାରଣରୁ ମତଦ୍ୱୈଧ ହେବାରୁ 'ନୃତ୍ୟଗ୍ରାମ' ସହିତ କେଳୁଚରଣଙ୍କର ସମ୍ପର୍କ ଛିନ୍ନ ହେଲା ।

ପୁତ୍ର ପାଇଁ କୌଣସି ଅନୁଷ୍ଠାନ ସହିତ ସମ୍ପର୍କ ଛିନ୍ନ କରିବାର ଏହା ପ୍ରଥମ ଘଟଣା ନଥିଲା । କୋଲ୍‌କାତାର 'ପଦାତିକ' ଅନୁଷ୍ଠାନରେ ଅନୁରୂପ ଘଟଣା ଘଟିଥିଲା । 'ପଦାତିକ' ତାଙ୍କ ପୁତ୍ରଙ୍କୁ ତାଙ୍କର ବିକଳ୍ପ ଭାବରେ ଗ୍ରହଣ କରି ନଥିଲେ । କେଳୁଚରଣଙ୍କ ବିରୁଦ୍ଧରେ ବାରମ୍ବାର ଅଭିଯୋଗ ହେଉଥିଲା, ସେ ଅନ୍ୟ ଛାତ୍ରମାନଙ୍କ ତୁଳନାରେ ତାଙ୍କ ପୁତ୍ର ପ୍ରତି ଅଧିକ ଦୃଷ୍ଟି ଦେଉଥିଲେ ।

କେଳୁଚରଣଙ୍କ ବିରୁଦ୍ଧରେ ଏପରି ଅଭିଯୋଗ ଯଥାର୍ଥ ନଥିଲା । କିନ୍ତୁ ପୁତ୍ରର ନୃତ୍ୟଶିକ୍ଷା ପ୍ରତି ସେ ଯେ ବିଶେଷ ଦୃଷ୍ଟି ଦେଉଥିଲେ, ଏଥିରେ ସନ୍ଦେହ ନାହିଁ । ଲକ୍ଷ୍ମୀପ୍ରିୟା ମଧ୍ୟ ନିଜ ପୁତ୍ର ବିଷୟରେ ଖୁବ୍ ସତର୍କ ଥିଲେ । ରତିକାନ୍ତ ଠିକ୍ ଜାଣିଥିଲେ, କେଳୁଚରଣଙ୍କ ଭଳି ମହାନ୍ ଗୁରୁଙ୍କ ପରେ ତାଙ୍କ ଉପରେ ଗୁରୁତର ଦାୟିତ୍ୱ ପଡ଼ିବ ଏବଂ ପିତାଙ୍କ ସୁଯୋଗ୍ୟ ଉତ୍ତରାଧିକାରୀ ହେବା ପାଇଁ ତାଙ୍କୁ ବେଶ୍ କିଛି ବର୍ଷ ସାଧନା କରିବାକୁ ପଡ଼ିବ । ମା'ଙ୍କର

ପ୍ରଚଣ୍ଡ ସ୍ନେହ, ତାଙ୍କଠାରେ ପିତାଙ୍କର ଆସ୍ଥା – ଏହା ମଧ୍ୟରେ ନିଜର ମାର୍ଗ ନିର୍ଣ୍ଣୟ କରିବା ପାଇଁ ତାଙ୍କୁ ବେଶ୍ ସମୟ ଲାଗିଲା ।

ପ୍ରାୟ ତେର ବର୍ଷ ବୟସରେ ସପ୍ତମ ଦଶକର ଶେଷ ଭାଗରେ ରତିକାନ୍ତ ନୃତ୍ୟ ତାଲିମ୍ ନେବା ଆରମ୍ଭ କଲେ । ମୋର ମନେଅଛି, ବହୁ ସମୟରେ ସେ କ୍ଲାସ୍ ଛାଡ଼ି ବାହାରକୁ ଚାଲିଯାଉଥିଲେ; ତାଙ୍କର ବାପା ମାଆ ତାଙ୍କୁ ପୁଣି କ୍ଲାସ୍‌କୁ ନେଇଆସୁଥିଲେ । ତାଙ୍କର କିନ୍ତୁ ନୃତ୍ୟ ପ୍ରତିଭା ସହଜାତ ଥିଲା । ସେ ଅନାୟାସରେ ନୃତ୍ୟକଳା ଶିଖିଯାଉଥିଲେ । ଏହା ଫଳରେ ହୁଏତ ତାଙ୍କର ଆବଶ୍ୟକତାଠାରୁ ଅଧିକ ଆତ୍ମବିଶ୍ୱାସ ଥିଲା । ପ୍ରାୟ ଦଶ ବର୍ଷ ହେବା ଯାଏଁ ସେ ବାପାଙ୍କ ସଂସ୍ପର୍ଶରେ ପ୍ରାୟ ଆସି ନଥିଲେ । କାରଣ, କେଳୁଚରଣ ନୃତ୍ୟ କାର୍ଯ୍ୟକ୍ରମ ଓ କର୍ମଶାଳା ପାଇଁ ଦୀର୍ଘ ସମୟ ଦିଲ୍ଲୀ ବା ମୁମ୍ବାଇରେ ରହୁଥିଲେ । ଏହି ସମୟରେ ଶ୍ରୀନିବାସ ମହାନ୍ତି ତାଙ୍କର ଯତ୍ନ ନେଉଥିଲେ । ସେ ଥିଲେ ଜଣେ ବୈଜ୍ଞାନିକ ଓ ନାଟ୍ୟକାର । ଅଲ୍ ଇଣ୍ଡିଆ ରେଡ଼ିଓ କାର୍ଯ୍ୟକ୍ରମରେ ଭାଗ ନେଉଥିବା ସମୟରେ ଲକ୍ଷ୍ମୀପ୍ରିୟା ତାଙ୍କୁ ଜାଣିଥିଲେ ଏବଂ ଷଷ୍ଠ ଦଶକର ପ୍ରଥମ ଭାଗରେ ସେ ଲକ୍ଷ୍ମୀପ୍ରିୟାଙ୍କ ଘରେ ରହୁଥିଲେ । ଶ୍ରୀନିବାସ ବେଶ୍ ଶିକ୍ଷିତ ବ୍ୟକ୍ତି ଥିଲେ । ରତିକାନ୍ତ ତାଙ୍କରିଠାରୁ ଇଂରାଜୀ ଓ ହିନ୍ଦୀ ଶିଖିଥିଲେ ।

ପିଲାଦିନର ଦୁଇଟି ଘଟଣା ରତିକାନ୍ତଙ୍କୁ ବିଶେଷ ପ୍ରଭାବିତ କରିଥିଲା । ତାହା ସେ ମନେ ରଖିଛନ୍ତି । ତାଙ୍କୁ ପ୍ରାୟ ଆଠ ବର୍ଷ ହୋଇଥିବା ସମୟରେ, ଥରେ ତାଙ୍କ ବାପା ତାଙ୍କୁ ଗୋଟିଏ ଜୁଇ ଲଟାରେ ବାନ୍ଧି ଦେଇଥିଲେ । ଏହି ଅବସ୍ଥାରେ ସେ ଖରାରେ ଚାରି ଘଣ୍ଟା ରହିଲେ । ବାପାଙ୍କ ପକେଟ୍‌ରୁ ପାଞ୍ଚ ଟଙ୍କା ଚୋରି କରିଥିବାରୁ ତାଙ୍କୁ ଏହି ଦଣ୍ଡ ମିଳିଥିଲା । ରତିକାନ୍ତ ଆଇସ୍‌କ୍ରିମ୍ କିଣି ସବୁ ସାଙ୍ଗମାନଙ୍କୁ ଖୁଆଇବା ଦେଖି ଆଇସ୍‌କ୍ରିମ୍‌ବାଲା ମନରେ ସନ୍ଦେହ ହୋଇଥିଲା ଏବଂ ସେ ତାହା କେଳୁଚରଣଙ୍କୁ କହିଦେଇଥିଲା ।

ଆଉ କେତେ ବର୍ଷ ପରେ ଥରେ କେଳୁଚରଣ ତାଙ୍କ ସହିତ ପଖଉଜରେ କେତୋଟି ବୋଲ୍ ବଜାଇବା ପାଇଁ କହିଲେ । ରତିକାନ୍ତ 'ବିଳମ୍ବିତ' ଓ 'ମଧ୍ୟମ' ଠିକ୍ ବଜାଇ ପାରିଲେ, କିନ୍ତୁ 'ଦ୍ରୁତ' ବଜାଇ ପାରିଲେ ନାହିଁ । ବାପା ତାଙ୍କ ଛାତ୍ରମାନଙ୍କୁ ପଖଉଜ ବଜାଇବା ଶିଖାଇବା ଦେଖି ରତିକାନ୍ତ ନିଜେ ଏହା ଶିଖିଥିଲେ । ପ୍ରଥମ ଥର ପାଇଁ ସେ ବାପାଙ୍କ ନିର୍ଦ୍ଦେଶରେ ପଖଉଜ ବଜାଉଥିଲେ । 'ଦ୍ରୁତ' ବଜାଇବାରେ ବିଫଳ ହେବାରୁ କେଳୁଚରଣ ପୁଅଙ୍କ ଉପରେ ଖୁବ୍ ରାଗିଗଲେ ଏବଂ ଗୋଟିଏ ମାସ ନିୟମିତ ସକାଳେ ଓ ସନ୍ଧ୍ୟାରେ ପଖଉଜ ବଜାଇବା ଶିଖିବାକୁ ଆଦେଶ ଦେଲେ । ପୁଅଙ୍କୁ କହିଲେ, 'ଖାଲି ମୋ ପୁଅ ବୋଲି ତୁ ସୁନାମ ଅର୍ଜନ କରିପାରିବୁ ନାହିଁ । ତୁ ଯାହା ହେବୁ ତାହା ତୋ ଅଧ୍ୟବସାୟ ବଳରେ ।' ମାସକ ପରେ ରତିକାନ୍ତ ପଖଉଜ ବଜାଇବାରେ ସଫଳ ହେଲେ ।

ସମୟକ୍ରମେ ରତିକାନ୍ତ ଯେ ଜଣେ ଓସ୍ତାଦ୍ ପଖଉଜ ବାଦକ ହେଲେ ତା ନୁହେଁ, ସେ ମଧ୍ୟ ରାବଣ ଓ ହନୁମାନ ଭଳି ଚରିତ୍ର ଯଥାର୍ଥ ଭାବରେ ଅଭିନୟରେ ଦର୍ଶାଇ ପାରିଲେ । ରାମାୟଣ କଥାବସ୍ତୁ ଉପରେ ଆଧାରିତ ନୃତ୍ୟନାଟିକାରେ ସେ ହନୁମାନ ଚରିତ୍ର ଭୂମିକାରେ ବିଶେଷ ସଫଳ ହେଲେ । ବାରାଣସୀର 'ସଙ୍କଟମୋଚନ' ଉତ୍ସବରେ ୧୯୮୫ଠାରୁ ତାଙ୍କୁ ହନୁମାନ ଭୂମିକାରେ ଅଭିନୟ କରିବାର ସୌଭାଗ୍ୟ ମିଳିଲା ।

ପୁତ୍ରର ନୃତ୍ୟ କାର୍ଯ୍ୟକ୍ରମ ସହିତ ତା'ର ବିବାହ ସମ୍ପର୍କରେ ମଧ୍ୟ କେଳୁଚରଣ ଚିନ୍ତିତ ଥିଲେ । ନୃତ୍ୟଶିଳ୍ପୀମାନଙ୍କ ମଧ୍ୟରେ ବୋହୂଟିଏ ସ୍ଥିର କରିବା ସମ୍ଭବ ହେଲାନାହିଁ । ଶେଷରେ କେଳୁଚରଣ ଓ ତାଙ୍କ ପତ୍ନୀ ରତିକାନ୍ତଙ୍କ ମତ ହିଁ ଗ୍ରହଣ କଲେ । ରତିକାନ୍ତଙ୍କ ଠାରୁ ବୟସରେ ଅଳ୍ପ ବଡ଼ ମଞ୍ଚ ଓ ଟେଲିଭିଜନରେ ଶିଳ୍ପୀ ଓଡ଼ିଆ ଖ୍ରୀଷ୍ଟିଆନ୍ ଝିଅଟିଏ ଏଥିପାଇଁ ମନୋନୀତ କରାଗଲା । ଏହି ବିବାହକୁ ଗ୍ରହଣ କରିବା ପାଇଁ କେଳୁଚରଣ ଓ ତାଙ୍କ ପତ୍ନୀ ପ୍ରାୟ ଦୁଇବର୍ଷ ସମୟ ନେଲେ । ଶେଷରେ ଅବଶ୍ୟ ସମସ୍ୟାର ସମାଧାନ ହେଲା । ରୀତା ହିନ୍ଦୁଧର୍ମ ଗ୍ରହଣ କରିବାକୁ ରାଜି ହେଲେ । ପ୍ରଥମେ ଆର୍ଯ୍ୟ ସମାଜ ମନ୍ଦିରରେ ଓ ପରେ ଓଡ଼ିଆ ରୀତିରେ କେଳୁଚରଣଙ୍କ ବାସଗୃହରେ ବିବାହ ଅନୁଷ୍ଠିତ ହେଲା । କେଳୁଚରଣ ବେଶ୍ ଉତ୍ସାହ ଓ ଆନନ୍ଦରେ ବିବାହର ସମସ୍ତ ବିଷୟ ବୁଝାବୁଝି କରିଥିଲେ ।

ଦ୍ୱିତୀୟ ଥର ପାଇଁ କେଳୁଚରଣ ପାରମ୍ପରିକ ବିବାହ ନିୟମ ଭଙ୍ଗ କରିଥିଲେ । ଲକ୍ଷ୍ମୀପ୍ରିୟା ଚିତ୍ରକର ଜାତିର ଝିଅ ନଥିଲେ; ତଥାପି ସେ ତାଙ୍କୁ ବିବାହ କରିଥିଲେ । ବର୍ତ୍ତମାନ ଗୋଟିଏ ଖ୍ରୀଷ୍ଟିଆନ୍ ଝିଅକୁ ସେ ବୋହୂକରି ଆଣିଲେ । ତାଙ୍କର ଅନେକ ବନ୍ଧୁବାନ୍ଧବ ଏପରି ବିବାହ ପସନ୍ଦ କଲେ ନାହିଁ । ତାଙ୍କର ବଡ଼ ଭାଇ ଏକାଦଶୀ ଓ ସାନ ଭାଇ ବଂଶୀଧର ଏହି ବିବାହ ଉତ୍ସବରେ ଯୋଗ ଦେଇ ନଥିଲେ ।

ଦୁର୍ଭାଗ୍ୟର ବିଷୟ, ଏହି ବିବାହ ପରେ କେଳୁଚରଣ ବେଶୀଦିନ ଶାନ୍ତିରେ ରହିପାରି ନଥିଲେ । ବିବାହର ମାତ୍ର ମାସକ ପରେ ରୀତା ଓ ଲକ୍ଷ୍ମୀପ୍ରିୟାଙ୍କ ମଧ୍ୟରେ ମତାନ୍ତର ହେବାରୁ କେଳୁଚରଣ ପୁଅବୋହୂଙ୍କୁ କଟକ ବାସଗୃହରେ ଛାଡ଼ି ଭୁବନେଶ୍ୱର ଚାଲିଆସିଲେ ।

ପରିବାରରେ ଉଭୟ ରତିକାନ୍ତ ଓ କେଳୁଚରଣଙ୍କ ପାଇଁ କିଛି ନା କିଛି ଅଶାନ୍ତି ଲାଗିରହିଲା । ରତିକାନ୍ତ କଟକରେ ସ୍ତ୍ରୀଙ୍କ ପାଖରେ ରହୁଥିଲେ ମଧ୍ୟ ବାପାଙ୍କ ସହିତ କାର୍ଯ୍ୟ କରିବା ପାଇଁ ବାରମ୍ବାର ତାଙ୍କୁ ଭୁବନେଶ୍ୱର ଆସିବାକୁ ପଡୁଥିଲା । କେଳୁଚରଣ ଓ ତାଙ୍କ ପତ୍ନୀ ମଧ୍ୟ ପୁଅ ପାଖରେ ରହିବାର ସୁବିଧା ହେଲାନାହିଁ ।

କେଳୁଚରଣଙ୍କର ପ୍ରଥମ ଝିଅ ଚାରୁଙ୍କର ବେଶ୍ କେତେବର୍ଷ ତଳେ ଭଦ୍ରକରେ ବିବାହ ହୋଇଥିଲା । ଗୋଟିଏ ପୁତ୍ର ସନ୍ତାନ ଜନ୍ମ ହେବା ପରେ ଚାରୁଙ୍କର ସ୍ୱାମୀ ଦ୍ୱିତୀୟ ବିବାହ କଲେ ଓ ତାଙ୍କ ପ୍ରତି ଅବହେଳା କଲେ । ମଝିରେ ମଝିରେ ଚାରୁ ଆଉ ଶ୍ୱଶୁର ଘରକୁ ଯିବେ ନାହିଁ ସ୍ଥିର କରି ବାପା ମା'ଙ୍କ ନିକଟକୁ ଚାଲିଆସୁଥିଲେ । କିନ୍ତୁ ତାଙ୍କ

ସ୍ୱାମୀ ପୁଣି ତାଙ୍କୁ ଭଦ୍ରକ ଫେରାଇ ନେଉଥିଲେ । ବିଭିନ୍ନ ସ୍ଥାନରୁ ବହୁ ସମ୍ମାନ ଓ ପ୍ରଶଂସା ଲାଭ କରୁଥିବା ସମୟରେ କେଳୁଚରଣଙ୍କ ପିଲାମାନେ ତାଙ୍କୁ ବେଶ୍ ଅସୁବିଧାରେ ପକାଉଥିବା ଭଳି ମନେ ହେଉଥିଲା ।

ବାପାଙ୍କ ହୃଦ୍‌ଘାତ ପରେ ରତିକାନ୍ତ ନିଜ ପରିବାର ତଥା ନିଜ ବାପାମା'ଙ୍କ ପ୍ରତି ନିଜ କର୍ତ୍ତବ୍ୟ ବିଷୟରେ ଅଧିକ ସଚେତନ ହେଲେ । ଗୀତାଙ୍କ ସହିତ ତାଙ୍କ ବିବାହରେ ବିଭିନ୍ନ ସମସ୍ୟା ଦେଖାଗଲା । ନବମ ଦଶକର ପ୍ରଥମ ଭାଗରେ ସେ ଆଉ ଜଣେ ତରୁଣୀ ନୃତ୍ୟଶିଳ୍ପୀଙ୍କ ସହିତ ଅନ୍ତରଙ୍ଗ ହୋଇପଡ଼ିଲେ । ଏହି ନୃତ୍ୟଶିଳ୍ପୀଙ୍କୁ ଜର୍ମାନ୍ ଭ୍ରମଣ ପାଇଁ କେଳୁଚରଣ ମନୋନୀତ କରିଥିଲେ । ରତିକାନ୍ତଙ୍କ ଏହି ନୂତନ ସମ୍ପର୍କ ତାଙ୍କ ପିତାମାତାଙ୍କ ସ୍ୱୀକୃତି ଲାଭ କଲା । ପ୍ରଥମ ସ୍ତ୍ରୀଙ୍କୁ ଛାଡ଼ପତ୍ର ଦେଇ ରତିକାନ୍ତ ସୁଜାତାଙ୍କୁ ବିବାହ କଲେ । ସୁଜାତା ନିଜେ ଜଣେ ନୃତ୍ୟଶିଳ୍ପୀ ହୋଇଥିବାରୁ ପରିବାରରେ ତାଙ୍କର ଯଥେଷ୍ଟ ଗୁରୁତ୍ୱ ରହିଲା ।

ଡିସେମ୍ବର ୧୯୯୪ରେ ଓଡ଼ିଶୀ ଗବେଷଣା କେନ୍ଦ୍ର ଛାଡ଼ିବା ପରେ ବିଭିନ୍ନ ଅନୁଷ୍ଠାନରେ କାର୍ଯ୍ୟ ନକରି ନିଜର ଅନୁଷ୍ଠାନଟିଏ ଗଢ଼ିବା ପାଇଁ ସେ ସ୍ଥିର କଲେ । 'ଯାଜ୍ଞସେନୀ' ନୃତ୍ୟନାଟିକା ମଞ୍ଚସ୍ଥ ହେବା ପରେ ସେ ଓଡ଼ିଶୀ ଗବେଷଣା କେନ୍ଦ୍ରରୁ ଇସ୍ତଫା ଦେଲେ । ୧୯୯୪ କୋଣାର୍କ ନୃତ୍ୟ ଉତ୍ସବ ପାଇଁ ସେ ଏହି ନୃତ୍ୟନାଟିକାର ସଂରଚନା କରିଥିଲେ ।

କେଳୁଚରଣ ତାଙ୍କର ଚିରାଚରିତ ଢଙ୍ଗରେ 'ଯାଜ୍ଞସେନୀ' ନୃତ୍ୟନାଟିକା ପ୍ରସ୍ତୁତି ପାଇଁ ସମସ୍ତ ନୃତ୍ୟଶିଳ୍ପୀ ଓ ସଙ୍ଗୀତଜ୍ଞଙ୍କୁ ଅର୍ଦ୍ଧରାତ୍ରି ଯାଏଁ ରିହର୍ସାଲ୍ କରାଉଥିଲେ । ଏପରି କରାଇବାରେ ନୂତନତ୍ୱ କିଛି ନଥିଲା; ସମସ୍ତେ ଏଥିରେ ଅଭ୍ୟସ୍ତ ଥିଲେ । କିନ୍ତୁ, ନାଟିକାଟି ମଞ୍ଚରେ ଅଭିନୀତ ହେବାର ଅଳ୍ପ ସମୟ ପୂର୍ବରୁ କେଳୁଚରଣ ଓ କୁଙ୍କୁମଙ୍କ ମଧ୍ୟରେ ନାଟିକାର ବିଷୟବସ୍ତୁ ସମ୍ପର୍କରେ ଖୁବ୍ ଯୁକ୍ତିତର୍କ ହେଲା । କେଳୁଚରଣ ଯାଜ୍ଞସେନୀ ବିଷୟବସ୍ତୁର ସଠିକ୍ ତର୍ଜମା କରି ନଥିଲେ ବୋଲି କୁଙ୍କୁମ ଅଭିଯୋଗ କଲେ । ଯାଜ୍ଞସେନୀ ଚରିତ୍ର ଥିଲା ପ୍ରତିଭା ରାୟଙ୍କ ଦ୍ରୌପଦୀ ଚରିତ୍ରର ନୂତନ ତର୍ଜମା । ନୃତ୍ୟନାଟିକାର ରିହର୍ସାଲ୍ ପୂର୍ବରୁ ଲେଖିକାଙ୍କ ଉପସ୍ଥିତିରେ ଏ ସମ୍ପର୍କୀୟ ବହୁ ଆଲୋଚନା ହୋଇଥିଲା । କେଳୁଚରଣ ଅନୁଭବ କଲେ, ନାଟିକାଟି ମଞ୍ଚସ୍ଥ ହେବା ପୂର୍ବରୁ କୁଙ୍କୁମଙ୍କ ଅଭିଯୋଗ ତାଙ୍କ ସୃଜନଶୀଳତା ପ୍ରତି ଏକ ଆକ୍ଷେପ ।

କେଳୁଚରଣ ବୋଧହୁଏ ଭାବିଲେ ଓଡ଼ିଶୀ ଗବେଷଣା କେନ୍ଦ୍ରରେ ତାଙ୍କର ଆଉ କୌଣସି ଆବଶ୍ୟକତା ନାହିଁ, କିମ୍ବା କେନ୍ଦ୍ରର ତାଙ୍କ ଉପରେ ଆଉ ଆସ୍ଥା ନାହିଁ । କେନ୍ଦ୍ର ଛାଡ଼ିଦେବା ପାଇଁ ସେ ସେହିଠାରେ ହିଁ ସିଦ୍ଧାନ୍ତ କଲେ । ନାଟିକାଟିର ପ୍ରଦର୍ଶନ ତରବରିଆ ରିହର୍ସାଲ୍ ପାଇଁ ବିଫଳ ହୋଇଥିଲା ବୋଲି କୁଙ୍କୁମ ମତ ଦେଲେ । ନାଟିକାରେ ପୁତ୍ର

ରତିକାନ୍ତଙ୍କୁ ଅଭିନୟରେ ଅଯଥା ଗୁରୁତ୍ୱ ଦିଆଯିବା ମଧ୍ୟ କୁକୁମ ପସନ୍ଦ କଲେ ନାହିଁ । ଏହାପରେ କେଳୁଚରଣ କେନ୍ଦ୍ର ଛାଡ଼ିବା ସ୍ଥିର ହୋଇଗଲା ।

କେନ୍ଦ୍ର ସହିତ ଦଶ ବର୍ଷ ସଂପୃକ୍ତ ରହିବା ମଧ୍ୟରେ କେଳୁଚରଣଙ୍କର ଏହାର ଉନ୍ନତିରେ ବିଶେଷ ଭୂମିକା ଥିଲା । ସେ ବହୁ ନୃତ୍ୟଶିଳ୍ପୀଙ୍କୁ ତାଲିମ୍ ଦେଇଥିଲେ; ମଞ୍ଚରେ ସେମାନଙ୍କ ସହିତ ଅବତୀର୍ଣ୍ଣ ହୋଇଥିଲେ; ନୂତନ ନୃତ୍ୟନାଟିକା ସଂରଚନା କରିଥିଲେ; ଭିଡ଼ିଓ ରେକର୍ଡିଂ ସାହାଯ୍ୟରେ ନୃତ୍ୟର ଭଙ୍ଗୀ ପ୍ରଦର୍ଶନ କରିଥିଲେ; ରେଖାଚିତ୍ରରେ ନୃତ୍ୟର ନୋଟେସନ୍ ପଦ୍ଧତି ପ୍ରକାଶ କରିଥିଲେ । ସଂଯୁକ୍ତାଙ୍କ ନୃତ୍ୟ ଜୀବନରେ ସେ ଏକ ନୂତନ ଯୁଗ ଆରମ୍ଭ କରିଥିଲେ । କାରଣ, ସଂଯୁକ୍ତା ଗବେଷିକା ଓ ନିର୍ଦ୍ଦେଶିକା ଭାବରେ ଓଡ଼ିଶୀ ନୃତ୍ୟ ପାଇଁ କାର୍ଯ୍ୟ କରିବା ଆରମ୍ଭ କଲେ ।

୧୯୯୩ରେ ନିଜର ଅନୁଷ୍ଠାନ 'ସୃଜନ' ପ୍ରତିଷ୍ଠା କରିବାକୁ ସେ ସ୍ଥିର କଲେ । ଏହି ସମୟରେ ମୁମ୍ବାଇଠାରେ ତାଙ୍କର କେତେଜଣ ଛାତ୍ରଛାତ୍ରୀ ଟ୍ରଷ୍ଟ ବା ନ୍ୟାସଟିଏ ଗଠନ କରିବା ପାଇଁ ଏକ ନୃତ୍ୟ କାର୍ଯ୍ୟକ୍ରମ ଜରିଆରେ କିଛି ଅର୍ଥ ସଂଗ୍ରହ କଲେ । କେଳୁଚରଣ ଏହା ମଧ୍ୟରେ ତାଙ୍କର ସରକାରୀ ବାସଗୃହ ଛାଡ଼ିଦେଇ ପୁରୁଣା ଭୁବନେଶ୍ୱରର ଭୀମଟାଙ୍ଗୀ ଅଞ୍ଚଳରେ ନିଜର ବାସଗୃହ ନିର୍ମାଣ କରୁଥା'ନ୍ତି । 'ସୃଜନ' ଅନୁଷ୍ଠାନଟି ଗଢିବା ସଙ୍ଗେ ସଙ୍ଗେ ତାଙ୍କ ବାସଗୃହର ଆକାର ମଧ୍ୟ ବଢୁଥାଏ । ପ୍ରଥମେ ଏଥିରେ ଥିଲା ଗୋଟିଏ ବେଡ୍ ରୁମ୍ । ପରେ ଦୁଇଟି କ୍ଲାସ୍ ରୁମ୍, ପାଞ୍ଚଟି ବେଡ୍ ରୁମ୍ ଓ ନଅଟି ବାଥ୍ ରୁମ୍ ସଂଯୋଗ କରାଗଲା । ବାପା ଗୃହର ଯୋଜନା ଓ ନିର୍ମାଣ ତଦାରଖ କରିବା ସମୟରେ (ସେ ତ କୌଣସି ସ୍ଥପତି ବା ଇଞ୍ଜିନିୟରଙ୍କ ମତ ନେଉ ନଥିଲେ) ପୁତ୍ର ରତିକାନ୍ତ ଅନୁଷ୍ଠାନର ପରିଚାଳନା ତତ୍ତ୍ୱାବଧାନ କରୁଥିଲେ ଏବଂ ବୋହୂ ନୃତ୍ୟଶିକ୍ଷାକୁ ଆସୁଥିବା ଛାତ୍ରଛାତ୍ରୀମାନଙ୍କୁ ତାଲିମ୍ ଦେଉଥିଲେ । ଛାତ୍ରଛାତ୍ରୀଙ୍କ ସଂଖ୍ୟା କ୍ରମଶଃ ବଢିବାକୁ ଲାଗିଲା ।

ଯଦିଓ ପରିବାରରେ ଲକ୍ଷ୍ମୀପ୍ରିୟା ଓ ତାଙ୍କ ବୋହୂଙ୍କ ମଧ୍ୟରେ ମତାନ୍ତର ଯୋଗୁଁ କିଛି ନା କିଛି ଅଶାନ୍ତି ଲାଗି ରହୁଥିଲା, ଅନୁଷ୍ଠାନ ପାଇଁ ସମସ୍ତେ ମୋଟାମୋଟି ବ୍ୟସ୍ତ ରହୁଥିଲେ । ରତିକାନ୍ତଙ୍କ ବଳିଷ୍ଠ ନିର୍ଦ୍ଦେଶନାରେ ବର୍ତ୍ତମାନ 'ସୃଜନ' ଏକ ଚଳଚଞ୍ଚଳ ନୃତ୍ୟ କେନ୍ଦ୍ରରେ ପରିଣତ ହେଲା । ପ୍ରବୀଣ ଓ ତରୁଣ ନୃତ୍ୟଶିଳ୍ପୀମାନେ ଏଠାରେ ତାଲିମ୍ ନେଲେ ଏବଂ ୧୯୯୪ ପର ଠାରୁ ବିଭିନ୍ନ ନୃତ୍ୟନାଟିକା ପରିବେଷଣ କରିବାରେ ଲାଗିଲେ । ସେଗୁଡ଼ିକ ମଧ୍ୟରେ ଥିଲା, 'ଉତ୍କଳ ମଉଡ଼ମଣି' (୧୯୯୪), 'ଚଣ୍ଡାଶୋକ' (୧୯୯୫), 'କୁରୁକ୍ଷେତ୍ର' (୧୯୯୬), 'ସୁଦାମା ଦାରିଦ୍ର୍ୟ ଭଞ୍ଜନ', 'ମଥାମଣି ପ୍ରଦାନ', 'ସୀତାହରଣ' ଓ 'ବାଲ୍ୟଲୀଳା' (୧୯୯୮) ।

ଭୀମଟାଙ୍ଗୀ ଗୃହରେ ଏକ ସମୟରେ କୋଡ଼ିଏ ଜଣ ଛାତ୍ରଛାତ୍ରୀ ରହିବାର ବ୍ୟବସ୍ଥା ଥିଲା । କ୍ୟାସ୍‌ବୁକ୍, ଆଟେଣ୍ଡାନ୍‌ସ୍ ଓ ଦରମା ରେଜିଷ୍ଟର୍ ପ୍ରଭୃତି ରଖିବା ପାଇଁ ଅଫିସ୍

ଗୃହଟିଏ ମଧ୍ୟ ଥିଲା । ନୂତନ ଛାତ୍ରଛାତ୍ରୀମାନେ ୟୁନିଫର୍ମ୍ ପିନ୍ଧୁଥିଲେ ଏବଂ ବର୍ଷ ଶେଷରେ ନିୟମିତ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ଦ୍ୱାରା ପରିଚାଳିତ ପରୀକ୍ଷା ଦେଉଥିଲେ ।

'ସୃଜନ' ଅନୁଷ୍ଠାନର ଦାୟିତ୍ୱ ମୋଟାମୋଟି ରତିକାନ୍ତଙ୍କ ଉପରେ ପଡ଼ିଲା । କେଳୁଚରଣ ତାଙ୍କର ଚିରାଚରିତ ପୁରୁଣା ଶୈଳୀରେ କାର୍ଯ୍ୟ କରୁଥିଲେ । ସିନିୟର ଛାତ୍ରଛାତ୍ରୀଙ୍କ ପାଇଁ ଡ୍ରଇଂ ରୁମ୍‌ରେ ବସି ଦିନ ବା ରାତିର ଯେ କୌଣସି ସମୟରେ ନୂତନ ନୃତ୍ୟନାଟିକା ସଂରଚନା କରୁଥିଲେ । ଏପରି କରିବାରେ କୌଣସି ଔପଚାରିକତା ନଥିଲା । କେବଳ ଜୁନ୍ – ଜୁଲାଇରେ ସେ ଅନୁଷ୍ଠାନର କର୍ମଶାଳାରେ ଯୋଗ ଦେଉଥିଲେ । କାରଣ, ଏହି ସମୟରେ ସମସ୍ତ ଛାତ୍ରଛାତ୍ରୀ ସାରାଦିନ ଉପସ୍ଥିତ ରହୁଥିଲେ । ଅନ୍ୟ ସମୟରେ କେଳୁଚରଣ ଅନୁଷ୍ଠାନର ଦାୟିତ୍ୱ ତରୁଣ ପିଢି ଉପରେ ଛାଡ଼ି ଦେଉଥିଲେ । କୌଣସି କାର୍ଯ୍ୟକ୍ରମରେ ବାହାରକୁ ଯାଇ ନଥିବା ସମୟରେ ସେ ଗୃହ ନିର୍ମାଣ କାର୍ଯ୍ୟ ତତ୍ତ୍ୱାବଧାନ କରୁଥିଲେ । ଭୁବନେଶ୍ୱରରେ ଗୃହ ନିର୍ମାଣ ସମ୍ପୂର୍ଣ୍ଣ ହେବା ପରେ ସେ ତାଙ୍କ ନିଜ ଗ୍ରାମରେ ମା'ଭୁଆସୁଣୀଙ୍କ ପାଇଁ ପ୍ରାଚୀନ ପରିଚିତ ସେହି ବୃକ୍ଷ ନିକଟରେ କ୍ଷୁଦ୍ର ମନ୍ଦିରଟିଏ ନିର୍ମାଣ କରିବାରେ ଲାଗିଲେ । ତାଙ୍କୁ ପାଞ୍ଚ ବର୍ଷ ବୟସ ହୋଇଥିବା ସମୟରେ ମା' ଭୁଆସୁଣୀଙ୍କ ନିକଟରେ ତାଙ୍କୁ ସମର୍ପଣ କରାଯାଇଥିଲା ।

ମନ୍ଦିର ନିର୍ମାଣ ତଦାରଖ କରିବା ପାଇଁ ପ୍ରତ୍ୟହ ସକାଳେ ମିସ୍ତ୍ରୀମାନଙ୍କ ସହିତ ସେ ଗାଆଁକୁ ଯାଆନ୍ତି ଓ ସେଠାରେ ସାରାଦିନ ରହନ୍ତି । ମିସ୍ତ୍ରୀମାନେ ତ ତାଙ୍କ ପରିବାରର ଲୋକ ଭଳି । ମନ୍ଦିରଟି ନିର୍ମାଣ ହେଲେ ସେହି ପ୍ରାଚୀନ ବୃକ୍ଷ ଓ ପରିବେଶର ଯେପରି କିଛି କ୍ଷତି ନ ହୁଏ, ସେଥିପ୍ରତି ସେ ଦୃଷ୍ଟି ଦେଉଥିଲେ । ମନ୍ଦିର ନିର୍ମାଣ ପାଇଁ ସେ ତ ଅର୍ଥଦାନ କରୁଥିଲେ; ତା'ଛଡ଼ା ତାଙ୍କର ଛାତ୍ରଛାତ୍ରୀ ବା ଅନ୍ୟ ଯେକେହି ଯାହା ଦେଉଥିଲେ ତାହା ଗୃହୀତ ହେଉଥିଲା । ଗୋଟିଏ ଛୋଟ ହିସାବ ଖାତାରେ ତାହା ଲିଖିତ ହୋଇ ରହୁଥିଲା ।

ବର୍ତ୍ତମାନ ତାଙ୍କର ବୟସ ପଞ୍ଚସ୍ତରି । ସେ ବହୁ ସମ୍ମାନର ଅଧିକାରୀ ହୋଇସାରିଛନ୍ତି । ମାର୍ଚ୍ଚ ୨୦୦୦ରେ ତାଙ୍କୁ 'ପଦ୍ମ ବିଭୂଷଣ' ଉପାଧି ପ୍ରଦାନ କରାଯାଇଅଛି । ତଥାପି ଛୋଟ ଶିଶୁଟିଏ ପରି କିଛି ନୂଆ ଶିଖିବା ଓ ତାହାକୁ କାର୍ଯ୍ୟରେ ପ୍ରୟୋଗ କରିବା ପାଇଁ ତାଙ୍କର ଅସୀମ ଆଗ୍ରହ । ଯେ କୌଣସି ବ୍ୟକ୍ତି ସହିତ ତାଙ୍କ ସୃଜନଶୀଳତାର ଅନୁଭବ ସମ୍ପର୍କରେ ସେ ଆଲୋଚନା କରିପାରନ୍ତି । କେବଳ ନୃତ୍ୟଶିକ୍ଷାମାନେ ନୁହନ୍ତି, ସମାଜର ସବୁ ବର୍ଗର ଲୋକେ ତାଙ୍କ ପ୍ରତି ଆକୃଷ୍ଟ ହୁଅନ୍ତି । ତାଙ୍କର ନମ୍ରତା ଓ ସଂଭ୍ରମତା ହେତୁ ଯେ କେହି ତାଙ୍କୁ ଭେଟି ତାଙ୍କ ସହିତ ଆଲୋଚନା କରିପାରେ । ସେ ମଞ୍ଚରେ ନୃତ୍ୟ କରୁଥିବା ସମୟରେ ମନେହୁଏ – ଯେପରି କୌଣସି ଦୈବୀଶକ୍ତି ତାଙ୍କ ମାଧ୍ୟମରେ ନିଜକୁ ପ୍ରକାଶ କରୁଛି; ପ୍ରତିଥର ତାଙ୍କ ନୃତ୍ୟରେ କିଛି ନୂତନତା ଥାଏ । ନୃତ୍ୟ କାର୍ଯ୍ୟକ୍ରମରେ ସେ ସମ୍ପୂର୍ଣ୍ଣ ନିମଜ୍ଜିତ ହୋଇଯାଆନ୍ତି ।

ତାଙ୍କର ଶିଷ୍ୟଶିଷ୍ୟାଙ୍କ ପାଇଁ ସେ ଦେବତାତୁଲ୍ୟ । କିଛି ବର୍ଷ ତଳେ ମାଲୟେସିଆରେ କେତେଜଣ ନୃତ୍ୟଶିଳ୍ପୀ 'ଟେମ୍ପଲ୍ ଅଫ୍ ଫାଇନ୍ ଆର୍ଟ୍ସ୍'ରେ ତାଙ୍କୁ ଠାକୁର ଆସନରେ ବସାଇ ତାଙ୍କର ପୂଜା କରିଥିଲେ । ମାନପତ୍ରରେ ଲେଖାଥିଲା, 'ଆପଣ ନୃତ୍ୟର ଦେବତା । ଆଜି ଆମର ସ୍ୱପ୍ନ ସଫଳ ହୋଇଥିବାରୁ ଆମେ ଗଭୀର ଭାବରେ ଆନନ୍ଦିତ । ଜଣେ ମହାନ୍ ଗୁରୁ ଏଠାରେ ଉପସ୍ଥିତ । ଈଶ୍ୱରଙ୍କ କରୁଣାରୁ ଗୁରୁ କେଳୁଚରଣ ମହାପାତ୍ର ତାଙ୍କ ଉପସ୍ଥିତି ବଳରେ ଆମକୁ ଆଶୀର୍ବାଦ ପ୍ରଦାନ କରିଛନ୍ତି ।'

ଅଳ୍ପଦିନ ତଳେ ତାଙ୍କର ଗୁରୁ ପଙ୍କଜବାବୁ କେଳୁଚରଣଙ୍କ ଏକ କାର୍ଯ୍ୟକ୍ରମ ଲକ୍ଷ୍ୟ କରିବା ପରେ କୃଷ୍ଣ ବିଗ୍ରହଙ୍କର ଗଳାରେ ପଡ଼ିଥିବା ମାଳାଟି ଆଣି ତାଙ୍କର ଯୋଗ୍ୟ ଶିଷ୍ୟ କେଳୁଚରଣଙ୍କ ଗଳାରେ ଲମ୍ବାଇ ଦେଲେ ।

କେଳୁଚରଣ ଯେଉଁ ସ୍ନେହ ଓ ସମ୍ମାନ ଲାଭ କରିଛନ୍ତି, ତାହା ସେ ତାଙ୍କର ପ୍ରଭୁ ଜଗନ୍ନାଥଙ୍କ ନିକଟରେ ସମର୍ପଣ କରିଛନ୍ତି । ଜୀବନରେ ଓ ନୃତ୍ୟ ମଞ୍ଚରେ ତାଙ୍କର ନିଷ୍ଠା ଓ ସାଧନା ତାଙ୍କ ସମ୍ପର୍କରେ ଆସିଥିବା ସମସ୍ତଙ୍କୁ ଅନୁପ୍ରାଣିତ କରିଛି ।



## ପରିଶିଷ୍ଟ–୧

# ଶେଷ ଯାତ୍ରା

୭ ଏପ୍ରିଲ୍ ୨୦୦୪ ସକାଳ ସାଢ଼େ ଦଶଟାରେ ଗୁରୁଜୀଙ୍କର ଦେହାନ୍ତ ହେଲା । ଏହା ଥିଲା ଏକାନ୍ତ ଆକସ୍ମିକ । ସେଦିନ ସକାଳେ ଗାଧୁଆ ଘରୁ ବାହାରିବା ସମୟରେ ସେ ଅସୁସ୍ଥ ଅନୁଭବ କଲେ; ନିଃଶ୍ୱାସ ପ୍ରଶ୍ୱାସ ନେବାରେ କଷ୍ଟ ହେଲା । ତାଙ୍କ ପୁତ୍ର ରତିକାନ୍ତ ସଙ୍ଗେ ସଙ୍ଗେ ତାଙ୍କୁ କାର୍ ଯୋଗେ ଭୁବନେଶ୍ୱର ବଡ଼ ଡାକ୍ତରଖାନାକୁ ନେଇଗଲେ । ତାଙ୍କ ଘରଠାରୁ ଡାକ୍ତରଖାନା ପନ୍ଦର ମିନିଟ୍‌ର ବାଟ । ବାଟରେ ବୋହୂଙ୍କ କୋଳରେ ମୁଣ୍ଡ ରଖି ସେ ନିଃଶ୍ୱାସ ତ୍ୟାଗ କଲେ । ତୁରନ୍ତ ମୁଁ ତାଙ୍କ ମୃତ୍ୟୁ ଖବର ପାଇଲି ଓ ଡାକ୍ତରଖାନାରୁ କାର୍ ଫେରିବା ସମୟରେ ମୁଁ ମଧ ତାଙ୍କ ଘରେ ପହଞ୍ଚିଲି । ତାହାପରେ ଯାହାସବୁ ଘଟିଗଲା ମୋର ସ୍ପଷ୍ଟ ମନେଅଛି । ତାଙ୍କୁ ନୂଆ ଧୋତି ପିନ୍ଧାଇ ତାଙ୍କ ମସ୍ତକରେ ସିନ୍ଦୂର ଲଗାଇବା, ତାଙ୍କୁ ଫୁଲରେ ସଜାଇବାବେଳେ ମୁଁ ମନେ ପକାଇଲି – ସେ ନିଜେ କିପରି ବହୁ ସମୟରେ ତାଙ୍କର ଛାତ୍ରଛାତ୍ରୀମାନଙ୍କୁ ଅଳଙ୍କାର ପିନ୍ଧାଇ ସଜାଇ ଦେଉଥିଲେ । ତାଙ୍କର ଦୁଇ ନିଶ୍ଚଳ ହାତ ତଥାପି ମୋତେ ଗତିଶୀଳ ଓ ଆକର୍ଷଣୀୟ ଦିଶୁଥିଲା । ସେଇ ହାତ ଦୁଇଟିରେ ସେ କେତେବା କାର୍ଯ୍ୟ ନ କରିଛନ୍ତି; ସିଲେଇ କରିବା, ମରାମତି କରିବା, ରଙ୍ଗ ଦେବା, କାନ୍ଥରେ ସିମେଣ୍ଟ୍ ପ୍ଲାଷ୍ଟରିଂ କରିବା, ଘର ସଫା କରିବା, ସଜାଇବା, ଚିତ୍ର କରିବା, ନୃତ୍ୟ କରିବା, ଇତ୍ୟାଦି । ସେ ହାତ ଦୁଇଟି ଯେପରି ସବୁ ସମୟରେ ଅନ୍ୟମାନଙ୍କୁ କର୍ମ କରିବାର ପ୍ରେରଣା ଯୋଗାଉଥିଲେ; ସବୁ ସମସ୍ୟାର ସମାଧାନ କରିଦେଉଥିଲେ । ସେ ହାତ ଦୁଇଟି ଉପରେ ମୋର ଆଖି ଲାଖି ରହିଥିଲା । ତାଙ୍କର ଗୋଟିଏ ହାତ ମୁଁ ନିଜ ହାତରେ ଧରିଥିଲି – ସତେ ଯେପରି ସେ ନିଦ୍ରାରେ ଶୋଇଛନ୍ତି, ଯେ କୌଣସି ମୁହୂର୍ତ୍ତରେ ଉଠି ବସିବେ ।

ଖୁବ୍ ଶୀଘ୍ର କେଳୁବାବୁଙ୍କ ମୃତ୍ୟୁ ଖବର ସର୍ବତ୍ର ପ୍ରଚାରିତ ହୋଇଗଲା । ବହୁ ଲୋକ ଆସି ପହଞ୍ଚିଲେ । ଅଜସ୍ର ଫୁଲ ତାଙ୍କ ଉପରେ ଅଜାଡ଼ି ହୋଇପଡ଼ିଲା । ତାଙ୍କ ଗୋଲାପି କୁର୍ତ୍ତା ଫୁଲରେ ଲୁଚିଗଲା । ଖଟ ଉପରୁ ତାଙ୍କ ଶରୀରକୁ ନେଇ ଦୁଇଟି ବରଫ ଖଣ୍ଡ ଉପରେ ରଖାଗଲା । ବରଫର ପାଣି ଟାଣିନେବା ପାଇଁ ଚଟାଣରେ ବାଲି ବିଛାଇ ଦିଆଗଲା । ଲୋକଗହଳି ଭିତରେ ମୁଁ କେତେଜଣ ପରିଚିତ ତାଙ୍କର ଛାତ୍ରଛାତ୍ରୀଙ୍କୁ ଦେଖିଲି; ଆଉ କେତେଜଣଙ୍କୁ ମୁଁ ଜାଣି ନଥିଲି । ଗୁରୁଜୀଙ୍କୁ ତ ସମସ୍ତେ ଜାଣିଥିଲେ । ତାଙ୍କର ଖ୍ୟାତି ଏତେ ବ୍ୟାପିଥିଲା ଯେ, ରାସ୍ତାର ସାଧାରଣ ଲୋକ ମଧ କେଳୁଚରଣ ମହାପାତ୍ର କିଏ

ତାହା ଜାଣିଥିଲେ । ସମସ୍ତଙ୍କ ପାଇଁ ତାଙ୍କର ସମୟ ଓ ଧୈର୍ଯ୍ୟ ଥିଲା । ସାଧାରଣ ରିକ୍ସାବାଲା ଓ ମିସ୍ତ୍ରୀକୁ ମଧ୍ୟ ଓଡ଼ିଶୀ ନୃତ୍ୟ ସମ୍ପର୍କରେ ସେ ଧାରଣା ଦେଇପାରୁଥିଲେ । ତାଙ୍କ ଶବ ନିକଟରେ ମୁଁ ଗୋଟିଏ ରିକ୍ସାବାଲାକୁ ଦେଖିଲି । ସେ ବୋଧହୁଏ ତାଙ୍କୁ କିଛି ଦେବା ପାଇଁ ଖୋଜୁଥିଲା । ସେ ଫୁଲ ଆଣି ନଥିଲା । ଶେଷରେ ତା' ଅଣ୍ଟିରୁ କଠାଏ ବିଡ଼ି ଓ ମୁଠାଏ ଦିଆସିଲି କାଠି ଶ୍ରଦ୍ଧାରେ ଗୁରୁଜୀଙ୍କୁ ଅର୍ପଣ କଲା ।

ଅଠସ୍ତରି ବର୍ଷ ବୟସରେ ଦେହାନ୍ତ ହେବା ସାଧାରଣତଃ ଅକାଳ ମୃତ୍ୟୁ ବୋଲି କୁହାଯାଇ ପାରିବ ନାହିଁ । ତେବେ ଗୁରୁଜୀଙ୍କ ବୟସ ସଂପର୍କରେ ଆମେ କେବେ ସଚେତନ ନ ଥିଲୁ । ଚଉଦ ବର୍ଷ ତଳେ ଛଅମାସ ମଧ୍ୟରେ ତାଙ୍କର ତିନିଥର ବାଇପାସ୍ ସର୍ଜରୀ ହୋଇଥିଲା । ତାଙ୍କର ଛାତି ଉପରେ କଟାଦାଗ ତାହା ଆମକୁ ମନେପକାଇ ଦେଉଥିଲା । ଆଉ ଅଳ୍ପଦିନ ପରେ ବାରାଣସୀର ସଙ୍କଟମୋଚନ ଉତ୍ସବରେ ସେ ଯୋଗ ଦେଇଥା'ନ୍ତେ । ତା'ର ଏକ ସପ୍ତାହ ପରେ ମାସକ ପାଇଁ ପ୍ୟାରିସ୍ ଯାଇଥା'ନ୍ତେ । ତା'ପରେ ଦୁଇମାସ ସ୍ୱଗୃହରେ ଗ୍ରୀଷ୍ମକାଳୀନ କାର୍ଯ୍ୟକ୍ରମ ପରିଚାଳନା କରିଥାଆନ୍ତେ । ଆମେ ବହୁ ବର୍ଷ ସେଇ କାର୍ଯ୍ୟକ୍ରମରେ ଯୋଗ ଦେଇଛୁ । ମୃତ୍ୟୁର ଅଳ୍ପ କେତେ ଘଣ୍ଟା ପୂର୍ବରୁ ତାଙ୍କଠାରୁ ତାଲିମ୍ ନେଇଥିବା ଜଣେ ଛାତ୍ରୀ କାନ୍ଦି କାନ୍ଦି ପଚାରୁଥିଲେ, 'ମୁଁ ତାଙ୍କଠାରୁ ଯାହା ଶିଖିଛି, ତାହା ଆଉ ସଂଶୋଧନ କରିବ କିଏ ?' ମୁଁ ଅନୁଭବ କଲି – ବର୍ଷ ବର୍ଷ ଧରି ତାଙ୍କଠାରୁ ତାଲିମ୍ ନେବା ଆମର ପରମ ସୌଭାଗ୍ୟ । ଆମେ ତାଙ୍କ ସହିତ ଦୀର୍ଘ ସମୟ କଟାଇଛୁ । ଆମେ କ'ଣ ଜଣେ ଛାତ୍ର ବା ଛାତ୍ରୀଙ୍କୁ ତାଙ୍କ ଭଳି ଅନୁପ୍ରାଣିତ କରିପାରିବୁ ?

ଗୁରୁଜୀଙ୍କର କେତେକ ଛାତ୍ରଛାତ୍ରୀ ତାଙ୍କର ଶେଷ ଦର୍ଶନ ପାଇଁ ମୁମ୍ବାଇ, ଦିଲ୍ଲୀ ଓ କୋଲ୍‌କାତାରୁ ତା'ପରଦିନ ପହଞ୍ଚିବାର ଥିଲା । ତେଣୁ ତାଙ୍କର ଶବ ସଂସ୍କାର ଗୋଟିଏ ଦିନ ଘୁଞ୍ଚାଇ ଦିଆଗଲା । ତା'ପରଦିନ ତାଙ୍କ ଘରେ ପହଞ୍ଚି ମୁଁ ଲକ୍ଷ୍ୟ କଲି, ପରିସ୍ଥିତି ଅନେକଟା ବଦଳି ଯାଇଛି । ତାଙ୍କ ଶବର ଦୁଇପାଖେ ଫୁଲର ବାଡ଼ ନିର୍ମିତ ହୋଇଛି; ସଙ୍ଗୀତ ଶିଳ୍ପୀମାନେ ଭଜନ ଓ ସଂଗୀତ ଗାନ କରୁଛନ୍ତି । କେତେକ ଗୀତ ତାଙ୍କର ତିରୋଧାନରେ ଲିଖିତ ହୋଇଛି । ଆମ ମଧ୍ୟରୁ ଅନେକେ ପରସ୍ପରକୁ ଆଲିଙ୍ଗନ କଲେ; ଆମର ବିଶେଷ କିଛି କହିବାର ନ ଥିଲା । ପ୍ରତ୍ୟେକେ ବିଚଳିତ ହୋଇପଡ଼ିଥିଲେ । ଅପରାହ୍ନ ଦୁଇଟାରେ ତାଙ୍କ ଶବକୁ ବୋହିନେବା ପାଇଁ କୋକେଇଟିଏ ଆସିଲା । ଶବକୁ କୋକେଇରେ ରଖାଯିବା ସମୟରେ ଶୋକର କୋଳାହଳ ବଢ଼ିଗଲା । ଗୁରୁଜୀଙ୍କ ଦୁଇ ପାଦରେ ଅଳତା ଲଗାଯାଇଥାଏ । ଖଣ୍ଡିଏ ଧଳା କାଗଜରେ ତାହାର ଛାପ ନିଆଗଲା । ଶବକୁ କୋକେଇ ଉପରେ ରଖାଯିବା ସମୟରେ ମୁଁ ଚିନ୍ତାରହିତ ଓ ଚଳତ୍‌ଶକ୍ତିରହିତ ହୋଇଗଲି । ଲକ୍ଷ୍ୟକଲି, ସମସ୍ତଙ୍କ ଚକ୍ଷୁରେ କିପରି ଗୋଟାଏ ଶୂନ୍ୟତା । ମୁମ୍ବାଇ ଓ ଦିଲ୍ଲୀରୁ ଗୁରୁଜୀଙ୍କ ଛାତ୍ରଛାତ୍ରୀମାନେ ପ୍ରାୟ ସେହି ସମୟରେ ପହଞ୍ଚୁଥା'ନ୍ତି । ପୁଣି ଶୋକୋଚ୍ଛ୍ୱାସ ଏବଂ

ନୈରାଶ୍ୟବୋଧ । ସେମାନଙ୍କ ଅନୁଭୂତି ମୁଁ ହୃଦୟଙ୍ଗମ କଲି । ତା' ପୂର୍ବଦିନ ଯେ ମୁଁ ପ୍ରାୟ ଏକଘଣ୍ଟା ଗୁରୁଜୀଙ୍କ ହସ୍ତ ଧରିପାରିଥିଲି, ଏହା ଭାବି ମୁଁ ନିଜକୁ ଗୌରବାନ୍ୱିତ ମନେ କରୁଥିଲି ।

ତାହା ପରେ ଅଳ୍ପ ସମୟ ମଧ୍ୟରେ ଅନେକ କିଛି ଘଟିଗଲା । ଫାଟକ ଦୁଇ କଡ଼ରେ ଠିଆ ହୋଇଥିବା ଷ୍ଟେଟ୍ ଗାର୍ଡ୍‌ମାନେ ଗନ୍ ସାଲ୍ୟୁଟ୍ ଦେଲେ । 'ରାମନାମ ସତ୍ୟ ହେ' ଏବଂ ଅବିର ସିଞ୍ଚନ ମଧ୍ୟରେ ଗୁରୁଜୀଙ୍କ ଶବକୁ ଗୋଟିଏ କଳା ମୋଟର ଗାଡ଼ିର ପଛରେ ରଖାଯାଇ ପୁରୀ ନିଆଗଲା । ବାଟରେ ଅଳ୍ପ ସମୟ ପାଇଁ ଗୁରୁଜୀଙ୍କ ନିଜ ଗାଁ' ରଘୁରାଜପୁରଠାରେ କାର୍ ଅଟକିଥିଲା । ଗୁରୁଜୀଙ୍କର ନିଜ ଘର ତ ଆଉ ନ ଥିଲା, କିନ୍ତୁ ଗାଆଁ ମୁଣ୍ଡରେ ସେ ନିର୍ମାଣ କରିଥିବା ଭୁଆସୁଣୀ ଠାକୁରାଣୀଙ୍କ ମନ୍ଦିରଟି ଏକ ବିରାଟ ବରଗଛ ତଳେ ଠିଆ ହୋଇଥିଲା । ପିଲାଦିନେ ସେ ହାଡ଼ଫୁଟି ରୋଗରେ ପଡ଼ିଥିବା ସମୟରେ ଏକଦା ତାଙ୍କୁ ଭୁଆସୁଣୀଙ୍କୁ ଦାନ କରିଦିଆ ଯାଇଥିଲା । ସେ ରୋଗରୁ ବର୍ତ୍ତି ଯାଇଥିଲେ । ରଘୁରାଜପୁର ଜଗନ୍ନାଥ ଧାମ ପୁରୀଠାରୁ ମାତ୍ର ଦଶ କିଲୋମିଟର ଦୂର । ମୁଁ ସ୍ୱର୍ଗଦ୍ୱାରରେ ପହଞ୍ଚିଲା ବେଳକୁ ଗୁରୁଜୀଙ୍କ ଶବ ଅଧାଅଧି ଭସ୍ମୀଭୂତ ହୋଇସାରିଥିଲା । ମୁଁ ଶୁଣିବାକୁ ପାଇଲି, ଶବରେ ଅଗ୍ନି ସଂଯୋଗ ହେବା ପୂର୍ବରୁ ଗୁରୁଜୀଙ୍କ ଛାତ୍ରଛାତ୍ରୀମାନେ ସ୍ୱତଃସ୍ଫୂର୍ତ୍ତ ଭାବରେ ସମବେତ ନୃତ୍ୟ ପରିବେଷଣ କରିଥିଲେ । ଅଗ୍ନିଶିଖା ପବନରେ ସମୁଦ୍ର ଦିଗକୁ ଗତି କରୁଥିଲା । ଶରୀରର ପଞ୍ଚଭୂତ ମହାଶୂନ୍ୟରେ ମିଳାଇ ଯାଉଥିଲା । ଏହି ପଞ୍ଚଭୂତର ବିବର୍ତ୍ତନ ଓ ବିଳୟ ସଂପର୍କରେ ଗୁରୁଜୀ ବହୁ ସମୟରେ ବ୍ୟାଖ୍ୟା କରୁଥିଲେ । ଆଜି ସେ ଜୀବିତ ଥିଲେ ହୁଏତ ତାହାହିଁ କରିଥା'ନ୍ତେ ।

କ୍ରମେ ଲୋକଗହଳି କମିଆସିଲା । ଏହା ଥିଲା କୌଣସି ଅଭିନୟର ଅନ୍ତିମ ପର୍ବ ପରି – ଯେତେବେଳେ ଦର୍ଶକମାନେ ଚାଲିଯାଆନ୍ତି, ମଞ୍ଚରୁ ଆଲୋକ ଲିଭିଯାଏ ଏବଂ ନିଃସଙ୍ଗ ଶିଳ୍ପୀମାନେ ମଧ୍ୟରାତ୍ରରେ ଗ୍ରୀନ୍‌ରୁମ୍‌ରୁ ବାହାରି ଆସନ୍ତି । ମୁଁ ଶେଷଯାଏଁ ସେଠାରେ ରହିବାକୁ ସ୍ଥିର କଲି । ଗୁରୁଜୀଙ୍କ ଭସ୍ମରୁ କ୍ଷୁଦ୍ର ଅସ୍ଥିଖଣ୍ଡ ସଂଗ୍ରହ କରାଯାଇ ମାଟିପାତ୍ରରେ ରଖାଗଲା । ଗୁରୁଜୀଙ୍କ ସାନଭାଇ ବଂଶୀଧର ଦେଖିବାକୁ ଅବିକଳ ତାଙ୍କରି ପରି । ସେ ମାଟିପାତ୍ରଟି ଧରି ପଛକୁ ନ ଚାହିଁ ଚାଲିଗଲେ । ପଛକୁ ଚାହିଁବାର ବା ଆଉ କ'ଣ ଥିଲା ? ପବନ ଉଡାଇ ନେବାପାଇଁ ଥିଲା ମାତ୍ର କିଛି ଧୂଳି । ଆଜି ସେ ସଶରୀରେ ନାହାନ୍ତି, କିନ୍ତୁ ତାଙ୍କର ଆତ୍ମା ଆମ ପ୍ରତ୍ୟେକଙ୍କ ମଧ୍ୟରେ ଜୀବନ୍ତ ରହିଛି ।

•••

## ପରିଶିଷ୍ଟ–୨

# ଗୁରୁଜୀଙ୍କ ଜୀବନର ଉଲ୍ଲେଖନୀୟ ଘଟଣାବଳୀ

୧୯୨୪ ରଘୁରାଜପୁର ଗ୍ରାମରେ ଜନ୍ମଲାଭ (ଜିଲ୍ଲା–ପୁରୀ, ଓଡ଼ିଶା) । ପିତା – ଚିନ୍ତାମଣି ମହାପାତ୍ର (ଚିତ୍ରକର), ମାତା– ଶିରି ନାନୀ । ସରକାରୀ ଭାବରେ ଜନ୍ମ ମସିହା– ୧୯୨୬ ।

୧୯୨୯ ଗୁରୁ ବଳଭଦ୍ର ସାହୁଙ୍କ ଆଖଡ଼ାରେ ଯୋଗଦାନ ଏବଂ ଗୋଟିପୁଅ ନାଚରେ ତିନିବର୍ଷ ପର୍ଯ୍ୟନ୍ତ ତାଲିମ୍ ଗ୍ରହଣ ।

୧୯୩୨ ପୁରୀରେ ଗୁରୁ ମୋହନସୁନ୍ଦର ଦେବ ଗୋସ୍ୱାମୀଙ୍କ ରାସଲୀଳା ଦଳରେ ଯୋଗଦାନ ।

୧୯୪୧ ପିତାଙ୍କର ଦେହାନ୍ତ ।

୧୯୪୩ ରାସଲୀଳା ଦଳ ପରିତ୍ୟାଗ, ଚନ୍ଦନପୁରରେ ପାନ ବରଜରେ ଦୈନିକ ୨୫ ପଇସା ମଜୁରୀରେ ପ୍ରାୟ ଏକ ବର୍ଷ ପର୍ଯ୍ୟନ୍ତ ନିୟୋଜିତ । ଏହି ସମୟରେ ସେ ମଧ୍ୟ ପ୍ରାୟ ଏକ ମାସ ପର୍ଯ୍ୟନ୍ତ କଟକରେ କୁଷ୍ଠ ରୋଗାକ୍ରାନ୍ତ ଜନୈକ ଜମିଦାର ବନମାଳୀ ସାହୁଙ୍କ ପାଇଁ ସଂକୀର୍ତ୍ତନ ଗାନ କରିଥିଲେ ।

୧୯୪୪ କାଳୀଚରଣ ପଟ୍ଟନାୟକଙ୍କ ଦ୍ୱାରା କଟକରେ ପ୍ରତିଷ୍ଠିତ ଓଡ଼ିଶା ଥିଏଟର୍‌ରେ ଯୋଗଦାନ ତଥା ଏକ ବର୍ଷରୁ କମ୍ ସମୟ ପାଇଁ ମାସିକ ୭ ଟଙ୍କା ବେତନରେ ସେଠାରେ ଅବସ୍ଥାନ ।

୧୯୪୫ ନିର୍ଦ୍ଦେଶକ ଭାବରେ ପୁରୀର ରାଧାକାନ୍ତ ରାସ ପାର୍ଟିରେ ମାସିକ ୩୦ ଟଙ୍କା ବେତନରେ ଯୋଗଦାନ । ନିର୍ଦ୍ଦେଶକ ଭାବରେ ତାଙ୍କର ପ୍ରଥମ ନିର୍ଦ୍ଦେଶିତ ନାଟକ 'ମୀରାବାଈ' ମଞ୍ଚସ୍ଥ ।

୧୯୪୬ କଟକରେ ନବଗଠିତ ଅନ୍ନପୂର୍ଣ୍ଣା 'ଖ' ଦଳରେ ମାସିକ ୧୫ ଟଙ୍କା ବେତନରେ ଯୋଗଦାନ । ନର୍ତ୍ତକ ଭାବରେ ମହାଦେବ ଭୂମିକାରେ ନାଟକ 'ଦେବୀ'ରେ ପ୍ରଥମ ଅଭିନୟ ।

୧୯୪୭ ପଙ୍କଜ ଚରଣ ଦାସଙ୍କ ଦ୍ୱାରା ନିର୍ଦ୍ଦେଶିତ ନାଟକ 'ସାଧବ ଝିଅ'ରେ ପ୍ରଥମ ଥର ନିମନ୍ତେ ଦଶାବତାର ପରିବେଷଣ ପାଇଁ ନାରୀ ନୃତ୍ୟଶିଳ୍ପୀ ଲକ୍ଷ୍ମୀପ୍ରିୟାଙ୍କ ସହିତ ଅଭିନୟ ।

୧୯୪୮ ଗୁରୁ ମୋହନସୁନ୍ଦର ଦେବ ଗୋସ୍ୱାମୀଙ୍କର ତିରୋଧାନ ।
ନାଟକ 'ଆଲୋକ'ରେ ଲକ୍ଷ୍ମୀପ୍ରିୟାଙ୍କ ଦ୍ୱାରା ଅଭିନୀତ ହେବା ନିମନ୍ତେ କେଳୁଚରଣଙ୍କ ଦ୍ୱାରା ଏକ ନୃତ୍ୟାଭିନୟର ପ୍ରଥମ ସଂରଚନା । ମଣିପୁରୀ, ଓଡ଼ିଶୀ ଏବଂ କଥକ ନୃତ୍ୟର ସମ୍ମିଶ୍ରଣରେ ଦୟାଲ୍ ଶରଣଙ୍କ ସଂଯୋଜନା ଅନୁଯାୟୀ ଏହାର କୋରିଓଗ୍ରାଫି କରାଯାଇଥିଲା ।
ଲକ୍ଷ୍ମୀପ୍ରିୟାଙ୍କ ସହିତ ବିବାହ ଏବଂ ଉଭୟଙ୍କର ଅନ୍ନପୂର୍ଣ୍ଣା 'ଖ' ଦଳ ପରିତ୍ୟାଗ ।

୧୯୪୯ ଅନ୍ନପୂର୍ଣ୍ଣା 'କ' ଦଳ ସହିତ ମତାନ୍ତର ପରେ କଟକରେ ସ୍ଥାୟୀ ଭାବରେ ଉଭୟ ପତିପତ୍ନୀଙ୍କର ବାସ । ଅଭିନେତ୍ରୀ ତଥା ନର୍ତ୍ତକୀ ଭାବରେ ଲକ୍ଷ୍ମୀପ୍ରିୟାଙ୍କର ଚାହିଦା ଥିବା 'ରୂପଶ୍ରୀ' ଏବଂ 'ଜନତା ଥିଏଟର୍' ପାଇଁ କେଳୁଚରଣଙ୍କର ନୃତ୍ୟ ସଂରଚନା ।

୧୯୫୦ ଥିଏଟର୍ ସହିତ ସଂପୃକ୍ତ ନଥିବା କେତେଜଣ ନାରୀ ନୃତ୍ୟଶିକ୍ଷାର୍ଥୀଙ୍କୁ ତାଲିମ୍ ଦେବା ଆରମ୍ଭ କଲେ । ତାଙ୍କର ପ୍ରଥମ ଛାତ୍ରୀମାନଙ୍କ ମଧ୍ୟରେ ଥିଲେ- ସଂଯୁକ୍ତା, ମିନତି, ସାଧନା, ମୀରା ଓ ଜୟନ୍ତୀ ।

୧୯୫୨ ବାବୁଲାଲ୍ ଯୋଶୀ କଟକରେ କଳାବିକାଶ କେନ୍ଦ୍ର ଆରମ୍ଭ କରିଥା'ନ୍ତି । ପ୍ରଥମ ଗୁରୁ ମାୟାଧର ରାଉତ କେଳୁଚରଣ ଏବଂ ତାଙ୍କର ପରିବାର ସହିତ ଗୋଟିଏ ଘରେ ଏକାଠି ରହୁଥିଲେ ।

୧୯୫୩ କେଳୁଚରଣଙ୍କର କଳାବିକାଶ କେନ୍ଦ୍ରରେ ଗୁରୁ ଭାବରେ ଯୋଗଦାନ । ତାଙ୍କ ସହ ତାଙ୍କର ଅଧିକାଂଶ ଛାତ୍ରଛାତ୍ରୀଙ୍କର କେନ୍ଦ୍ରରେ ଯୋଗଦାନ । ୧୯୬୫ ମସିହା ପର୍ଯ୍ୟନ୍ତ ଏହିଠାରେ ନିୟମିତ ଶିକ୍ଷାଦାନ । ପ୍ରାଥମିକ ଅବସ୍ଥାରେ ତାଙ୍କର ମାସିକ ବେତନ ଥିଲା ୨୦ ଟଙ୍କା । ପରେ ଏହା ବର୍ଷକୁ ବର୍ଷ ବୃଦ୍ଧିପାଇ ମାସିକ ୨୫୦ ଟଙ୍କାରେ ପହଞ୍ଚିଥିଲା । ରାଜ୍ୟ ବାହାରେ କୋଲ୍‌କାତାସ୍ଥିତ 'ଟିଲ୍‌ଡ୍ରେନ୍‌ସ୍ ଲିଟ୍‌ଲ୍ ଥିଏଟର୍'ର ତୃତୀୟ ବାର୍ଷିକ ଉତ୍ସବରେ ସଂଯୁକ୍ତା ତାଙ୍କର ପ୍ରଥମ ଓଡ଼ିଶୀ କାର୍ଯ୍ୟକ୍ରମ ପରିବେଷଣ କରିଥିଲେ ।

୧୯୫୫ ଦିଲ୍ଲୀର ଶିଳ୍ପ ମେଳା ନିମନ୍ତେ ପ୍ରଥମ ଥର ପାଇଁ ସଂପୂର୍ଣ୍ଣ ଓଡ଼ିଶୀ ଶୈଳୀରେ ନୃତ୍ୟ-ନାଟିକା 'ସାକ୍ଷୀଗୋପାଳ' ପରିବେଷିତ ହେଲା । ପଙ୍କଜ ବାବୁଙ୍କ ମିଳିତ ଉଦ୍ୟମରେ କୋରିଓଗ୍ରାଫି କରାଯାଇଥିଲା ।

୧୯୫୬ ଦିଲ୍ଲୀରେ ତୃତୀୟ ଅନ୍ତର୍ବିଶ୍ୱବିଦ୍ୟାଳୟ ଯୁବ ଉତ୍ସବରେ ଅଂଶଗ୍ରହଣ କରିଥିବା ପ୍ରିୟମ୍ବଦାଙ୍କ ପାଇଁ ସଂଗୀତ ଗାନ କରିଥିଲେ । ଏହି ଉତ୍ସବରେ ପ୍ରିୟମ୍ବଦା ପ୍ରଥମ ପୁରସ୍କାର ଲାଭ କରିଥିଲେ ।

୧୯୫୭ ଓଡ଼ିଶୀକୁ ଏକ ବିଧିବଦ୍ଧ ନୃତ୍ୟରୂପ ଦେବା ପାଇଁ ଦେବ ପ୍ରସାଦ ଦାସ, ପଙ୍କଜ ବାବୁ ଏବଂ କେଳୁଚରଣ ତଥା ଅନ୍ୟାନ୍ୟ କେତେଜଣ ନୃତ୍ୟ ବିଶାରଦ ଓ ଗୁରୁଙ୍କୁ ନେଇ କଟକରେ 'ଜୟନ୍ତିକା' ଅନୁଷ୍ଠାନର ଗଠନ ହେଲା ।

୧୯୫୮ ଜାନୁୟାରୀ ମାସରେ ସଂଗୀତ ଏକାଡେମୀର ୩୧ତମ ସମ୍ମିଳନୀର ଏକ ଅଂଶ ସ୍ୱରୂପ ଚେନ୍ନାଇରେ ଅନୁଷ୍ଠିତ ସର୍ବ ଭାରତୀୟ ନୃତ୍ୟ ଉତ୍ସବ ଅବସରରେ କେଳୁଚରଣଙ୍କ ନିର୍ଦ୍ଦେଶନାରେ ସଂଯୁକ୍ତାଙ୍କ ନୃତ୍ୟ ପ୍ରଦର୍ଶନ ।

ଏପ୍ରିଲ୍ ମାସରେ ନୂଆଦିଲ୍ଲୀର ସଂଗୀତ ନାଟକ ଏକାଡେମୀ ଦ୍ୱାରା ଆୟୋଜିତ ସର୍ବ ଭାରତୀୟ ନୃତ୍ୟ ସମ୍ମିଳନୀରେ ସେ ଜୟନ୍ତୀଙ୍କ ସହିତ ନୃତ୍ୟରେ ଅଭିନୟ କରିଥିଲେ ।

ଉଭୟ ସମ୍ମିଳନୀରେ କାଳୀଚରଣ ପଟ୍ଟନାୟକ ଓଡ଼ିଶୀ ସଂପର୍କରେ ପ୍ରବନ୍ଧମାନ ପଢିଥିଲେ ।

୧୯୫୯ କେଳୁଚରଣ ଯକ୍ଷ୍ମା ରୋଗର ଶିକାର ହେଲେ । ପ୍ରାୟ ଛଅମାସ ପର୍ଯ୍ୟନ୍ତ ତାଙ୍କୁ ସମସ୍ତ କାର୍ଯ୍ୟକ୍ରମରୁ ଦୂରେଇ ରହିବାକୁ ହେଲା । ଏହି ସମୟରେ 'ଜୟନ୍ତିକା'ର କାର୍ଯ୍ୟକ୍ରମ ଧୀରେ ଧୀରେ ବନ୍ଦ ହୋଇଗଲା ।

୧୯୬୧ ନୂଆଦିଲ୍ଲୀର 'ସାପ୍ରୁ ହାଉସ୍'ରେ କେଳୁଚରଣ ପ୍ରିୟମ୍ବଦାଙ୍କ ସହ ନୃତ୍ୟରେ ଭାଗ ନେଇଥିଲେ । ଏହି ଅବସରରେ ପ୍ରିୟମ୍ବଦା ୧୧ଟି ବନ୍ଧରେ ଅଭିନୟ ପ୍ରଦର୍ଶନ କରିଥିଲେ । ପ୍ରତ୍ୟେକ ବନ୍ଧ ଭିନ୍ନ ଭିନ୍ନ ଅବସ୍ଥାରେ ପରିବେଷଣ କରାଯାଇଥିଲା ।

କଟକରେ ମାତ୍ର ୧,୫୦୦ ଟଙ୍କା ମୂଲ୍ୟରେ ଖଣ୍ଡେ ଜମି କ୍ରୟ କଲେ ଓ ଚାରିବର୍ଷ ସମୟ ମଧ୍ୟରେ ନିଜର ଘରଟିଏ କରିପାରିଲେ ।

୧୯୬୪ କଳାବିକାଶ କେନ୍ଦ୍ର ଦ୍ୱାରା ମୁମ୍ବାଇରେ ପରିବେଷିତ ହେବାକୁ ଥିବା 'କୃଷ୍ଣଲୀଳା' ନୃତ୍ୟନାଟିକାର ରିହର୍ସାଲ୍ ସମୟରେ ଅତ୍ୟଧିକ ପରିଶ୍ରମ ହେତୁ କେଳୁଚରଣ ଭୀଷଣ ଜ୍ୱର ରୋଗାକ୍ରାନ୍ତ ହେଲେ ।

୧୯୬୫ କେଳୁଚରଣଙ୍କ ପୁଅ ରତିକାନ୍ତର ଜନ୍ମ । ସାଆନ୍ତ ସାହିରେ ନବନିର୍ମିତ ସ୍ୱଗୃହକୁ ପରିବାର ସହିତ ଗମନ ।

୧୯୬୬ ଓଡ଼ିଶୀ ନୃତ୍ୟ ପାଇଁ କେଳୁଚରଣଙ୍କର ସଂଗୀତ ନାଟକ ଏକାଡେମୀ ପୁରସ୍କାର ଗ୍ରହଣ ।

୧୯୬୭ ଦିଲ୍ଲୀରେ ସଂଗୀତ ନାଟକ ଏକାଡେମୀ ଓ ଲଳିତ କଳା ଏକାଡେମୀର ମିଳିତ ସହଯୋଗରେ 'ଗୀତଗୋବିନ୍ଦ' ଉପରେ ଆୟୋଜିତ ଆଲୋଚନାଚକ୍ରରେ ଅଂଶଗ୍ରହଣ ସହିତ କୁଙ୍କୁମ ଦାସଙ୍କ ଦ୍ୱାରା ଦୁଇଗୋଟି ନୂତନ ଅଷ୍ଟପଦୀ

ପରିବେଷଣ । ବିଶେଷ ଅନୁରୋଧରେ ଦ୍ୱିତୀୟ ଦିବସରେ ତାଙ୍କ ନିଜ ଦ୍ୱାରା ରାଜ୍ୟ ବାହାରେ ପ୍ରଥମ ଥର ନିମନ୍ତେ 'ଗୀତଗୋବିନ୍ଦ'ର ପରିବେଷଣ । ପ୍ରଥମ ଥର କୌଣସି ଏକ ବିଦେଶ ରାଷ୍ଟ୍ରକୁ ଯାତ୍ରା ଭାବରେ ସଂଯୁକ୍ତାଙ୍କ ସହିତ ଭାରତୀୟ ନୃତ୍ୟର ପ୍ରତିନିଧି ଭାବରେ ରୁଷ୍ ଦେଶକୁ ଗମନ ।

୧୯୬୮ ଚେନ୍ନାଇରେ ଆଠଗୋଟି ନୃତ୍ୟାଭିନୟ ପ୍ରଦର୍ଶନ ନିମନ୍ତେ ସୋନାଲ୍ ମାନସିଂଙ୍କ ସହିତ ଗସ୍ତ; ପ୍ରଥମ ନୃତ୍ୟାଭିନୟ 'ମ୍ୟୁଜିୟମ୍ ଥିଏଟର୍'ରେ ପରିବେଷିତ ହୋଇଥିଲା । ଏଥିରେ ରକ୍ମିଣୀ ଦେବୀ ଯୋଗଦାନ କରିଥିଲେ ।

କଳାବିକାଶ କେନ୍ଦ୍ରରେ ଗ୍ରୀଷ୍ମକାଳୀନ ନୃତ୍ୟଶିକ୍ଷା କାର୍ଯ୍ୟକ୍ରମର ଆରମ୍ଭ । ଏଥିରେ ସ୍ଥାନୀୟ ତଥା ରାଜ୍ୟ ବାହାରର ଶିକ୍ଷାର୍ଥୀମାନଙ୍କର ଯୋଗଦାନ ।

ଦିଲ୍ଲୀରେ ହରେକୃଷ୍ଣ ବେହେରାଙ୍କ ନୃତ୍ୟ ନିକେତନରେ କିଛି ମାସ ଶିକ୍ଷାଦାନ ।

୧୯୬୮ ଚେନ୍ନାଇର 'କଳାକ୍ଷେତ୍ର'ରେ ଅଭିନୟ ପ୍ରଦର୍ଶନ ନିମନ୍ତେ କେଳୁଚରଣ ଓ ସୋନାଲ୍‌ଙ୍କୁ ଆମନ୍ତ୍ରଣ ।

୧୯୭୪ ଦିଲ୍ଲୀର 'ତ୍ରିବେଣୀ କଳା ସଂଗମ'ରେ କିଛିମାସ ପାଇଁ ଶିକ୍ଷାଦାନ ।

'ପଦ୍ମଶ୍ରୀ' ଉପାଧି ଗ୍ରହଣ ।

ପଣ୍ଡିତ ଯଶରାଜଙ୍କ ସଂଗୀତ ସଂଯୋଜନାରେ ମୁମ୍ବାଇରେ 'ଗୀତଗୋବିନ୍ଦ'ର ହିନ୍ଦୀ ରୂପାନ୍ତରର କୋରିଓଗ୍ରାଫି ।

୧୯୭୫ କଟକରେ ମଞ୍ଚସ୍ଥ 'କୋଣାର୍କ' ନାମକ ନୃତ୍ୟନାଟିକାରେ ବିଶୁ ମହାରଣା ଭୂମିକାରେ ଅଭିନୟ କରି ମଞ୍ଚକୁ ପ୍ରତ୍ୟାବର୍ତ୍ତନ ।

୧୯୭୯ ଦିଲ୍ଲୀର ଗାନ୍ଧର୍ବ ମହାବିଦ୍ୟାଳୟରେ ମାସିକ ନୃତ୍ୟଶିକ୍ଷା କାର୍ଯ୍ୟକ୍ରମରେ ଶିକ୍ଷାଦାନ ଆରମ୍ଭ କଲେ । ଅଷ୍ଟପଦୀ 'ପ୍ରିୟେ ଚାରୁଶୀଳେ' ପାଇଁ ମଞ୍ଚରେ ଅଭିନୟ କରିଥିଲେ; ଏହା କେଳୁଚରଣଙ୍କ ଅଭିନୟ ପ୍ରତିଭାର ପୁନର୍ବିନ୍ୟାସ ବୋଲି ଅଭିହିତ କରାଯାଏ । ପରବର୍ତ୍ତୀ ଦୁଇ ଦଶନ୍ଧି ମଧ୍ୟରେ ଅନେକ ସ୍ମରଣୀୟ ମଞ୍ଚ ଅଭିନୟର ଏହା ଅୟମାରମ୍ଭ ।

୧୯୮୦ କୋଲକାତା 'ପଦାତିକ' ନୃତ୍ୟ କେନ୍ଦ୍ରରେ ମାସିକ ନୃତ୍ୟଶିକ୍ଷା କାର୍ଯ୍ୟକ୍ରମରେ ଶିକ୍ଷାଦାନ ଆରମ୍ଭ କଲେ ।

୧୯୮୧ ମୁମ୍ବାଇର 'ନ୍ୟାସନାଲ୍ ସେଣ୍ଟର୍ ଫର୍ ପର୍‌ଫର୍‌ମିଙ୍ଗ୍ ଆର୍ଟସ୍'ରେ ସ୍ୱଳ୍ପକାଳୀନ ଭିତ୍ତିରେ ମାସିକ ନୃତ୍ୟଶିକ୍ଷା କାର୍ଯ୍ୟକ୍ରମରେ ଶିକ୍ଷାଦାନ ଆରମ୍ଭ କଲେ ।

ବାରଣସୀରେ ଦୁଇଗୋଟି ଅଷ୍ଟପଦୀର ଅଭିନୟ ସମୟରେ ପ୍ରଥମ ଥର ନିମନ୍ତେ କୁଙ୍କୁମ ଦାସଙ୍କ ସହିତ ନୃତ୍ୟରେ ଅଂଶଗ୍ରହଣ ।

୧୯୮୨ ଲଣ୍ଡନ୍‌ରେ ଅନୁଷ୍ଠିତ ପ୍ରଥମ 'ଫେଷ୍ଟିଭାଲ୍ ଅଫ୍ ଇଣ୍ଡିଆ'ରେ ସଂଯୁକ୍ତାଙ୍କ ସହିତ ଅଂଶଗ୍ରହଣ ।

୧୯୮୩ କୁଙ୍କୁମ ମହାନ୍ତିଙ୍କ ଦ୍ୱାରା ଭୁବନେଶ୍ୱରରେ ପରିଚାଳିତ ଓଡ଼ିଶୀ ଗବେଷଣା କେନ୍ଦ୍ରରେ ମାସିକ ୪,୦୦୦ ଟଙ୍କା ପ୍ରାରମ୍ଭିକ ଭତ୍ତାରେ ଯୋଗଦାନ । ୧୯୯୪ ମସିହା ପର୍ଯ୍ୟନ୍ତ ଏହି ଅନୁଷ୍ଠାନ ସହ ସଂପୃକ୍ତ ।

୧୯୮୭ ମଧ୍ୟପ୍ରଦେଶ ସରକାରଙ୍କ ଦ୍ୱାରା 'କାଳିଦାସ' ପୁରସ୍କାରରେ ଭୂଷିତ । କଟକସ୍ଥ ନିଜସ୍ୱ ବାସଗୃହରୁ ଭୁବନେଶ୍ୱରର ସରକାରୀ ଭଡ଼ା ଘରକୁ ଆଗମନ ।

୧୯୮୮ ଭାରତ ସରକାରଙ୍କ ଦ୍ୱାରା 'ପଦ୍ମଭୂଷଣ' ଉପାଧି ପ୍ରାପ୍ତି ।

୧୯୮୯ ପ୍ରଥମ ମୃଦୁ ହୃଦ୍‌ଘାତର ଶିକାର ଏବଂ ଭୁବନେଶ୍ୱରର ମୁଖ୍ୟ ଚିକିତ୍ସାଳୟର ଆଇ.ସି.ୟୁ.ରେ ଭର୍ତ୍ତି ।

୧୯୯୦ କଲିକତାର ବିର୍ଲା ହାର୍ଟ୍ ସେଣ୍ଟର୍‌ରେ ତାଙ୍କର ଏକ ଟ୍ରିପ୍‌ଲ୍ ବାଇପାସ୍ ସର୍ଜରୀ ହେଲା । ତାଙ୍କ ଉପରେ କୁମାର ସାହାଣୀଙ୍କ ଦ୍ୱାରା 'ଭବାନ୍ତରଣ' ନାମକ ଚଳଚ୍ଚିତ୍ର ନିର୍ମାଣ ।

୧୯୯୪ 'ସୃଜନ' ନାମକ ନିଜସ୍ୱ ଅନୁଷ୍ଠାନ ପ୍ରତିଷ୍ଠା ଏବଂ ଭୁବନେଶ୍ୱରର ଭୀମଟାଙ୍ଗି ଅଞ୍ଚଳରେ ନିର୍ମିତ ନିଜସ୍ୱ ବାସଗୃହକୁ ଗମନ ।

୧୯୯୫ ଫ୍ରାନ୍‌ସ୍‌ର ସଂସ୍କୃତି ମନ୍ତ୍ରାଳୟରୁ 'ଅଫିସର୍ ଅଫ୍ ଦ ଅର୍ଡର୍ ଅଫ୍ ଆର୍ଟ୍ ଆଣ୍ଡ କଲଚର୍' ଉପାଧି ଗ୍ରହଣ ।

୧୯୯୬ ମେଡ଼ିକାଲ୍ କାଉନ୍‌ସିଲ୍ ଅଫ୍ ଇଣ୍ଡିଆ ଦ୍ୱାରା ପ୍ରଦତ୍ତ 'ଡକ୍ଟର ବି.ସି. ରାୟ ଜାତୀୟ ପୁରସ୍କାର' ଗ୍ରହଣ ।

୨୦୦୦ ଭାରତ ସରକାରଙ୍କଠାରୁ 'ପଦ୍ମବିଭୂଷଣ' ପୁରସ୍କାର ଗ୍ରହଣ ।

୨୦୦୧ ନିଜ ଗ୍ରାମ ରଘୁରାଜପୁରଠାରେ ତାଙ୍କ ଦ୍ୱାରା ନିର୍ମିତ ମା' ଭୁଆସୁଣୀଙ୍କ ମନ୍ଦିରର କାର୍ଯ୍ୟ ସମାପନ ଏବଂ ପ୍ରତିଷ୍ଠା ଉତ୍ସବ ପାଳନ ।

୨୦୦୨ ଏଲ୍.ଦ୍ରୁ ଥିତ ଗୁପ୍ତ ଫାଉଣ୍ଡେସନ୍ ପକ୍ଷରୁ ପ୍ରଦତ୍ତ 'ଗୁପ୍ତ ଆୱାର୍ଡ଼' ଗ୍ରହଣ ।

୨୦୦୩ ଫ୍ରାନ୍‌ସ୍ ସରକାରଙ୍କ ସଂସ୍କୃତି ମନ୍ତ୍ରାଳୟ ପକ୍ଷରୁ ପ୍ରଦତ୍ତ 'କମେଣ୍ଡିଓର୍ ଡାନ୍‌ସ୍ ଲ' ଅର୍ଡର ଡେସ୍ ଆର୍ଟସ୍ ଏଟ୍ ଡେସ୍ ଲେଟର୍ସ୍' ଉପାଧି ଗ୍ରହଣ ।

୨୦୦୪ ଏପ୍ରିଲ୍ ୭ ତାରିଖରେ ପ୍ରାଣାନ୍ତକ ହୃଦ୍‌ଘାତରେ ପରଲୋକ ।



## ପରିଶିଷ୍ଟ–୩

# ଗୁରୁଜୀଙ୍କଦ୍ୱାରା ସଂରଚିତ ନୃତ୍ୟସମୂହ

**ନୃତ୍ୟନାଟିକା**

୧୯୫୩ କିଶୋରୀ କାହ୍ନୁ
୧୯୫୪ ଉର୍ବଶୀ
୧୯୫୫ ଅମୃତ ମନ୍ଥନ, ଅନାଦି ସଙ୍ଗୀତ, ରାସଲୀଳା, ସାକ୍ଷୀଗୋପାଳ
୧୯୫୬ ପଲ୍ଲୀ ଗାଥା, ଚିତ୍ରାଙ୍ଗଦା
୧୯୫୭ ଜୀବନର ଛନ୍ଦ, ପଞ୍ଚ ପୁଷ୍ପ, ନାଦ ନୂପୁର, ମଦନ ଭସ୍ମ, ଜୀବନ ଦର୍ଶନ
୧୯୫୮ କୃଷ୍ଣ ଗାଥା, ପୂଜାରିଣୀ, ମହାନଦୀ, ଚନ୍ଦ୍ରିକା, କୋଣାର୍କ ଜାଗରଣ
୧୯୫୯ ମେଘଦୂତ, କୁମାର ସମ୍ଭବ, ସପନ ନାୟକ
୧୯୬୦ ପଞ୍ଚ ପୂର୍ଣ୍ଣମୀ
୧୯୬୧ ବ୍ରଜଲୀଳା, ଶ୍ରୀଜଗନ୍ନାଥ, ରାମାୟଣ, ଗୀତଗୋବିନ୍ଦ, ଭାଗବଦ୍‌ଗୀତା
୧୯୬୨ ଅମର ଭାରତୀ, ତପସ୍ୱିନୀ, ଚନ୍ଦ୍ରଭାଗା, ବୁଦ୍ଧଦେବ
୧୯୬୩ ବିକ୍ରମ ଉର୍ବଶୀ, ଶକୁନ୍ତଳା, ଭାରତ ମାତା
୧୯୬୪ ଭାନୁ ସିଂହର ପଦାବଳୀ, କୃଷ୍ଣ ଲୀଳା, ଆମ୍ରପାଲୀ
୧୯୬୫ ମହାଭାରତ
୧୯୭୦ କାଞ୍ଚି ବିଜୟ
୧୯୭୫ ଗୀତଗୋବିନ୍ଦ (ହିନ୍ଦୀ)
୧୯୮୧ ରାମଚରିତମାନସ
୧୯୮୩ ଚମ୍ପୂ
୧୯୮୯ ଚନ୍ଦ୍ରଭାଗା
୧୯୯୦ ବସ୍ତ୍ରହରଣ, କାଞ୍ଚି ଅଭିଯାନ

୧୯୯୧ ଦଶାନନ
୧୯୯୨ ଏକଲବ୍ୟ
୧୯୯୪ ଦୁଷ୍ମନ୍ତ ଶକୁନ୍ତଳା, ଉତ୍କଳ ମଉଡ଼ମଣି, ଯାଜ୍ଞସେନୀ
୧୯୯୫ ଚଣ୍ଡାଶୋକ
୧୯୯୬ କୁରୁକ୍ଷେତ୍ର
୧୯୯୮ ସୁଦାମା ଦାରିଦ୍ର୍ୟ ଭଞ୍ଜନ, ମଥାମଣି ପ୍ରଦାନ, ବାଲ୍ୟଲୀଳା
୨୦୦୦ ଋତୁ ସଂହାର
୨୦୦୨ କୃଷ୍ଣ ସୁଦାମା

ପଲ୍ଲବୀ

୧୯୫୭ ବସନ୍ତ
୧୯୫୯ କଲ୍ୟାଣୀ
୧୯୬୫ ମୋହନା, ଶଙ୍କରାଭରଣ
୧୯୬୬ ସାବେରୀ
୧୯୭୧ ଗୀତିଭେଦ
୧୯୭୨ ଆରବୀ
୧୯୭୯ ହଂସଧ୍ୱନି, ଖମାଜ୍
୧୯୮୧ ବିହାଗ, କିର୍‌ୱାନୀ
୧୯୮୩ ବେଲାହାରୀ
୧୯୯୩ ମୁଖାରୀ
୧୯୯୬ ସିଂହେନ୍ଦ୍ର

ଅଷ୍ଟପଦୀ

୧୯୫୮ ଲଳିତଲବଙ୍ଗଲତା
୧୯୬୧ ୟାମି ହେ କମିହ ଶରଣମ୍, ୟାହି ମାଧବ
୧୯୬୨ ପଶ୍ୟତି ଦିଶିଦିଶି
୧୯୬୩ ହରିରିହ ମୁଗ୍ଧ
୧୯୬୭ କୁରୁ ଯଦୁନନ୍ଦନ, ଧୀରସମୀରେ, ସଖି ହେ
୧୯୬୮ ରାସେ ହରିମିହ
୧୯୭୨ ମୁଗ୍ଧେ ମଧୁମଥନମ୍
୧୯୭୪ ମାମିୟଂ ଚଳିତା ବିଲୋକ୍ୟ

୧୯୭୭ କାପି ମଧୁରିପୁଣା
୧୯୮୩ ରାଧାବଦନ
୧୯୮୪ ଶ୍ରିତକମଳାକୁଚମଣ୍ଡଳ
୧୯୮୮ ମାଧେବ ମା କୁରୁ
୧୯୯୩ କିଶଳୟଶୟନତଳେ
୧୯୯୫ ସମୁଦିତ ବଦନେ, ରମତେ ଯମୁନା

●●●

# ଶବ୍ଦାର୍ଥ

ଅଭିନୟ ଦର୍ପଣ – ତୃତୀୟ ଶତାବ୍ଦୀରେ ନନ୍ଦିକେଶ୍ୱରଙ୍କ ଦ୍ୱାରା ରଚିତ ନୃତ୍ୟ ସଂପର୍କିତ ମୁଦ୍ରା ଓ ଭଙ୍ଗୀ ସମ୍ବନ୍ଧୀୟ ପୁସ୍ତକ ।

ଅଭିନୟ – ନୃତ୍ୟରେ ଭାବପ୍ରବଣ ଅବସ୍ଥାର ଅଙ୍ଗଭଙ୍ଗୀ ମାଧ୍ୟମରେ ପରିପ୍ରକାଶ ।

ଆଖଡ଼ା – ଶାରୀରିକ ପ୍ରଶିକ୍ଷଣ ପ୍ରଦାନ ନିମନ୍ତେ ଉଦ୍ଦିଷ୍ଟ ସ୍ଥାନ / ଘର ।

ଅଣସର – ଜଗନ୍ନାଥ, ବଳଭଦ୍ର ଏବଂ ସୁଭଦ୍ରାଙ୍କର ମୂର୍ତ୍ତିକୁ ଜନସାଧାରଣଙ୍କ ଦୃଷ୍ଟିର ଆଢୁଆଳରେ ରଖାଯାଉଥିବା ଏକ ପକ୍ଷ ବା ପନ୍ଦର ଦିନ ଅବଧିର ଏକ ସମୟ ସ୍ନାନ ପୂର୍ଣ୍ଣିମା ପରେ (ମେ–ଜୁନ୍ ମାସରେ) ।

ଅଷ୍ଟପଦୀ – ଆଠଟି ପଦକୁ ନେଇ ରଚିତ ପଦ୍ୟ ।

ଚୈତନ୍ୟ ମହାପ୍ରଭୁ– ବୈଷ୍ଣବ ଧର୍ମର ପ୍ରତିଷ୍ଠାତା ।

ଚାଙ୍ଗୁ – ଏକ ପ୍ରକାର ତାଳବାଦ୍ୟ ।

ଚାରି – ପାଦ ଚାଳନା ।

ଛଉ ନୃତ୍ୟ – ଓଡ଼ିଶାର ସାମରିକ କଳା ପୃଷ୍ଠଭୂମିରେ ପରିବେଷିତ ଏକ ଅର୍ଦ୍ଧ–ଶାସ୍ତ୍ରୀୟ ନୃତ୍ୟ ।

ଚିତ୍ରକର – ପାରମ୍ପରିକ ଚିତ୍ର ଅଙ୍କନ କରୁଥିବା ବ୍ୟକ୍ତିବିଶେଷ ।

ଦଶାବତାର – ଭଗବାନ ବିଷ୍ଣୁଙ୍କର ଦଶଗୋଟି ଅବତାର ।

ଧର୍ମଶାଳା – ତୀର୍ଥଯାତ୍ରୀମାନଙ୍କ ନିମନ୍ତେ ଆଶ୍ରୟ ଗୃହ ।

ଢୋଲକ – ଏକ ପ୍ରକାର ତାଳ ବାଦ୍ୟ ।

ଦ୍ୱାରକା – ଭଗବାନ କୃଷ୍ଣଙ୍କ ଦ୍ୱାରା ଶାସିତ ଏକ ପ୍ରାଚୀନ ରାଜ୍ୟ ।

ଗୀତଗୋବିନ୍ଦ – ଦ୍ୱାଦଶ ଶତାବ୍ଦୀରେ କବି ଜୟଦେବଙ୍କ ଦ୍ୱାରା ସଂସ୍କୃତରେ ବିରଚିତ ରାଧା–କୃଷ୍ଣଙ୍କ ପ୍ରେମଲୀଳା ଉପରେ ଆଧାରିତ କାବ୍ୟ ।

ଘରାନା – ଏକ ନିର୍ଦ୍ଦିଷ୍ଟ ଶୈଳୀର ସଂଗୀତ ଉପରେ ପରିବେଷିତ ପାରମ୍ପରିକ ନୃତ୍ୟ ।

ହିନ୍ଦୁସ୍ତାନୀ – ଉତ୍ତର ଭାରତରେ ପ୍ରଚଳିତ ସଂଗୀତ ଶୈଳୀ ।

ଯାତ୍ରା – ଲୋକ ନାଟ୍ୟ ।

ଯୁଗଳବନ୍ଦୀ – ଦୁଇଜଣ କଳାକାରଙ୍କ ଦ୍ୱାରା ଏକତ୍ର ଅଭିନୟ ।

କର୍ଣ୍ଣାଟକୀ – ଦକ୍ଷିଣ ଭାରତରେ ପ୍ରଚଳିତ ସଂଗୀତ ଶୈଳୀ ।

ଲାସ୍ୟ – ଦେବୀ ପାର୍ବତୀଙ୍କ ଅଭିନୀତ ଭଗବାନ ଶିବଙ୍କୁ ସମର୍ପିତ ନୃତ୍ୟ ।

ଲୀଳା – ଭଗବାନ କୃଷ୍ଣଙ୍କ ଜୀବନରେ ସଂଘଟିତ ଘଟଣାବଳୀ ସମ୍ପର୍କରେ ରଚିତ ନୃତ୍ୟ ।

ଲୋକନାଥ – ଭଗବାନ ଶିବଙ୍କର ଅନ୍ୟ ନାମ ।

ମାହାରୀ – ଦେବତାମାନଙ୍କର ସେବାଦାସୀମାନଙ୍କୁ ପ୍ରଦତ୍ତ ଓଡ଼ିଆ ନାମ ।

ମଞ୍ଚ ପ୍ରବେଶ – ମଞ୍ଚ ଉପରେ ପ୍ରଥମ ଅଭିନୟ ।

ମଙ୍ଗଳାଚରଣ – ଆରାଧନାମୂଳକ ପ୍ରାରମ୍ଭିକ ନୃତ୍ୟ; ଓଡ଼ିଶୀ ନୃତ୍ୟର ପ୍ରଥମ ଅଂଶ ।

ମୋକ୍ଷ – ସାହିତ୍ୟିକ ଅର୍ଥ 'ମୁକ୍ତି'; ଓଡ଼ିଶୀ ନୃତ୍ୟର ଶେଷ ଅଂଶ ।

ନାଗା – ଏକ ପ୍ରକାର ସନ୍ନ୍ୟାସୀ ।

ନାଟ୍ୟ ଶାସ୍ତ୍ର – ଭରତ ମୁନିଙ୍କ ବିରଚିତ ନୃତ୍ୟକଳା ସଂପର୍କିତ ଗ୍ରନ୍ଥ ।

ନାୟିକା – ପ୍ରମୁଖ ଅଭିନେତ୍ରୀ (ହିରୋଇନ୍), ପ୍ରେମିକାର ରୋମାଣ୍ଟିକ୍ ଭାବ ପ୍ରକାଶ କରୁଥିବା ଚରିତ୍ର ।

ପଲ୍ଲବୀ – ଏକ ପ୍ରକାର ନୃତ୍ୟ ବା 'ବିଶୁଦ୍ଧ ନୃତ୍ୟ' ଯାହା ସାଧାରଣତଃ 'ମଙ୍ଗଳାଚରଣ' ପରେ ମଞ୍ଚରେ ପରିବେଷିତ ହୋଇଥାଏ ।

ପଲ୍ଲୁ – ପଣତ କାନି ବା ଶାଢୀର ଶେଷ ଭାଗ ।

ପଟଚିତ୍ର – ଓଡ଼ିଶାର ଏକ ପାରମ୍ପରିକ ଚିତ୍ରକଳା ।

ପଟ – ହାତ ତିଆରି କ୍ୟାନ୍‌ଭାସ୍ ।

ରାଗ – ଭାରତୀୟ ଶାସ୍ତ୍ରୀୟ ସଂଗୀତର ଗାନ ଶୈଳୀ ।

ରାଶି – ନକ୍ଷତ୍ରପୁଞ୍ଜ ।

ରାସଲୀଳା – ବୃନ୍ଦାବନରେ ଗୋପ ଯୁବତୀମାନଙ୍କ ସହିତ କୃଷ୍ଣଙ୍କର ପ୍ରେମ କ୍ରୀଡା ଉପରେ ଆଧାରିତ ନାଟକ ।

ସଞ୍ଚାରୀ (ଭାବ)– ନାଟକରେ ପ୍ରଦର୍ଶନ କରିବା ପାଇଁ ଏକ ଚିରସ୍ଥାୟୀ ଅବସ୍ଥାର କ୍ଷଣିକ ପ୍ରକାଶ ।

ସାତ୍ତ୍ୱିକ (ଭାବ)– ଭାବପ୍ରବଣ ହୋଇ ଏକ ନିର୍ଦ୍ଦିଷ୍ଟ ବସ୍ତୁରେ ମନୋନିବେଶ କରିବା ଦ୍ୱାରା ସୃଷ୍ଟ ମାନସିକ ଅବସ୍ଥା ।

ସେବାୟତ – ହିନ୍ଦୁ ଦେବଦେବୀଙ୍କ ମନ୍ଦିରରେ କାର୍ଯ୍ୟ କରୁଥିବା ସେବାକାରୀ ।

ତାଳ – ଭାରତୀୟ ଶାସ୍ତ୍ରୀୟ ସଂଗୀତରେ ଅନୁସୃତ ସମୟସାରଣୀର ପରିମାପକ ।

| | | |
|---|---|---|
| ତାଳପତ୍ର | - | ତାଳ ଗଛର ପତ୍ର । |
| ତାଣ୍ଡବ | - | ଭଗବାନ ଶିବଙ୍କ ଦ୍ୱାରା ପରିବେଷିତ ଏକ ଶକ୍ତିଶାଳୀ ତଥା ଭୟ ଉଦ୍ରେକକାରୀ ନୃତ୍ୟ । |
| ଉପେନ୍ଦ୍ର ଭଞ୍ଜ | - | ନିଜର ଅନନ୍ୟ ଉପମା ଶୈଳୀ ନିମନ୍ତେ ପ୍ରସିଦ୍ଧ ଅଷ୍ଟାଦଶ ଶତାବ୍ଦୀର ଓଡ଼ିଆ କବି । |
| ଉର୍ବଶୀ | - | ଦେବତାମାନଙ୍କ ସଭାରେ ନୃତ୍ୟ ପରିବେଷଣ କରୁଥିବା ଐଶ୍ୱରୀଶକ୍ତିସଂପନ୍ନା ନାରୀ ନୃତ୍ୟଶିଳ୍ପୀ । |
| ଉସ୍ତାଦ୍ | - | ସଂଗୀତର ଗୁରୁ । |
| ଯାଜ୍ଞସେନୀ | - | ଦ୍ରୌପଦୀଙ୍କର ଅନ୍ୟ ନାମ, ମହାଭାରତର ପଞ୍ଚପାଣ୍ଡବଙ୍କ ଧର୍ମପତ୍ନୀ । |

●●●

